# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**November 2012**

| ୬୯ ଭାଗ | ୪ର୍ଥ ସଂଖ୍ୟା | କାର୍ତ୍ତିକ-ମାର୍ଗଶିର | ନଭେମ୍ବର-୨୦୧୨ |
|---|---|---|---|

**ପ୍ରଦୀପ କୁମାର ଜେନା**
କମିଶନର ତଥା ଶାସନ ସଚିବ

**ଡକ୍ଟର ହୁସେନ ରବିଗାନ୍ଧୀ**
ସମ୍ପାଦକ

**ଦେବେନ୍ଦ୍ର ପ୍ରସାଦ ଦାସ**
ନିର୍ଦ୍ଦେଶକ

ସମ୍ପାଦନା ସହଯୋଗୀ
**ଗୋବିନ୍ଦ ଚନ୍ଦ୍ର ମଲ୍ଲିକ**
**ସଚିଦାନନ୍ଦ ବାରିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ୍ ଡିଜାଇନିଂ
**ମାନସ ନାୟକ**

ଫଟୋ :
**ରାଜୁ ସିଂ ଓ ମନୋରଂଜନ ମହାନ୍ତି**

କମ୍ପ୍ୟୁଟର ସେଟିଂ ଓ ଡିଜାଇନିଂ
**ହେମନ୍ତ କୁମାର ସାହୁ**
**ସୁମିତ୍ରା କର**

**ପ୍ରତିଖଣ୍ଡ : ଟ. ୫.୦୦**





ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ-୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର-୭୫୧୦୦୧

ଇ-ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in
ଫୋନ୍ : ୦୬୭୪-୨୫୩୦୨୧୧

**ନଭେମ୍ବର ୨୦୧୨**

# ସୂଚୀ

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି



ଲକ୍ଷ୍ମଣ ନାଏକ



ବିର୍ସା ମୁଣ୍ଡା



ଜୟୀ ରାଜଗୁରୁ

# ଜନ୍ମ ମାସରେ ଶ୍ରଦ୍ଧାଞ୍ଜଳି


ପଣ୍ଡିତ ଜବାହରଲାଲ ନେହେରୁ


ହରେକୃଷ୍ଣ ମହତାବ


ନବକୃଷ୍ଣ ଚୌଧୁରୀ

# ଓଡ଼ିଶାରେ ବୋଇତ ଭସାଣ ଉତ୍ସବ ଓ ଏହାର ଅତୀତ ସଂସ୍କୃତି

ଅଧ୍ୟାପକ ଉଦୟନାଥ ତ୍ରିପାଠୀ



ଉତ୍କଳୀୟମାନେ କାର୍ତ୍ତିକ ପୂର୍ଣ୍ଣିମାକୁ ନିଜର ସାମାଜିକ ତଥା ଧାର୍ମିକ ଜୀବନ ଯାତ୍ରାର ଏକ ପବିତ୍ର ତଥା ବିଶିଷ୍ଟ ଦିବସ ରୂପେ ମାନ୍ୟତା ପ୍ରଦାନ କରିବା ସହିତ ଉତ୍କଳୀୟ ନାବିକ ସାଧବ ପୁଅମାନଙ୍କର ଶୁଭ ଯାତ୍ରାର ଅୟମାରମ୍ଭର ସ୍ମାରକୀ ରୂପେ ଏବେ ବି ବଡ଼ ଆଡ଼ମ୍ବର ଓ ଧୁମ୍‌ଧଡ଼କାରେ ମନାଇ ଥାନ୍ତି । ଘରେ ଘରେ ପୁରେ ପୁରେ ଏହି ଦିବସ ପ୍ରାରମ୍ଭ ହେବାର ଅବବ୍ୟହିତ ପୂର୍ବରୁ ରାତ୍ର ଉଜାଗର ରହି ପବିତ୍ର ନଦୀ କିମ୍ବା ପୁଷ୍କରିଣୀମାନଙ୍କରେ ପ୍ରାତଃ ମୁହୂର୍ତ୍ତ ପୂର୍ବରୁ ଅବଗାହନ କରି ଶୁଦ୍ଧ, ପୂତ ଓ ପରିଷ୍କୃତ ବସ୍ତ୍ର ବା ନବ ବସ୍ତ୍ର, ପୋଷାକ ପରିଧାନ କରି ନଦୀ ଜଳ କିମ୍ବା ଗୃହ ନିକଟସ୍ଥ ପୁଷ୍କରିଣୀ ଜଳରେ କଦଳୀ ବାହୁଙ୍ଗାରେ ନିର୍ମିତ ବୋଇତ ବା ଡଙ୍ଗା କିମ୍ବା ଆଜିକାଲି ସୋଲ କିମ୍ବା କାଗଜରେ ନିର୍ମିତ ଚିତ୍ର ବିଚିତ୍ର ଡଙ୍ଗାରେ ସଂଯୋଗ କରା ଯାଇଥିବା ବର୍ତ୍ତିକାକୁ ପ୍ରଜ୍ଜ୍ୱଳନ କରି, ମନ୍ତ୍ରପାଠ, ବେଦଧ୍ୱନୀ, ଗୀତ ସଙ୍ଗୀତ ମାଧ୍ୟମରେ ତଥା ବିବିଧ ବାଦ୍ୟ, ଶଙ୍ଖ, ଘଣ୍ଟ, ମୃଦଙ୍ଗ ଇତ୍ୟାଦି ବାଦନ ପୂର୍ବକ ଏହାକୁ ଏକ ମହାନ ଉତ୍ସବ ରୂପେ ଅତ୍ୟନ୍ତ ଆନନ୍ଦ ଉଲ୍ଲାସ ଓ ଉନ୍ମାଦନାର ସହିତ ପାଳନ କରିଥାନ୍ତି ।

ପ୍ରାଚୀନ ଓଡ଼ିଶା ଥିଲା ଏକ ସମୃଦ୍ଧିଶାଳୀ ରାଜ୍ୟ । ଏହାର ବ୍ୟାପ୍ତି ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଥିଲା । ଏହାର ବୀର ସନ୍ତାନମାନେ ନିଜ ନିଜର ଅପୂର୍ବ ଶୌର୍ଯ୍ୟ, ବୀର୍ଯ୍ୟ ଦ୍ୱାରା ତଥା ବୈଦେଶିକ ବ୍ୟାପାର ବାଣିଜ୍ୟ ଦ୍ୱାରା ଏହି ପବିତ୍ର ଭୂମିକୁ ମହାନ, ଶକ୍ତିଶାଳୀ, ସମୃଦ୍ଧିଶାଳୀ ରାଜ୍ୟରେ ପରିଣତ କରି ପାରିଥିଲେ । ଉତ୍କଳ ରାଜାମାନେ ଥିଲେ ଅତ୍ୟନ୍ତ ଶକ୍ତିଶାଳୀ ଓ ଦିଗ୍‌ବିଜୟୀ । ଅନେକ ପଡୋଶୀ ରାଜାମାନେ ଉତ୍କଳୀୟ ଶାସକଙ୍କର ଅଧୀନତା ସ୍ୱୀକାର କରିଥିଲେ । ଏଣୁ ଉତ୍କଳୀୟ ରାଜାମାନେ ନିଜକୁ ରାଜାଧିରାଜ, ନବକୋଟୀ କର୍ଣ୍ଣାଟ କଳେବର୍ଗେଶ୍ୱର ନାମରେ ପରିଚିତ ଥିଲେ ।

କାର୍ତ୍ତିକ ପୂର୍ଣ୍ଣିମା ଦିନ ଉତ୍କଳୀୟ ସାଧବପୁଅମାନେ/ ବ୍ୟବସାୟୀ ସଂପ୍ରଦାୟର ପୁତ୍ରମାନେ ନିଜର ଜନ୍ମଭୂମିରୁ ନିଜ

ନିଜର ନୌକା ଓ ବୋଇତଗୁଡ଼ିକୁ ପୂଜାର୍ଚ୍ଚନା କଲାପରେ, ମା'ଙ୍କ ଶୁଭ ସିନ୍ଦୂର ଟିପାକୁ ମଥା ଉପରେ ସ୍ଥାପନ କରାଇ ଭାରତ ମହାସାଗର ମଧ୍ୟରେ ଥିବା ଦ୍ୱୀପପୁଞ୍ଜ, ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଓ ଶ୍ରୀଲଙ୍କା ପ୍ରଭୃତି ଦେଶକୁ ବୈଦେଶିକ ବାଣିଜ୍ୟ ପାଇଁ ନିର୍ଗତ ହେଉଥିଲେ । ଗୃହିଣୀ ସାଧବ ଘରର ବୋହୂ, ସାଧବାଣୀମାନେ ନିଜ ନିଜ ସ୍ୱାମୀଙ୍କର ମଥାରେ ମାତା ଦେବୀଙ୍କର ପୂଜାର୍ଚ୍ଚିତ ସିନ୍ଦୂର ଟିପା ପିନ୍ଧାଇ, ବନ୍ଦାପନା କରି, ପ୍ରଭୁଙ୍କ ଶ୍ରୀଚରଣରେ ଭକ୍ତି ବିନମ୍ର ପ୍ରଣତି ଜଣାଇ, ଶୁଭ ମନାସୀ ସ୍ୱାମୀଙ୍କୁ ବାଣିଜ୍ୟ ଯାତ୍ରା ଉଦ୍ଦେଶ୍ୟରେ ବିଦାୟ ଦେଉଥିଲେ । ସେମାନଙ୍କର ଶୁଭଯାତ୍ରା ପଥ ଥିଲା ସ୍ଥଳ ଭାଗରେ ସୁନାବ୍ୟା, ପ୍ରାଚୀ ତଟିନୀ । ସେମାନେ ଏହି ନଦୀର ଅତଳ ଗର୍ଭରେ ନିଜର ନାଆ ଓ ବୋଇତଗୁଡ଼ିକ ବାହି ନେଇ ନୀଳ ଭାରତ ସାଗର ଗର୍ଭକୁ ପ୍ରବେଶ କରୁଥିଲେ ଓ କେତେ ଦିନ ସମୁଦ୍ର ଗର୍ଭରେ ଯାତ୍ରା କଲାପରେ ଓଡ଼ିଶାର ନିକଟବର୍ତ୍ତୀ ବିଦେଶୀ ଭୂମିରେ ପଦାର୍ପଣ କରି ସେଠାରେ କିଛି କାଳ ଅବସ୍ଥାନ କରି ନିଜର ବେପାର ବାଣିଜ୍ୟ କରି ଉପାର୍ଜିତ ଧନ, ବୈଭବ ନେଇ ପୁଣି ଉତ୍କଳ ଭୂମିକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ଏହା ଥିଲା ପ୍ରାଚୀନ ଉତ୍କଳୀୟ ସାଧବ ପୁଅମାନଙ୍କର ଜୀବିକା ନିର୍ବାହ କରିବାର ଏକ ଅନିବାର୍ଯ୍ୟ ଅଙ୍ଗ ।

କାର୍ତ୍ତିକ ପୂର୍ଣ୍ଣିମା ବେଳକୁ ସାମୁଦ୍ରିକ ଝଡ଼ ଶାନ୍ତ ହୋଇ ଯାଉଥିଲା ଏବଂ ଏହା ସାମୁଦ୍ରିକ ଯାତ୍ରା ପାଇଁ ସାଧବ ପୁଅମାନଙ୍କୁ ଅନୁକୂଳ ବାତାବରଣ ସୃଷ୍ଟି କରୁଥିଲା । ଏଣୁ ଏହି ସମୟରେ ସେମାନେ ନିଜର ବେପାର ଯାତ୍ରା ଆରମ୍ଭ କରିବାକୁ ଶ୍ରେଷ୍ଠ ସମୟ ବୋଲି ବିଚାର କରୁଥିଲେ ।

ଓଡ଼ିଶାର ପୂର୍ବ ତଟରେ ପ୍ରାଚୀ ନଦୀ ଥିଲା ଏକ କ୍ଷୁଦ୍ର ୬୦ କିଲୋମିଟର ଲମ୍ବ ଏକ ସୁନାବ୍ୟା ଓ ସୁଗଭୀର ନଦୀ । ଏହା ଥିଲା ମହାନଦୀର ୬୦୦ମିଟର ଅବବାହିକାରେ ବ୍ୟାପ୍ତ । ମହାନଦୀର ଏହି ଅବବାହିକାରେ ପ୍ରାଚୀନଦୀ ବହିଯାଉଥିବାରୁ ଏଠାରେ ଏକ ମହାନ ସଂସ୍କୃତି ମୁଣ୍ଡ ଟେକି ପାରିଥିଲା । ଏହି ସଂସ୍କୃତି ଦ୍ୱିତୀୟ ଶତାବ୍ଦୀଠାରୁ ଆରମ୍ଭ ହୋଇ ପ୍ରାୟ ୧୫ଶ,୧୬ଶ ଶତାବ୍ଦୀ ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା । ଏହି ଅବବାହିକାରେ ଆଧୁନିକ ସମୟର ପୁରୀ, ଖୋର୍ଦ୍ଧା, କଟକ, ଓ ଜଗସିଂହପୁର ଅଞ୍ଚଳ ବା ଜିଲାଗୁଡ଼ିକୁ ପ୍ରାଚୀନଦୀର ଜଳ ସର୍ବଦା ସ୍ପର୍ଶ କରୁଥିଲା । ପ୍ରାଚୀନଦୀ ପୁରାଣ ପ୍ରସିଦ୍ଧ ଗଙ୍ଗା, ଗୋଦାବରୀ, ନର୍ମଦା, କାବେରୀ ନଦୀମାନଙ୍କ ପରି ଥିଲା ଅତି ପବିତ୍ର, ପୁରାତନ ଓ ପ୍ରାଚୀନ ସଂସ୍କୃତି ସଂପନ୍ନ ପୀଠ । ଏଣୁ ଏହାର ଅନ୍ୟନାମ ଥିଲା ପଦ୍ମ ପୁରାଣର ଉତ୍ତରାଖଣ୍ଡରେ ପ୍ରାଚୀ ମହାତ୍ମ୍ୟ। ଏହାଥିଲା ଓଡ଼ିଶାର ଅତି ପବିତ୍ର ନଦୀ ଓ ଏହାର କୂଳରେ ଗୋତୀର୍ଥ, ଅର୍କତୀର୍ଥ, ଅଗ୍ନିତୀର୍ଥ, ମୃତ୍ୟୁତୀର୍ଥ,ଅଙ୍ଗତୀର୍ଥ, ମଣିକର୍ଣ୍ଣିକା ତୀର୍ଥ, ଓ ମୁକ୍ତି ତୀର୍ଥମାନ ବିଦ୍ୟମାନ ଥିଲାବେଳେ, ଅନେକ ଦେବା ଦେବୀ, ଶକ୍ତିପୀଠ, ମାଧବପୀଠ, ଶୈବପୀଠ, ବୌଦ୍ଧ ଓ ଜୈନ ତୀର୍ଥମାନ ଓ ଅନ୍ତାକ୍ଷରୀ ମଠ, ରାଧାକାନ୍ତ ମଠ,ଅର୍କତୀର୍ଥ ମଠ, ଅହନୁରିଆମଠ, ସିଦ୍ଧମଠ,ଗୋପାଳମଠ, ଗୁରୁଦେବ ମଠ, ବିଶ୍ୱାମିତ୍ର, ଚକିଆମଠ, ଦେଉଳିମଠ, ଅତିଭବାମଠ, ପଞ୍ଚବଟୀମଠ, ବନ୍ତମଠ ଓ ଅପ୍‌ସରାମଠମାନ ଉପସ୍ଥିତିକୁ ଏହି ନଦୀର ପ୍ରାଚୀନତା, ପ୍ରସିଦ୍ଧି, ପବିତ୍ରତା ଓ ଉପାଦେୟତାର ପରିଚୟ ଦେଇଥାଏ ।

ପାଇକପୁଅମାନେ ବର୍ଷ ତମାମ ଏହି ନଦୀର ବିଭିନ୍ନ ସ୍ଥାନରେ ପୋତାଶ୍ରୟମାନ ସ୍ଥାପନ କରିବାର ଐତିହାସିକ ପ୍ରମାଣିକତା ମଧ୍ୟ ଉପଲବ୍ଧ ହୋଇଅଛି । ପୂର୍ବେ ସାଧବପୁଅମାନେ ବଙ୍ଗୋପ ସାଗରୀୟ ଦେଶମାନଙ୍କରେ ବେପାର ବାଣିଜ୍ୟ କରି ନିଜ ଦେଶ ଉତ୍କଳ ଭୂମିକୁ ସୁନାବ୍ୟା ପ୍ରାଚୀନଦୀ ଦେଇ, ନିଜ ନିଜ ଗ୍ରାମ୍ୟ ଓ ନଗରୀୟ ଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିଲେ । ସମୟେ ସମୟେ ନଦୀ ଧାରରେ ନିର୍ମିତ ପୋତାଶ୍ରୟମାନଙ୍କରେ ବିଶ୍ରାମ ନେଉଥିଲେ ଓ ଆବଶ୍ୟକମତେ ସାଥୀରେ ଆଣିଥିବା ବୈଦେଶିକ ପଦାର୍ଥ ମଣି, ମାଣିକ୍ୟ, ବହୁମୂଲ୍ୟ ରତ୍ନଗୁଡ଼ିକର ବ୍ୟବସାୟ କାରକାର ଚଳାଉଥିଲେ ।

ପ୍ରାଚୀ ନଦୀ ଧାର କୂଳରେ ଏପରି ଅନେକ ବ୍ୟବସାୟିକ କେନ୍ଦ୍ରମାନ ଏବେ ବି ଦେଖିବାକୁ ମିଳେ । ଝରିଲୋ ଶାସନରେ ଗୋଟିଏ ବିଶାଳକାୟ ବଟ ବୃକ୍ଷ ଏବେ ଦୃଷ୍ଟି ଗୋଚର ହୁଏ । ଏହି ଗ୍ରାମଟି ଏବେ ଗୋବିନ୍ଦ ପୁର ଥାନାର ଅନ୍ତର୍ଭୁକ୍ତ ଅଟେ । ଏହି ବୃକ୍ଷକୁ ସ୍ଥାନୀୟ ଲୋକମାନେ ବୋଇତ ବନ୍ଧା ବଟବୃକ୍ଷ ବୋଲି କହିଥାନ୍ତି । ଏଣୁ ଏହା ମନେ ହେଉଛି କି ସାଧବ ପୁଅମାନେ ନିଜ ନିଜର ବୋଇତକୁ ବୃକ୍ଷ ଦେହରେ ବାନ୍ଧି କିଛି କାଳ ପାଇଁ ଏହି ସ୍ଥାନରେ ଅବସ୍ଥାନ କରି ପୁଣି ନିଜର ଗନ୍ତବ୍ୟସ୍ଥଳକୁ ଯାତ୍ରା କରୁଥିଲେ ।

ସେହିପରି ନିଆଳୀ-ମାଧବ ରାସ୍ତାର କଡ଼ରେ ଅନେକ ବଡ଼ ବଡ଼ କୁଦ (ଉଚ୍ଚ ସ୍ଥାନ) ଏବେ ବି ଦେଖିବାକୁ ମିଳିଥାଏ । ଏହି କୁଦଗୁଡ଼ିକ ପୂର୍ବେ ବନ୍ଦର ସ୍ଥଳ ଥିଲା ବୋଲି

ଐତିହାସିକମାନଙ୍କର ମତ । ଅମରେଶ୍ୱର, କାକଟପୁର ସଡ଼କ ନିକଟରେ କୁନ୍ଦପାଟଣା ବୋଲି ଗୋଟିଏ ଗ୍ରାମ ଅବସ୍ଥିତ । ଏଠାରେ ଗୋଟିଏ ବିଶାଳ ଲୌହ ସ୍ତମ୍ଭର ସନ୍ଧାନ ମିଳିଛି । ମନେହେଉଛି ସାଧବପୁଅମାନେ ଲୋକଙ୍କର ଜାହାଜଗୁଡ଼ିକ ଏହି ଖୁମ୍ବରେ ବାନ୍ଧି କିଛି କାଳ ପାଇଁ ବିଶ୍ରାମ ନେଉଥିଲେ ଏବଂ ପରେ ନିଜର ଗନ୍ତବ୍ୟ ସ୍ଥଳକୁ ଚାଲି ଯାଉଥିଲେ । ଏହି କୁନ୍ଦପାଟଣା ଗ୍ରାମ ପାର୍ଶ୍ୱରେ ଗୋପାଳକୁଦ ବୋଲି ସ୍ଥାନଟିଏ ଅବସ୍ଥିତ । ଏଠାରେ ରାମଚନ୍ଦ୍ରଙ୍କର ଏକ ସୁନ୍ଦର ମୂର୍ତ୍ତି ଗୋଟିଏ ଚାଳଘରେ ଗ୍ରାମବାସୀଙ୍କ ଦ୍ୱାରା ପୂଜିତ ହେଉଛନ୍ତି । ଏହି ସ୍ଥାନରେ ମଧ୍ୟ ପୂର୍ବ କାଳରେ ଗୋଟିଏ ବନ୍ଦର ଥିଲା ବୋଲି ଇତିହାସକାରଙ୍କ ମତ ।

ଏବେ ଚଉରାଶି ଶାସନ ନିକଟରେ ଚହଟା ଗ୍ରାମରେ ବୋଇତ ଡିହ ନାମକ ବିରାଟ କ୍ଷେତ୍ର ଅବସ୍ଥିତ । ଏଠାରେ ମଧ୍ୟ ଗୋଟିଏ ଲୌହସ୍ତମ୍ଭ ଉପଲବ୍ଧରୁ ସୂଚନା ମିଳେ କି ଏହା ବି ସାଧବ ପୁଅମାନଙ୍କର ବୋଇତଗୁଡ଼ିକର ଆଶ୍ରୟ ସ୍ଥଳୀ ଥିଲା ।

ଚଉରାଶି ଗ୍ରାମର ପଶ୍ଚିମ ଦିଗରେ ଲଳିତା ନଦୀ ପ୍ରବାହିତ ଥିଲା । ଏହାର ଗୋତୀର୍ଥଠାରେ ପ୍ରାଚୀ ନଦୀ ସହିତ ସଙ୍ଗମ ହୋଇଥିଲା । ଏହି ଲଳିତା ନଦୀ କୂଳରେ ଏବେ ନୀଳମାଧବଙ୍କର ଏକ ସୁନ୍ଦର କଳାମୁଗୁନି ପ୍ରସ୍ତର ମୂର୍ତ୍ତି ବିଦ୍ୟମାନ ଓ ପ୍ରାଚୀ କୂଳରେ ବୋଇତ ଦିଗର ଦକ୍ଷିଣ ପାର୍ଶ୍ୱରେ ବନ୍ଦେଶ୍ୱର ମହାଦେବଙ୍କ ବିଜେସ୍ଥଳୀ ଅବସ୍ଥିତ । ଏହି ସ୍ଥଳରେ ପ୍ରାଚୀ ଅତି ସୁଗଭୀର ଥିଲା ଓ ସାଧବ ପୁଅମାନଙ୍କୁ ବନ୍ଦର ନିର୍ମାଣ କରିବା ପାଇଁ ଅତି ଅନୁକୂଳ ପରିବେଶ ସୃଷ୍ଟି କରିଥିଲା । ଏଣୁ ସାଧବପୁଅମାନେ ଏଠାରେ ସେମାନଙ୍କ ଜାହାଜ ବା ବୋଇତମାନଙ୍କୁ ରଖି ମହାଦେବଙ୍କ ପୂଜା ପ୍ରାର୍ଥନା ପରେ ବୋଇତ ଯାତ୍ରା ଆରମ୍ଭ କରୁଥିଲେ ବୋଲି ଲୋକମୁଖରୁ ଶୁଣିବାକୁ ମିଳେ ।

ସେହିପରି କାକଟପୁର ନିକଟରେ 'ବୋଇତ କୁଦ' ବୋଲି ସ୍ଥାନଟିଏ ପ୍ରାଚୀନଦୀ କୂଳରେ ଅବସ୍ଥିତ । ଏଠାରେ ଲୋକେ ଏହାକୁ ଜାହାଜ ପଡ଼ିଆ ନାମରେ ଜାଣନ୍ତି । ଏହିପରି ବୋଇତକୁଦ, ଅସ୍ତରଙ୍ଗର ନିକଟ ବଙ୍ଗୋପ ସାଗର କୂଳରେ ଅବସ୍ଥିତ । ସେଠାରେ ଗୋଟିଏ ଗଭୀର ସ୍ଥାନର ଦୁଇପଟେ ଦୁଇଟି ବିଶାଳ ମାଟି ଗଦାର ସନ୍ଧାନ ମିଳିଛି । ବୋଧେ ଓଡ଼ିଶା ବଣିକମାନେ ନିଜର ଜାହାଜଗୁଡ଼ିକ ନିରାପଦରେ ରଖିବା ପାଇଁ ଏହି ହ୍ରଦ ମଧରେ ପ୍ରବେଶ କରାଇ ବିଶ୍ରାମ ନେଉଥିଲେ ।

ପ୍ରାଚୀ ନଦୀ ଗର୍ଭରେ ସାଧବମାନେ ଡଙ୍ଗା ସାହାଯ୍ୟରେ ଯାତ୍ରା କରୁଥିବାର ପ୍ରମାଣ ମିଳିଛି । ଏହି ଅଞ୍ଚଳର ଜଣେ ଧନୀ ବଣିକଙ୍କ ନାମ ଥିଲା ଦଧିବାମନ ସାହୁ । ସେ ଶ୍ରୀଲଙ୍କା ସହିତ ନିଜର ବ୍ୟାପାରିକ ସଂପର୍କ ସ୍ଥାପନ କରି ସେଠାରୁ ନିଜ ଜାହାଜରେ ବା ନାଆରେ ଗୋଟିଏ ସୁନ୍ଦର ପ୍ରସ୍ତର ଦେବୀ ମୂର୍ତ୍ତି ଓଡ଼ିଶାକୁ ବୋହି ଆଣିଥିଲେ ଓ ଏହାକୁ କାକଟପୁରରେ ଏକ ମନ୍ଦିର ନିର୍ମାଣ କରାଇ ସ୍ଥାପନ କରିଥିଲେ । ଏହି ପ୍ରସ୍ତର ମୂର୍ତ୍ତିଟି ଏବେ ପ୍ରସିଦ୍ଧ ମଙ୍ଗଳା ଠାକୁରାଣୀ ନାମରେ ଓଡ଼ିଶାବାସୀଙ୍କ ଦ୍ୱାରା ପୂଜିତା । ଏଣୁ କାକଟପୁର ହେଉଛି ଅନ୍ୟଦେଶ ପୀଠମାନଙ୍କ ପରି ପ୍ରସିଦ୍ଧ । ଓଡ଼ିଶାର ବଣିକମାନେ ପ୍ରାଚୀନଦୀକୁ ସଂଯୋଗ କରୁଥିବା ନଦୀ ଚିତ୍ରୋତ୍ପଳାରେ ମଧ୍ୟ ନିଜର ବାଣିଜ୍ୟ ସଂପର୍କ ସ୍ଥାପିତ କରିଥିଲେ । ପ୍ରଥମ ଶତାବ୍ଦୀରେ କୋଣାର୍କଠାରେ ଗୋଟିଏ ବିଶାଳ ପୋତ ଗଢ଼ି ଉଠିଥିଲା । ପ୍ରାଚୀନଦୀର ଏକ ଶାଖାନଦୀ ଯାହାକି କାଦୁଆ ନଦୀ ନାମରେ ପରିଚିତ, ତାହା ବଙ୍ଗୋପ ସାଗର ସହିତ ଚିତ୍ରେଶ୍ୱରୀ ନାମକ ସ୍ଥାନରେ ମିଶିଥିଲା ।

ଏଠାରେ ଅବସ୍ଥିତ ଦେବୀ ମୂର୍ତ୍ତିଙ୍କ ନାମ ଚିତ୍ରେଶ୍ୱରୀ ଓ ମହାଦେବଙ୍କ ନାମ ହେଉଛି ଉତ୍ପଳେଶ୍ୱର । ଏହି ସ୍ଥାନରେ ବସବାସ କରି ରହୁଥିବା ଲୋକମାନେ ଥିଲେ ଅତି ଖଳ ସ୍ୱଭାବର ଓ ସେମାନେ ସାଧବମାନଙ୍କର ଜାହାଜ ଲୁଣ୍ଠନ କରି ସେମାନଙ୍କର ଧନରତ୍ନକୁ ନେଇ ଯାଉଥିଲେ ବୋଲି ଜଣାଯାଇଛି । ଏଠାରେ ପ୍ରାଚୀନଦୀ କୂଳରେ ସମୁଦ୍ର ନିକଟରେ ଗୋଟିଏ ବତୀଖୁମ୍ବ ଅଛି । ଏହା ସମୁଦ୍ରରୁ କୂଳକୁ ଆସିବାକୁ ସାଧବମାନଙ୍କୁ ପଥ ଦର୍ଶାଉଥିଲା ।

ଷୋହଳ ଶତାବ୍ଦୀବେଳକୁ ମରାଠାମାନେ ଓଡ଼ିଶା ଉପରେ ନିଜର ଅଧିକାର ଜମାଇ ଦେଇଥିଲେ ଏବଂ ଦେବୀ ନଦୀ କୂଳରେ ଅବସ୍ଥିତ ମାଛଗାଁ ବନ୍ଦରରୁ ଜଗତ୍‌ସିଂହପୁର, ହରିହରପୁର ସହିତ ବାଣିଜ୍ୟ ସ୍ଥାପନ କରିଥିଲେ । ଏହି ନଦୀଟି ପ୍ରାଚୀର ପୂର୍ବ ଦିଗରେ ଅବସ୍ଥିତ । ମରାଠାମାନେ ପର୍ତ୍ତୁଗାଲ ଓଲନ୍ଦାଜ ସହିତ ବାଣିଜ୍ୟ କାରବାର କରୁଥିଲେ ।

ପ୍ରାଚୀକୂଳରେ ଅନେକ ବାଣିଜ୍ୟ କେନ୍ଦ୍ର ଗଢ଼ିଉଠିଥିଲା । କୁଣ୍ଡେଇ ହାଟ, ନୂଆହାଟ, ନୂଆପଲମ ହାଟ, ରନେ ପୁର ହାଟ, ରତନପୁର ହାଟ, ତୁଳସୀପୁର ହାଟ, ନରସିଂହପୁର ହାଟ, ବନମାଳୀପୁର, ନିଆଳୀ ହାଟ ହେଉଛନ୍ତି ଏହି ସବୁ ବାଣିଜ୍ୟ

କେନ୍ଦ୍ର । ଉତ୍କଳୀୟ ବଣିକମାନେ ଦକ୍ଷିଣ ପୂର୍ବ ଏସିଆ ଦେଶମାନଙ୍କ ସହିତ ବ୍ୟବସାୟିକ ସମ୍ବନ୍ଧ ଦୀର୍ଘକାଳ ପର୍ଯ୍ୟନ୍ତ ସ୍ଥଗିତ କରି ଉତ୍କଳର କଳା, ଭାସ୍କର୍ଯ୍ୟ, ସଂସ୍କୃତିର ନମୁନା ସହିତ ଜାଭା, ସୁମାତ୍ରା, ଇଣ୍ଡୋନେସିଆ ଇତ୍ୟାଦି ଦେଶମାନଙ୍କରେ ଅନେକ ହିନ୍ଦୁ ଦେବ ଦେବୀଙ୍କର ମନ୍ଦିରମାନ ନିର୍ମାଣ କରାଇ, ଏହି ମନ୍ଦିରମାନଙ୍କରେ ଦେବ ଦେବୀଙ୍କର ପୂଜାର୍ଚ୍ଚନା ପାଇଁ ଉତ୍କଳୀୟ ବ୍ରାହ୍ମଣମାନଙ୍କୁ ଓ ପୂଜକଙ୍କୁ ନିଯୁକ୍ତ କରାଇଥିଲେ । ଏବେ ବି ପର୍ଯ୍ୟଟକମାନଙ୍କଠାରୁ ଶୁଣିବାକୁ ମିଳେ କି ସେ ପୂର୍ବ ଭାରତୀୟ ଦେଶର କେତେକ ଲୋକ ନିଜକୁ ଉତ୍କଳୀୟ ବୋଲି କହି ନିଜ ନିଜର ପରିଚୟ ଦେଇଥାନ୍ତି । ସେମାନଙ୍କର ଶାରୀରିକ ଗଠନ, ଆକୃତି, ପ୍ରକୃତି ପୂରାପୂରି ଉତ୍କଳୀୟମାନଙ୍କ ପରି ଓ ସେମାନଙ୍କର ଚାଲି ଚଳନ, ଖାଦ୍ୟ ପାନୀୟରେ ଉତ୍କଳ ନିବାସୀମାନଙ୍କ ସହିତ ବିଶେଷ ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ । ଏଠାରେ ଥିବା ବିଶାଳକାୟ ହିନ୍ଦୁ ମନ୍ଦିର ବୋରବୋଦୁରରେ ଉତ୍କଳୀୟ, କଳା, ଭାସ୍କର୍ଯ୍ୟ ପରିସ୍ଫୁଟ ଓ ରାମାୟଣର ଦୃଶ୍ୟପଟ ମନ୍ଦିର ଗାତ୍ରମାନଙ୍କରେ ସୁସଜ୍ଜିତ । ଆଉ ଗୋଟିଏ ସ୍ଥାନରେ ଗୋଟିଏ ଶିବ ମନ୍ଦିର ଏବେବି ପର୍ଯ୍ୟଟକମାନଙ୍କର ଦୃଷ୍ଟି ଆକର୍ଷଣ କରିଥାଏ ।

ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହରୁ ଶ୍ୟାମ, କାମ୍ବୋଡ଼ିଆ, ଜାଭା ବୋର୍ଣ୍ଣିଓ ଦେଶମାନଙ୍କରେ ପ୍ରାଚୀନ କାଳରେ ଗଢ଼ି ଉଠୁଥିବା ଉତ୍କଳୀୟ (ଭାରତୀୟ) କଳା ଭାସ୍କର୍ଯ୍ୟର ଭୂୟସୀ ପ୍ରଶଂସା ନିଜ ଲିଖିତ ଇତିହାସ ଗ୍ଲିମ୍ପସେସ ଅଫ ୱାର୍ଲଡ଼ ହିଷ୍ଟ୍ରି (Glympses of world History) କରିଛନ୍ତି । ପାଠକମାନେ ଏହି ପୁସ୍ତକର ପୃଷ୍ଠାମାନଙ୍କୁ ଓଲଟାଇଲେ ନିଶ୍ଚୟ ଉତ୍କଳୀୟ ସାଧବ ପୁଅମାନଙ୍କର ଗୁଣ ଗାରିମାର ଆଭାସ ପାଇପାରିବେ ।

ଏ ସ୍ଥାନରେ ୧୮ଶ ଶତାବ୍ଦୀରେ ଉତ୍କଳୀୟ କଳାର ଆଧାରରେ ନୌକା ଆକୃତିର ମନ୍ଦିର ନିର୍ମିତ ହୋଇଛି । ଏଣୁ ୧୬ଶ ଶତାବ୍ଦୀ ପର୍ଯ୍ୟନ୍ତ ପ୍ରାଚୀନଦୀର ବନ୍ଦରଗୁଡ଼ିକ ବାହ୍ୟ ଦେଶ ବା ବୈଦେଶିକ ବ୍ୟାପାର ସହିତ ବିଶେଷ ଭାବେ ଜଡ଼ିତ ଥିବାର ପ୍ରମାଣ ମିଳେ । ଇଟାଲିର ଦର୍ଶକ ବା ପର୍ଯ୍ୟଟକମାନେ ପରେ ଏହି ଢାଞ୍ଚାରେ ବ୍ୟାପାରିକ ନାଆମାନ ନିର୍ମାଣ କରିଥିଲେ ବୋଲି ଐତିହାସିକମାନେ ଦୃଢ଼ ମତ ପୋଷଣ କରିଛନ୍ତି ।

ଏବେ ଓଡ଼ିଶାର ସେ ଅତୀତ ବୈଭବ ନାହିଁ । କର୍ପୂର ଯାଇ କେବଳ କନା ପଡ଼ି ରହିଛି । ଆମ ଓଡ଼ିଆମାନେ ଏବେ ନୌବାଣିଜ୍ୟ କ୍ଷେତ୍ରରେ ପଛୁଆ ଅଛନ୍ତି । କେବଳ ଅତୀତ ଗୌରବକୁ ରୋମନ୍ଥନ କରି ଗର୍ବିତ ନ ହୋଇ, ଆସନ୍ତୁ ମିଳିମିଶି କଠିନ ପରିଶ୍ରମ କରି ନୂତନ ଉତ୍କଳକୁ ପୁଣି ସମୃଦ୍ଧିଶାଳୀ ରାଜ୍ୟରେ ପରିଣତ କରିବା । ପୂର୍ବ ପୁରୁଷଙ୍କର ମାନ ଗୌରବକୁ ଫେରାଇ ଆଣିବାକୁ ଚେଷ୍ଟା ଚଳାଇବା, ଏହା ହିଁ ହେବ ଆମ୍ଭମାନଙ୍କର ଆମ ଜନ୍ମଭୂମି ଓଡ଼ିଶା ପ୍ରତି ଶ୍ରେଷ୍ଠ ଅବଦାନ ।

ପ୍ଲଟ ନଂ-୪୬୯୩ ଆଦିମାତା କଲୋନୀ
ମଞ୍ଚେଶ୍ୱର ରେଲୱେ କଲୋନୀ
ଭୁବନେଶ୍ୱର-୧୭



# ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ ଓ ଏହାର ସାଂସ୍କୃତିକ ପ୍ରଭାବ

ମାନସ କୁମାର ମଲ୍ଲିକ

ଖ୍ରୀଷ୍ଟ ଜନ୍ମର ପ୍ରାୟ ୫ ଶହ ବର୍ଷ ପୂର୍ବରୁ ଦକ୍ଷିଣ-ପୂର୍ବ ଏସିଆର ଯେଉଁ କେତେକ ବୈଦେଶିକ ଜାତି ଭାରତୀୟ ସଭ୍ୟତା ଓ ସଂସ୍କୃତିର ପ୍ରଚାର କରିଥିଲେ, ସେମାନଙ୍କ ମଧ୍ୟରୁ କଳିଙ୍ଗର ବଣିକ ଏବଂ ନାବିକମାନଙ୍କ ଭୂମିକା ଥିଲା ବେଶ୍ ଉଲ୍ଲେଖଯୋଗ୍ୟ । ସେସମୟରେ କୌଣସି ସମୁଦ୍ର ଉପକୂଳବର୍ତ୍ତୀ ରାଜ୍ୟ ପାଇଁ ବାଣିଜ୍ୟ ବ୍ୟବସାୟ କହିଲେ ମୁଖ୍ୟତଃ ନୌବାଣିଜ୍ୟକୁ ହିଁ ବୁଝାଉଥିଲା । ଆଉ ବଙ୍ଗୋପସାଗର କୂଳରେ ଅବସ୍ଥିତ ଓଡ଼ିଶା ବା ସେକାଳର କଳିଙ୍ଗ ରାଜ୍ୟ ଏକ ଅପରାଜେୟ ଏବଂ ଦୁର୍ଦ୍ଧର୍ଷ ନୌବାଣିଜ୍ୟିକ ଶକ୍ତି ଭାବରେ ବେଶ୍ ପ୍ରସିଦ୍ଧି ଲାଭ କରିଥିଲା । ସେଥିପାଇଁ କବି କାଳିଦାସ ତାଙ୍କର ଏକ ରଚନାରେ କଳିଙ୍ଗର ରାଜାଙ୍କୁ ମହୋଦଧିପତି ବା ସମୁଦ୍ରର ରାଜା ଭାବରେ ମଧ୍ୟ ଚିତ୍ରିତ କରିଛନ୍ତି । ଏହାବ୍ୟତୀତ ବଙ୍ଗୋପସାଗରକୁ ଏକଦା କଳିଙ୍ଗ ସାଗର ବୋଲି ମଧ୍ୟ କୁହାଯାଉଥିବାର ଜଣାଯାଏ । କଳିଙ୍ଗର ବଣିକମାନେ ବିଦେଶରେ ବାଣିଜ୍ୟ କରିବା ଦ୍ୱାରା ନିଜର ବା ନିଜ ରାଜ୍ୟର ଅର୍ଥନୀତିକୁ କେବଳ ସୁଦୃଢ଼ କରୁଥିଲେ ତାହା ନୁହେଁ, ଏହା ମାଧ୍ୟମରେ ଗୋଟିଏ ଭୌଗୋଳିକ ଭୂଖଣ୍ଡକୁ ଅନ୍ୟ ଏକ ଭୂଖଣ୍ଡ ସହ ସାଂସ୍କୃତିକ ଭାବରେ ଯୋଡ଼ିବାରେ ଏକ ପ୍ରମୁଖ ଭୂମିକା ତୁଲାଉଥିଲେ । ଦକ୍ଷିଣ-ପୂର୍ବ ଏସିଆର ବିଭିନ୍ନ ଦେଶମାନଙ୍କରେ ଧର୍ମ, କଳା, ସଂସ୍କୃତି ଇତ୍ୟାଦିର ଯେଉଁ ଚିତ୍ର ଆଜି ଦେଖିବାକୁ ମିଳେ, ତା'ର ମୂଳ ଉତ୍ସ କଳିଙ୍ଗ କହିଲେ ଭୁଲ ହେବନି । ତେବେ କଳିଙ୍ଗର ସଂସ୍କୃତି କେବଳ ସେମାନଙ୍କୁ ପ୍ରଭାବିତ କରିଥିଲା ତାହା ନୁହେଁ, ସ୍ଥଳ ବିଶେଷରେ ସେ ଅଞ୍ଚଳର ସଂସ୍କୃତି ମଧ୍ୟ କଳିଙ୍ଗବାସୀଙ୍କୁ ପ୍ରଭାବିତ କରିଥିବାର ସମ୍ଭାବନାକୁ ଏଡ଼ାଇ ଦେଇ ହେବ ନାହିଁ । କାହିଁକିନା ନୌବାଣିଜ୍ୟିକ ପ୍ରକ୍ରିୟା ଏକପାଖିଆ ନହୋଇ ଦ୍ୱିପାକ୍ଷିକ ଥିଲା ବୋଲି କେତେକ ଗବେଷକ ମତ ଦିଅନ୍ତି । କଳିଙ୍ଗର ଅଧିବାସୀ ଯେପରି ବାଣିଜ୍ୟ ବ୍ୟବସାୟ ପାଇଁ ସିଂହଳ, ଏସିଆର ଦକ୍ଷିଣ-ପୂର୍ବ ଭୂଖଣ୍ଡ ଏବଂ ପାଶ୍ଚାତ୍ୟର ରୋମ୍, ଗ୍ରୀସ୍ ଓ ଆଫ୍ରିକୀୟ ଦେଶମାନଙ୍କୁ ଯାଉଥିଲେ, ସେହିପରି ସେମାନେ ମଧ୍ୟ ସେହି କାର୍ଯ୍ୟ ପାଇଁ ହୁଏତ ଏଠାକୁ ଆସୁଥିଲେ ବୋଲି କୁହାଯାଏ । କେବଳ ବଣିକ, ନାବିକ ବା ନୌବାଣିଜ୍ୟ ସହିତ ସଂପୃକ୍ତ ବ୍ୟକ୍ତିବିଶେଷ ନୁହଁନ୍ତି ବିଭିନ୍ନ ସମୟରେ ବିଭିନ୍ନ ଆବଶ୍ୟକତାକୁ ଆଧାର କରି ଧର୍ମ, କଳା, ସଂସ୍କୃତି ଏବଂ ଶାସନ ସହ ସଂଶ୍ଲିଷ୍ଟ ବ୍ୟକ୍ତିମାନେ ମଧ୍ୟ ଦେଶାନ୍ତର ଗମନ କରିଥିବାରୁ ସଂସ୍କୃତିର ବିନିମୟ ଏବଂ ବିବର୍ତ୍ତନ ସମ୍ଭବ ହୋଇପାରିଥିଲା । ତେଣୁ ମୋଟ ଉପରେ କହିବାକୁ ଗଲେ ସମୁଦ୍ର ଯାତ୍ରା ମାଧ୍ୟମରେ କେବଳ ବାଣିଜ୍ୟ ବ୍ୟବସାୟ ନୁହେଁ, ଦେଶାନ୍ତର ଗମନ ପ୍ରକ୍ରିୟା ମଧ୍ୟ ରହିଥିଲା ଏବଂ ବିଭିନ୍ନ କଳା ସଂସ୍କୃତିର ମିଶ୍ରଣ ଫଳରେ ନୂତନ କଳା ସଂସ୍କୃତି ଜନ୍ମ ନେଇଥିଲା ।

ଯେଉଁ ଦରିଆପାରି ଦେଶମାନଙ୍କ ସହିତ କଳିଙ୍ଗର ନୌବାଣିଜ୍ୟ ଓ ସାଂସ୍କୃତିକ ପ୍ରଭାବ କଥା ଆସେ ସେଗୁଡ଼ିକ ମଧ୍ୟରେ ସର୍ବାଗ୍ରେ ରହିଛି ତାମ୍ରପର୍ଣ୍ଣୀ ବା ସିଂହଳ (ଆଧୁନିକ ଶ୍ରୀଲଙ୍କା) । ସିଂହଳରେ ଯେଉଁ ବୌଦ୍ଧ ଧର୍ମ ଓ ସଂସ୍କୃତି ଆଜିଯାଏ ପ୍ରଭାବ ବିସ୍ତାର କରି ରହିଛି ତା'ର ଭିତ୍ତିପ୍ରସ୍ତର ଦିନେ ସ୍ଥାପନ କରିଥିଲେ କଳିଙ୍ଗବାସୀ । ଗୌତମ ବୁଦ୍ଧଙ୍କ ମହାପରିନିର୍ବାଣ ସମୟ ବେଳକୁ କଳିଙ୍ଗର ରାଜଧାନୀ ଥିଲା ସିଂହପୁର, ଯାହାର ପ୍ରତିଷ୍ଠାତା ଥିଲେ ରାଜା ସିଂହବାହୁ । ଏହି ସିଂହବାହୁଙ୍କ ନାମ ଅନୁସାରେ ସିଂହଳ ଦେଶର ନାମକରଣ ହୋଇଥିବାର ଜଣାଯାଏ । ବୁଦ୍ଧଙ୍କର ନିର୍ବାଣ ଲାଭ ପରେ ତପସୁ ଓ ଭଲ୍ଲିକ ନାମଧାରୀ ଯେଉଁ ଦୁଇଜଣ ଉତ୍କଳୀୟ ବଣିକ ତାଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ, ସେମାନେ ପରବର୍ତ୍ତୀ ସମୟରେ ସିଂହଳ ଦ୍ୱୀପକୁ ଯାଇ ସେଠାରେ ଚୈତ୍ୟ ନିର୍ମାଣ କରି ବୁଦ୍ଧଙ୍କର ବାଣୀ ପ୍ରଚାର କରିଥିଲେ । ଏହାକୁ କୌଣସି ଦରିଆପାରି ଦେଶରେ ବୌଦ୍ଧ ଧର୍ମ ସଂସ୍କୃତି ପ୍ରଚଳନ କ୍ଷେତ୍ରରେ ଏକ ପ୍ରାରମ୍ଭିକ

ପ୍ରୟାସ ବୋଲି କୁହାଯାଇପାରେ । ପରବର୍ତ୍ତୀ ସମୟରେ ସମ୍ରାଟ ଅଶୋକ ବୌଦ୍ଧ ଧର୍ମ ଦ୍ୱାରା ପ୍ରଭାବିତ ହେବା ପରେ ତାଙ୍କ ପୁତ୍ର କନ୍ୟାଙ୍କୁ ସିଂହଳ ଦ୍ୱୀପକୁ ପଠାଇଥିଲେ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ । ଏହି ପ୍ରକ୍ରିୟାରେ କଳିଙ୍ଗର ଅବଦାନ ଥିଲା ବେଶ୍ ଉଲ୍ଲେଖଯୋଗ୍ୟ । ଅଶୋକଙ୍କ କନ୍ୟା ସଂଘମିତ୍ରା ସିଂହଳର ତତ୍କାଳୀନ ରାଜା ଦେବପ୍ରିୟ ତିସ୍ସ ରାଣୀ ଅନୁଳାଙ୍କୁ ଧର୍ମଦୀକ୍ଷା ଦେବା ପାଇଁ କଳିଙ୍ଗ ରାଜ୍ୟ ଅନ୍ତର୍ଗତ ତାମ୍ରଲିପ୍ତ ବନ୍ଦରରୁ ବୋଇତ ଚଢ଼ି ସିଂହଳ ଯାତ୍ରା କରିଥିଲେ । ଆଉ ତାଙ୍କ ସହିତ ଥିଲେ କଳିଙ୍ଗର ଆଠଟି ବୌଦ୍ଧ ପରିବାର, ଯେଉଁମାନେ ସେଠାରେ ସ୍ଥାୟୀ ଭାବରେ ବସବାସ କରିବା ସହିତ ବୌଦ୍ଧ ଧର୍ମ ସଂସ୍କୃତିର ପ୍ରଚାରରେ ବ୍ରତୀ ହୋଇଥିଲେ । ଏହିପରି ଏକ ଘଟଣା ଘଟିଥିଲା ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ । କଳିଙ୍ଗର ରାଜା ଗୁହଶିବ ତାଙ୍କ ସିଂହଳ ପ୍ରତିପକ୍ଷ ବନ୍ଧୁ ମହାସେନଙ୍କ ନିକଟକୁ ବୁଦ୍ଧଙ୍କର ପବିତ୍ର ଦନ୍ତ ଧାତୁ ସହିତ ନିଜର କନ୍ୟା ହେମମାଳା ଏବଂ ଜାମାତା ଦନ୍ତକୁମାରଙ୍କୁ ପଠାଇଥିଲେ । ପୂର୍ବରୁ ଅଶୋକଙ୍କ କନ୍ୟା ସଂଘମିତ୍ରାଙ୍କ ଦ୍ୱାରା ଆନୀତ ପବିତ୍ର ବୋଧିଦ୍ରୁମର ଶାଖା ଏବଂ ଦନ୍ତକୁମାର ହେମମାଳାଙ୍କ ଦ୍ୱାରା ଆନୀତ ପବିତ୍ର ଦନ୍ତଧାତୁ ସିଂହଳକୁ ବୌଦ୍ଧ ଧର୍ମ ଓ ସଂସ୍କୃତିର ପ୍ରଚାର କ୍ଷେତ୍ରରେ ଏପରି ପ୍ରତିଷ୍ଠା ଦେଇଥିଲା ଯେ ଅନେକ ଶତାବ୍ଦୀ ପର୍ଯ୍ୟନ୍ତ ତାହା ପୃଥିବୀର ବୌଦ୍ଧ ଧର୍ମାବଲମ୍ବୀଙ୍କ ପାଇଁ ଅନ୍ୟତମ ତୀର୍ଥ କ୍ଷେତ୍ର ପାଲଟି ଯାଇଥିଲା । ଉଭୟ ହୀନଯାନୀ ଏବଂ ମହାଯାନୀ ବୌଦ୍ଧମାନେ କଳିଙ୍ଗ ସମେତ ଭାରତର ବିଭିନ୍ନ ପ୍ରାନ୍ତରରୁ ସିଂହଳକୁ ଯାତ୍ରା କରିବାକୁ ଲାଗିଲେ ଏବଂ ସିଂହଳୀ ବୌଦ୍ଧ ସଂଘମାନଙ୍କର ଶାଖା ମଧ୍ୟ ଭାରତର କେତେକ ସ୍ଥାନରେ ସ୍ଥାପନା କରାଗଲା, ଯେଉଁଥିରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ଆଚାର୍ଯ୍ୟ ବୁଦ୍ଧ ଘୋଷ ଏବଂ ଆଚାର୍ଯ୍ୟ ବୁଦ୍ଧଦତ୍ତ । ସିଂହଳ ସହିତ ଯୋଗାଯୋଗର ଏକମାତ୍ର ମାଧ୍ୟମ ଥିଲା ଜଳପଥ ଏବଂ ସେହି ଜଳପଥରେ ଯାତ୍ରା ପାଇଁ କଳିଙ୍ଗର ନୌଶକ୍ତି ତଥା ତାମ୍ରଲିପ୍ତି, ଚେଳିତାଲୋ ଏବଂ ପାଲୁର ଭଳି ପ୍ରସିଦ୍ଧ ବନ୍ଦରକୁ ବ୍ୟବହାର କରାଯାଉଥିଲା । ଚୀନ, ପରିବ୍ରାଜକ ଫାୟିୟାନ ତାମ୍ରଲିପ୍ତି ବନ୍ଦରରୁ ବୋଇତ ଚଢ଼ି ସିଂହଳ ଯାତ୍ରା କରିଥିଲେ ଏବଂ ପରବର୍ତ୍ତୀ ସମୟରେ (ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀରେ) ହୁଏନ୍‌ସାଂ ମଧ୍ୟ କଳିଙ୍ଗର ଏହି ସବୁ ବନ୍ଦରଗୁଡ଼ିକରୁ ସିଂହଳ ଅଭିମୁଖେ ବୋଇତ ସବୁ ବୌଦ୍ଧ ତୀର୍ଥ ଯାତ୍ରୀଙ୍କୁ ନେଇ ଯାତ୍ରା କରୁଥିବାର ବର୍ଣ୍ଣନା କରିଛନ୍ତି । ସେସମୟରେ କଳିଙ୍ଗ ଏବଂ ସିଂହଳ ମଧ୍ୟରେ ଧର୍ମ, ସଂସ୍କୃତିକୁ ଆଧାର କରି ପାରସ୍ପରିକ ସଂପର୍କ ଏପରି ଘନିଷ୍ଠ ହୋଇଥିଲା ଯେ, ସପ୍ତମ ଶତାବ୍ଦୀରେ କଳିଙ୍ଗର ଜଣେ ରାଜା ତାଙ୍କ ରାଣୀ ଓ ମନ୍ତ୍ରୀ ପାରିଷଦଙ୍କ ସହିତ ସିଂହଳକୁ ପବିତ୍ର ଦନ୍ତପୂଜା କରିବାକୁ ଆସି ବୌଦ୍ଧଭିକ୍ଷୁ ଜ୍ୟୋତିପାଳଙ୍କ ପ୍ରେରଣାରେ ରାଜଭୋଗ ଛାଡ଼ି ସନ୍ନ୍ୟାସ ଗ୍ରହଣ କରିବାକୁ ପଛାଇ ନଥିଲେ । କେବଳ ସେତିକି ନୁହେଁ ଏକାଦଶ ଶତାବ୍ଦୀରେ କଳିଙ୍ଗର ତତ୍କାଳୀନ ରାଜ ପରିବାର ଏବଂ ସିଂହଳର ରାଜ ପରିବାର ମଧ୍ୟରେ ବୈବାହିକ ସଂପର୍କ ସ୍ଥାପିତ ହେବା ସହିତ କଳିଙ୍ଗର ରାଜପୁତ୍ରମାନେ ସେଠାକାର ଶାସନଭାର ହାତକୁ ନେଇ ଉଭୟ ଅଞ୍ଚଳ ମଧ୍ୟରେ କଳା ସଂସ୍କୃତିର ବିନିମୟକୁ ଆହୁରି ସୁଗମ କରାଇ ପାରିଥିଲେ । ଏହି ସମୟ ମଧ୍ୟରେ ସିଂହଳରେ ମହାଯାନୀ ବୌଦ୍ଧ ଧର୍ମ ପ୍ରାବଲ୍ୟରେ ଯେତେସବୁ ସ୍ତୂପ ଏବଂ ବିଗ୍ରହମାନ ନିର୍ମାଣ କରାଯାଇଥିଲା ପ୍ରାୟ ସବୁଥିରେ କଳିଙ୍ଗ ବା ଉତ୍କଳର କଳା କୌଶଳର ଛାପ ପଡ଼ିଥିଲା ବୋଲି କୁହାଯାଏ । ଅଧୁନା କାକଟପୁରରେ ପୂଜା ପାଉଥିବା ମା' ମଙ୍ଗଳାଙ୍କ ମୂର୍ତ୍ତି ସେସମୟରେ ବଣିକମାନଙ୍କ ଦ୍ୱାରା ସିଂହଳରୁ ଅଣାଯାଇଥିବା ମହାଯାନୀ ବୌଦ୍ଧମାନଙ୍କର ଦେବୀ ମୂର୍ତ୍ତି ବୋଲି ଗବେଷକମାନେ ମତ ଦିଅନ୍ତି । ପ୍ରାଚୀନ କଳିଙ୍ଗର ଦକ୍ଷିଣ-ପୂର୍ବ ଏସିଆ ଅନ୍ତର୍ଗତ ଯେଉଁ ଭୂଖଣ୍ଡ ସହିତ ବାଣିଜ୍ୟିକ କାରବାର ସଂପର୍କରେ ସବୁଠୁଁ ବେଶୀ ଚର୍ଚ୍ଚା ହୁଏ, ତା' ହେଉଛି ବାଲି । ବାଲି ଏକ କ୍ଷୁଦ୍ର ଦ୍ୱୀପ ହେଲେ ମଧ୍ୟ ବିଭିନ୍ନ ପ୍ରକାର ମସଲାଜାତ ଦ୍ରବ୍ୟ, ମୂଲ୍ୟବାନ ରତ୍ନ ପଥର ଏବଂ ମୁକ୍ତା ତଥା ଚନ୍ଦନ କାଠ ପାଇଁ ପ୍ରସିଦ୍ଧ ଥିବାରୁ କଳିଙ୍ଗର ବଣିକମାନେ ଖ୍ରୀଷ୍ଟ ଜନ୍ମର ବହୁ ପୂର୍ବରୁ ସେଠାରେ ବାଣିଜ୍ୟ କାରବାର ଚଳେଇଥିଲେ । କୁହାଯାଏ ବାଲି ନାମକରଣ ତତ୍କାଳୀନ କଳିଙ୍ଗର ବଳୀ ନାମକ କୌଣସି ଜଣେ ରାଜାଙ୍କ ନାମ ଅନୁସାରେ ହୋଇଛି ଯିଏ ପ୍ରଥମେ ବାଲିରେ ଶାସନ କରିବାର ସୁଯୋଗ ପାଇଥିଲେ । ସମୟକ୍ରମେ ବାଲିରେ ଏତେ ସଂଖ୍ୟକ କଳିଙ୍ଗବାସୀ ବାଣିଜ୍ୟ ବ୍ୟବସାୟ କରିବା ସହିତ ସେଠାରେ ବସବାସ କରିବାକୁ ଲାଗିଲେ ଯେ, ଉଭୟ ସ୍ଥାନର ସାମାଜିକ ଜୀବନ, କଳା-ସଂସ୍କୃତି ଓ ଧର୍ମ ବିଶ୍ୱାସରେ ଅଦ୍ଭୁତ ସାମଞ୍ଜସ୍ୟ ଆଜି ବି ପରିଲକ୍ଷିତ ହୋଇଥାଏ । ସମଗ୍ର ଦକ୍ଷିଣ-ପୂର୍ବ ଏସିଆ ଦେଶମାନଙ୍କରେ ଭାରତର ହିନ୍ଦୁ, ଶୈବ, ଶାକ୍ତ, ବୈଷ୍ଣବ ଏବଂ ବୌଦ୍ଧ ହୀନଯାନ ଓ ମହାଯାନ ଧର୍ମ ସଂସ୍କୃତିର ପ୍ରଭାବ ପଡ଼ିଥିବାରୁ ବାଲିଦ୍ୱୀପ ମଧ୍ୟ ସେଥିରୁ ବାଦ୍ ଯାଇନି । କିନ୍ତୁ ଏସବୁର ପ୍ରଭାବ କେବଳ କଳିଙ୍ଗବାସୀଙ୍କ ଦ୍ୱାରା ହିଁ ସମ୍ଭବ ହୋଇଥିଲା ବୋଲି ଗବେଷକମାନେ ମତ ଦିଅନ୍ତି । ବାଲିଦ୍ୱୀପର ହିନ୍ଦୁ ପରିବାରକୁ ଆଜି ବି କୌଣସି ଅତିଥି ଆସିଲେ ସେମାନେ ତାଙ୍କୁ ପାନପତ୍ର ଏବଂ ଗୁଆ ପ୍ରଦାନ କରି ସ୍ୱାଗତ କରନ୍ତି । ବିବାହ ଏବଂ ଅନ୍ୟ କୌଣସି ଶୁଭ କାର୍ଯ୍ୟରେ ବନ୍ଧୁ ନିମନ୍ତ୍ରଣ ପାଇଁ

ମଧ୍ୟ ପାନ, ଗୁଆର ବ୍ୟବହାର ହୁଏ । ବାଲି ଦ୍ୱୀପ ଏବଂ ତା'ର ନିକଟବର୍ତ୍ତୀ ଦ୍ୱୀପ ଜାଭାରେ ହିନ୍ଦୁମାନଙ୍କର ବିବାହ ଉତ୍ସବରେ ବରକନ୍ୟା ସୋଲରେ ତିଆରି ମୁକୁଟ ପିନ୍ଧନ୍ତି ଯାହା ଓଡ଼ିଶାର ବହୁ ପ୍ରାଚୀନ ପରମ୍ପରା ଏବଂ ସଂସ୍କୃତି । ଓଡ଼ିଶାରେ ପାରମ୍ପରିକ ଭାବରେ ପ୍ରଚଳିତ ବିଭିନ୍ନ ପ୍ରକାର ଲୋକନୃତ୍ୟ, ଲୋକକଳା ମଧ୍ୟ ସେଠାରେ ସମୟକ୍ରମେ ଟିକିଏ ଭିନ୍ନ ରୂପରେ ଅଦ୍ୟାବଧି ପ୍ରଚଳିତ ଥିବା କଥା ସେହି ଦ୍ୱୀପ ଭ୍ରମଣକାରୀ ପ୍ରତ୍ୟକ୍ଷଦର୍ଶୀମାନେ ପ୍ରକାଶ କରନ୍ତି । ଓଡ଼ିଶାରେ ଜଗନ୍ନାଥ ସଂସ୍କୃତିରେ ବୌଦ୍ଧ ସଂସ୍କୃତି ମିଶିଥିବା ପରି ବାଲିରେ ବୌଦ୍ଧ ସଂସ୍କୃତି ସହିତ ଶୈବ ଓ ବୈଷ୍ଣବୀୟ ସଂସ୍କୃତିର ଅଦ୍ଭୁତ ମିଶ୍ରଣ ଘଟିଥିଲା । ଅଷ୍ଟମ ଶତାବ୍ଦୀରେ ଓଡ଼ିଶାର ସମ୍ବଲ (ଆଧୁନିକ ସମ୍ବଲପୁର)ର ରାଜା ଇନ୍ଦ୍ରଭୂତି ପ୍ରଚଳନ କରିଥିବା ବୌଦ୍ଧ ବଜ୍ରଯାନ କ୍ରମେ ବାଲି ଦ୍ୱୀପକୁ ଯାଇ ପ୍ରଭାବ ବିସ୍ତାର କରିଥିବାର ସେଠାରେ ବୁଦ୍ଧ ଏବଂ ଶିବଙ୍କ ଆରାଧନା ପାଇଁ ରଚିତ ସଂସ୍କୃତ ଶ୍ଳୋକରେ ଜଗନ୍ନାଥ ଶବ୍ଦର ପ୍ରୟୋଗ ହୋଇଥିବାର ଜଣାଯାଏ । ବାଲିଦ୍ୱୀପ ସହିତ ବାଣିଜ୍ୟିକ ଓ ସାଂସ୍କୃତିକ ସଂପର୍କରେ ସ୍ମୃତିକୁ ଉଜ୍ଜୀବିତ କରିବା ପାଇଁ କଟକରେ ଅନୁଷ୍ଠିତ ହେଉଥିବା ବାର୍ଷିକ ବାଲିଯାତ୍ରା ଉତ୍ସବର ପ୍ରକୃତରେ ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟ ସହିତ ସଂପର୍କ ଅଛି କି ନାହିଁ ସେ ବିଷୟରେ ଗବେଷକମାନଙ୍କ ମଧ୍ୟରେ ଦ୍ୱିମତ ଥିଲେ ମଧ୍ୟ ବାଲିଦ୍ୱୀପ ଯେ ଦିନେ କଳିଙ୍ଗରୁ ଯାଉଥିବା ବଣିକ ଓ ନାବିକ ତଥା ଏହାର ଅନ୍ୟ ଅଧିବାସୀଙ୍କ ଦ୍ୱାରା ମୁଖରିତ ଥିଲା ଏଥିରେ ସନ୍ଦେହ ନାହିଁ ।

ବାଲିଦ୍ୱୀପ ପରି ଦକ୍ଷିଣ-ପୂର୍ବ ଏସିଆର ଆଉ ଦୁଇଟି ଦ୍ୱୀପ ହେଉଛି ଜାଭା ଏବଂ ସୁମାତ୍ରା । ଯେଉଁଠି କଳିଙ୍ଗବାସୀ ନୌବାଣିଜ୍ୟ ମାଧ୍ୟମରେ ନିଜର ସାଂସ୍କୃତିକ ପ୍ରଭାବ ବିସ୍ତାର କରିପାରିଥିଲେ । ସେହିସବୁ ଦ୍ୱୀପରେ ପ୍ରଚଳିତ କିମ୍ବଦନ୍ତୀ ଅନୁଯାୟୀ ଏକଦା କଳିଙ୍ଗରୁ ପ୍ରାୟ ୨୦ ହଜାର ପରିବାର କୌଣସି କାରଣରୁ ପଳାଇ ଆସି ପ୍ରଥମେ ଜାଭା ଦ୍ୱୀପରେ ବସତି ସ୍ଥାପନ କରି ପରେ ଅନ୍ୟ ସ୍ଥାନକୁ ଗମନ କରିଥିଲେ । ପଞ୍ଚମ ଶତାବ୍ଦୀର ମଧ୍ୟ ଭାଗରେ ଜାଭା ଦ୍ୱୀପରେ 'ତରୁମ' ନାମକ ଏକ ରାଜ୍ୟ ଥିଲା । ଯାହାର ରାଜା ଥିଲେ ପୂର୍ଣ୍ଣବର୍ମା । ଏହି ପୂର୍ଣ୍ଣବର୍ମାଙ୍କ ପିତା ତତ୍କାଳୀନ କଳିଙ୍ଗର 'ଚନ୍ଦ୍ରଭାଗା' ନିକଟବର୍ତ୍ତୀ କୌଣସି ଏକ ସ୍ଥାନରୁ ଯାଇଥିବାରୁ ସେଠାରେ ମଧ୍ୟ 'ଚନ୍ଦ୍ରଭାଗା' ନାମରେ ଗୋଟିଏ ଜଳାଧାର ଖୋଳାଇଥିଲେ ବୋଲି କୁହାଯାଏ । କଳିଙ୍ଗ ଅଧିବାସୀଙ୍କ ଭଳି ଦକ୍ଷିଣ-ପୂର୍ବ ଏସିଆରେ ଆଉ ଏକ ସମୃଦ୍ଧ ଜାତି ଚୀନ ମଧ୍ୟ ସେତେବେଳେ ସାଂସ୍କୃତିକ ବିନିମୟରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ପ୍ରାଚୀନ କଳିଙ୍ଗ ସହିତ ଚୀନର ସଂପର୍କ ସ୍ଥାପନାରେ ପ୍ରଥମ ଆଧାର ଥିଲା ବୌଦ୍ଧଧର୍ମ ସଂସ୍କୃତି ସମ୍ବନ୍ଧୀୟ ଶିକ୍ଷା । ସେଥିପାଇଁ ସେମାନେ ଦକ୍ଷିଣ-ପୂର୍ବ ଏସୀୟ ଦେଶଗୁଡ଼ିକ ଦେଇ ଭାରତ ଏବଂ ସିଂହଳକୁ ଯିବା ଆସିବା କରୁଥିଲେ । ସପ୍ତମ ଏବଂ ଅଷ୍ଟମ ଶତାବ୍ଦୀରେ ଚୀନରେ ଟାଙ୍ଗ ରାଜବଂଶର ଶାସନ ସମୟରେ ଜାଭା ଦ୍ୱୀପରେ କଳିଙ୍ଗ ନାମରେ ଏକ ଶକ୍ତିଶାଳୀ ରାଜ୍ୟ ସ୍ଥାପିତ ହୋଇଥିଲା । ଯାହାକୁ ଚୀନ ଭାଷାରେ ଉଚ୍ଚାରଣ ଅନୁଯାୟୀ କୁହାଯାଉଥିଲା 'ହୋଲିଙ୍ଗ' । ଜାଭାର ଏହି ହୋଲିଙ୍ଗ ବା କଳିଙ୍ଗ ରାଜ୍ୟ ବହୁତ ସମୃଦ୍ଧ ଥିଲା । ଏଠାରେ ଜନ୍ମଗ୍ରହଣ କରିଥିବା ଜ୍ଞାନଭଦ୍ର ନାମକ ପ୍ରସିଦ୍ଧ ବୌଦ୍ଧ ସନ୍ନ୍ୟାସୀଙ୍କ ପ୍ରଚେଷ୍ଟାରେ ଚୀନ ପଣ୍ଡିତ ହୁଇନିଂଙ୍କ ଦ୍ୱାରା ବୌଦ୍ଧ ଥେରବାଦ ଶାସ୍ତ୍ରର ଚୀନା ଅନୁବାଦ କରାଯାଇଥିଲା । ଓଡ଼ିଶାରେ ପ୍ରତିଷ୍ଠିତ ଶୈଳୋଦ୍ଭବ ବଂଶର ଦାୟାଦମାନେ ଭୌମକର ରାଜାମାନଙ୍କ ଦ୍ୱାରା ବିତାଡ଼ିତ ହୋଇ ସୁମାତ୍ରାରେ ଶୈଳେନ୍ଦ୍ର ନାମରେ ଏକ ରାଜବଂଶ ଆରମ୍ଭ କରିଥିଲେ ଏବଂ କ୍ରମେ ଶକ୍ତିଶାଳୀ ହୋଇ ସମଗ୍ର ଜାଭା, ମାଳୟ ଓ ସୁମାତ୍ରାକୁ ଏକ ଶାସନାଧୀନ କରିପାରିଥିଲେ । ଏମାନଙ୍କ ଦ୍ୱାରା ପୃଥିବୀର ସର୍ବବୃହତ୍ ବୌଦ୍ଧ ସ୍ତୂପ 'ବୋରବୁଦୁର'ର ନିର୍ମାଣ କରାଯାଇଥିଲା । ଯେଉଁଥିରେ ଓଡ଼ିଶାର ତତ୍କାଳୀନ କାରୀଗର ଓ ଶିଳ୍ପୀମାନଙ୍କର ଅଶେଷ ଯୋଗଦାନ ଥିଲା ବୋଲି ଐତିହାସିକମାନେ ବିଶ୍ୱାସ କରନ୍ତି । ପରବର୍ତ୍ତୀ ସମୟରେ ଶୈଳେନ୍ଦ୍ରମାନଙ୍କ ମଧ୍ୟରେ ଭ୍ରାତୃ ବିବାଦ ଯୋଗୁଁ ଏହି ରାଜ୍ୟର ପତନ ଘଟି ସୀମା ସଂକୁଚିତ ହୋଇଥିଲା ଏବଂ ଜାଭାରେ 'ମାତରମ୍' ନାମରେ ଆଉ ଏକ ରାଜ୍ୟ ସୃଷ୍ଟି ହେଲା, ଯାହାର ଶାସକମାନେ ଶୈବ ହିନ୍ଦୁ ଧର୍ମର ପୃଷ୍ଠପୋଷକ ଥିବାରୁ ବିଖ୍ୟାତ 'ପ୍ରମ୍ବାନନ' ଶୈବ ମନ୍ଦିର ତିଆରି ହୋଇଥିଲା । ଏହି ଶୈବ ସଂସ୍କୃତି ମଧ୍ୟ କୌଣସି ଏକ ସମୟରେ କଳିଙ୍ଗରୁ ଯାଇ ସେଠାରେ କ୍ରମେ ପ୍ରଭାବ ବିସ୍ତାର କରିଥିଲା ବୋଲି କୁହାଯାଏ । କଳା, ସଂସ୍କୃତି ଦୃଷ୍ଟିରୁ ଜାଭା ଦ୍ୱୀପର ଖ୍ୟାତି ବେଶ୍ ପ୍ରସିଦ୍ଧ ଥିଲା ଯାହା କଳିଙ୍ଗବାସୀଙ୍କ ଅବଦାନ କହିଲେ ଭୁଲ ହେବନି ।

ଶୈଳେନ୍ଦ୍ରମାନଙ୍କ ସ୍ଥାପିତ 'ଶ୍ରୀ ବିଜୟ ସାମ୍ରାଜ୍ୟରେ ଜାଭା, ସୁମାତ୍ରା ସହ ମାଳୟ ବା ବର୍ତ୍ତମାନର ମାଲେସିଆ ମଧ୍ୟ ଅନ୍ତର୍ଭୁକ୍ତ ଥିଲା । ସେହି ସମୟରେ କଳିଙ୍ଗରୁ ଯାଇ ମାଳୟ ଦ୍ୱୀପରେ ବସବାସ କରିଥିବା କଳିଙ୍ଗବାସୀଙ୍କ ପ୍ରଭାବ ଏପରି ବୃଦ୍ଧି ପାଇଥିଲା ଯେ, ତାହା ଆଜିଯାଏ ମଧ୍ୟ ବଳବତ୍ତର ରହିଛି । ଇଣ୍ଡୋନେସିଆର ବିଭିନ୍ନ ଦ୍ୱୀପ ସମେତ ମାଲେସିଆକୁ ପଞ୍ଚଦଶ ଖ୍ରୀଷ୍ଟାବ୍ଦ ପୂର୍ବରୁ ଯାଇଥିବା ସମସ୍ତ ଭାରତୀୟମାନଙ୍କୁ ସ୍ଥାନୀୟ ଅଧିବାସୀ ଆଜି ବି କେଲିଙ୍ଗ ବା କଳିଙ୍ଗ ବୋଲି ସମ୍ବୋଧନ କରିଥାନ୍ତି । ଭାରତର

ଯେକୌଣସି ପ୍ରାନ୍ତରର ଅଧିବାସୀ ହୁଅନ୍ତୁ ନା କାହିଁକି ସମସ୍ତଙ୍କୁ ସେମାନେ କେଲିଙ୍ଗ ନାମରେ ପୃଥକ ଭାବରେ ଦର୍ଶାଇବା ପ୍ରାଚୀନ କଳିଙ୍ଗର ପ୍ରଭାବ ସଂପର୍କରେ ପ୍ରମାଣ ଦେଇଥାଏ । ଆଉ ଏକ ବିଶେଷ କଥା ହେଉଛି ମାଲେସିଆରେ ହିନ୍ଦୁ ଏବଂ ବୌଦ୍ଧମାନଙ୍କ ବ୍ୟତୀତ ସେଠାରେ ବାସ କରି ଆସୁଥିବା ଭାରତୀୟ ଅନ୍ୟ ଧର୍ମାବଲମ୍ବୀମାନଙ୍କର ଉପାସନା ପୀଠ ସହିତ ମଧ୍ୟ 'କେଲିଙ୍ଗ' ଶବ୍ଦ ଯୋଡ଼ି ହୋଇ ରହିଛି । ଏହାର ଏକ ଉଦାହରଣ ହେଉଛି, 'ପେନାଙ୍ଗ'ଠାରେ ଥିବା ମସଜିଦ୍ 'କାମପଙ୍ଗ କେଲିଙ୍ଗ (kampong keling)' ଯାହାର ମାଲେସିଆର ପ୍ରାଚୀନ ଐତିହାସିକ ପର୍ଯ୍ୟଟନ ସ୍ଥଳୀର ମାନ୍ୟତା ପାଇଛି । 'କେଲିଙ୍ଗ ବା କଳିଙ୍ଗ' ଶବ୍ଦଟି ଏପରି ବହୁଳ ପ୍ରଚଳିତ ଯେ, ମାଳୟ କହୁଥିବା ସ୍ଥାନୀୟ ଅଧିବାସୀ ଏବଂ ସେଠାରେ ବାସ କରି ଆସୁଥିବା ଚୀନ ବଂଶୋଦ୍ଭବ ଲୋକଙ୍କ କଥିତ ଭାଷାରେ ସେହି ଶବ୍ଦକୁ ନେଇ କାଳକ୍ରମେ ଅନେକ ଢଗଢ଼ମାଳି ଏବଂ ରୁଢ଼ି ଇତ୍ୟାଦି ସୃଷ୍ଟି ହୋଇଛି । ଯାହାର ପ୍ରୟୋଗ ଭାରତୀୟମାନଙ୍କୁ ଜାତିଗତ ଭାବରେ ଅଲଗା ବୋଲି ଦର୍ଶାଇବା ସହିତ ସେମାନଙ୍କର ଚରିତ୍ର ସଂହାର କରିବା ପାଇଁ ବ୍ୟବହାର ହୁଏ । ଏଥିପାଇଁ କେଲିଙ୍ଗ ଶବ୍ଦକୁ ଭାରତୀୟମାନଙ୍କ ଉଦ୍ଦେଶ୍ୟରେ ଅପମାନ ସୂଚକ ଶବ୍ଦ ଭାବରେ ବର୍ତ୍ତମାନ ସେଠାରେ ବିବେଚନା କରାଯାଉଛି । ମାଲେସିଆର ପୂର୍ବକୁ ଥିବା ଆଉ ଏକ ଦ୍ୱୀପଦେଶ ଫିଲିଫାଇନ୍ସରେ କଳିଙ୍ଗ ନାମରେ ଏକ ପ୍ରାଚୀନ ଜାତି ବାସ କରନ୍ତି ଏବଂ କଳିଙ୍ଗ ନାମରେ ଏକ ଅଞ୍ଚଳ ମଧ୍ୟ ରହିଛି । କଳିଙ୍ଗ ନାମ ସଂଯୁକ୍ତ ଥାଇ ସେ ଦେଶରେ ଅନେକ ସରକାରୀ ଏବଂ ବେସରକାରୀ କାର୍ଯ୍ୟାଳୟ ମଧ୍ୟ ରହିଛି । ରାଖାଲ ଦାସ ବାନାର୍ଜୀ ନାମକ ଜଣେ ବିଶିଷ୍ଟ ଐତିହାସିକ ଏବଂ ଗବେଷକ ମତ ଦିଅନ୍ତି ଭାରତର କଳିଙ୍ଗ ଅଧିବାସୀମାନେ ଫିଲିଫାଇନ୍ସ ପର୍ଯ୍ୟନ୍ତ ନୌବାଣିଜ୍ୟ ମାଧ୍ୟମରେ ନିଜର ପ୍ରଭାବ ବିସ୍ତାର କରିଥିଲେ । ତେବେ ଏ ବିଷୟରେ ଅଧିକ ଗବେଷଣାର ଆବଶ୍ୟକତା ରହିଛି ।

ଦକ୍ଷିଣ-ପୂର୍ବ ଏସିଆର ଆଉ ଏକ ଦେଶ କମ୍ବୋଦକ । କାମ୍ବୋଡ଼ିଆରେ ପ୍ରଚୀନ କଳିଙ୍ଗର ଅଧିବାସୀମାନେ ନୌବାଣିଜ୍ୟ ମାଧ୍ୟମରେ ନିଜର ସାଂସ୍କୃତିକ ପ୍ରଭାବ ବିସ୍ତାର କରିପାରିଥିଲେ । କାମ୍ବୋଡ଼ିଆ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଗଠିତ ହୋଇଥିବା 'ଫୁନାନ' ସାମାଜ୍ର୍ୟର ପ୍ରତିଷ୍ଠାତା ଜଣେ କୌଣ୍ଡିନ୍ୟ ଗୋତ୍ରୀୟ ବ୍ରାହ୍ମଣ ବୋଲି କୁହାଯାଏ । ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ କୌଣ୍ଡିନ୍ୟ ଗୋତ୍ରୀୟ ବ୍ରାହ୍ମଣମାନେ ବାସ କରୁଥିବାରୁ ଫୁନାନ୍ ସାମାଜ୍ର୍ୟର ପ୍ରତିଷ୍ଠାତା ପ୍ରାଚୀନ କଳିଙ୍ଗରୁ ଯାଇଥାଇପାରନ୍ତି ବୋଲି ଐତିହାସିକମାନେ ମତ ଦିଅନ୍ତି । ନୌବାଣିଜ୍ୟ ଧର୍ମ ସଂସ୍କୃତିର ପରିପ୍ରଚାର ବିଶେଷ ସହାୟକ ହେବାରୁ କ୍ରମେ ବୌଦ୍ଧମାନଙ୍କ ସହିତ ହିନ୍ଦୁ ଧର୍ମାବଲମ୍ବୀ ବିଶେଷ କରି ବ୍ରାହ୍ମଣମାନେ ମଧ୍ୟ ଦରିଆପାରି ଦେଶମାନଙ୍କୁ ଅନେକ ସଂଖ୍ୟାରେ ଯାଇପାରୁଥିଲେ ଏବଂ ସେତେବେଳେ ସମୁଦ୍ର ପାରିହେଲେ ଜାତିଧର୍ମ ଚାଲିଯିବା ଭଳି ଭ୍ରାନ୍ତ ଧାରଣାଟି ସୃଷ୍ଟି ହୋଇନଥିଲା । କୌଣ୍ଡିନ୍ୟ ଗୋତ୍ରୀୟ ବ୍ରାହ୍ମଣଙ୍କ ପରେ କଳିଙ୍ଗରୁ ସୂର୍ଯ୍ୟ ଉପାସକ ବ୍ରାହ୍ମଣମାନେ ପରବର୍ତ୍ତୀ ସମୟରେ କାମ୍ବୋଡ଼ିଆକୁ ଯାଇଥିଲେ ଏବଂ ଅନେକ ସେଠାରେ ବୈବାହିକ ବନ୍ଧନରେ ବାନ୍ଧି ହୋଇ ରାଜ୍ୟ ଶାସନ ସହିତ ସଂପୃକ୍ତ ସେବା ସଂଗେସଂଗେ ନିଜ ଅଞ୍ଚଳର ସଂସ୍କୃତିକୁ ପ୍ରଚାର କରାଇବାରେ ବ୍ରତୀ ହୋଇଥିଲେ । ସେସମୟରେ କାମ୍ବୋଡ଼ିଆରେ ହିନ୍ଦୁ ଶୈବ ଉପାସନା ସହ ସୂର୍ଯ୍ୟ ଉପାସନା ଓ ବିଷ୍ଣୁ ଉପାସନା ମଧ୍ୟ ଥିଲା ଏବଂ ତା' ସହିତ ବୌଦ୍ଧ ଥେରବାଦର ମଧ୍ୟ ପ୍ରଚଳନ ହୋଇଥିଲା । ସଂସ୍କୃତ ଜାଣିଥିବା ବୌଦ୍ଧ ପଣ୍ଡିତମାନେ ଚୀନ ଦେଶକୁ ନିମନ୍ତ୍ରିତ ହୋଇ ସେଠାରେ ସଂସ୍କୃତ ଲିଖିତ ବିଭିନ୍ନ ବୌଦ୍ଧ ଗ୍ରନ୍ଥକୁ ଚୀନ ଭାଷାରେ ଅନୁବାଦ କରାଇବାରେ ସାହାଯ୍ୟ କରିଥିଲେ । କାମ୍ବୋଡ଼ିଆ ନିକଟବର୍ତ୍ତୀ ଏକ ରାଜ୍ୟ ଚମ୍ପା ବା ବର୍ତ୍ତମାନର ଭିଏତନାମ ଦେଶ ଅନ୍ୟ ଦକ୍ଷିଣ-ପୂର୍ବ ଏସୀୟ ଦେଶମାନଙ୍କ ଭଳି କଳିଙ୍ଗବାସୀଙ୍କ ଦ୍ୱାରା ସାଂସ୍କୃତିକ ଭାବରେ ବେଶ୍ ପ୍ରଭାବିତ ହୋଇଥିବାର ଜଣାଯାଏ । ୧୯୨ ଖ୍ରୀଷ୍ଟାବ୍ଦରେ 'କିଉ-ଲିଏନ' କୁହାଯାଉଥିବା କଳିଙ୍ଗ ଅଧିବାସୀମାନେ ଚୀନ ଶାସନ କବଳରୁ ଚମ୍ପା ରାଜ୍ୟକୁ ଉଦ୍ଧାର କରି ସେଠାରେ ନିଜର ସାମ୍ରାଜ୍ୟ ବିସ୍ତାର କରିବା ସହିତ ଭାରତୀୟ ଧର୍ମ ସଂସ୍କୃତି ଲୋକପ୍ରିୟ କରାଇଥିଲେ । କଳିଙ୍ଗ ଅଧିବାସୀଙ୍କ ଦ୍ୱାରା ସେଠାରେ ବିଭିନ୍ନ ସମୟରେ କେତେକ ରାଜବଂଶ ପ୍ରତିଷ୍ଠା ହେବା ସହ ମୁଖ୍ୟତଃ ଶୈବ, ଶାକ୍ତ ଏବଂ ବୈଷ୍ଣବ ଧର୍ମର ବହୁଳ ପ୍ରଚଳନ ହୋଇ ଅନେକ ମନ୍ଦିର ଏବଂ ଉପାସନା କେନ୍ଦ୍ର ସ୍ଥାପିତ ହୋଇଥିଲା । ତୃତୀୟ କିମ୍ବା ଚତୁର୍ଥ ଶତାବ୍ଦୀରେ ଭଦ୍ରବର୍ମନଙ୍କ ରାଜତ୍ୱ ସମୟରେ ଚମ୍ପା ରାଜ୍ୟରେ ଏକ ନଦୀର ନାମ ଥିଲା ମହାନଦୀ । ସପ୍ତମ ଶତାବ୍ଦୀରେ ରାଜା ବିକ୍ରାନ୍ତ ବର୍ମନଙ୍କ ଦ୍ୱାରା ନିର୍ମିତ ହୋଇଥିବା ଏକ ବିଷ୍ଣୁ ମନ୍ଦିରର ନାମ ଥିଲା ଭାଗବତ ପୁରୁଷୋତ୍ତମ ଏବଂ ଅଷ୍ଟମ ଶତାବ୍ଦୀରେ ଶକ୍ତି ଭାବରେ ଭଗବତୀ ପୂଜା ପ୍ରଚଳିତ ଥିବାରୁ ସେଠାରେ କଳିଙ୍ଗବାସୀଙ୍କ ଧର୍ମ ସଂସ୍କୃତିର ପ୍ରଭାବ କିପରି ପ୍ରଭାବ ବିସ୍ତାର କରିଥିଲା, ତାହା ସହଜରେ ଅନୁମେୟ । ଏଠାରେ ଉଲ୍ଲେଖଯୋଗ୍ୟ ଯେ, ମହାନଦୀ ଓଡ଼ିଶାରେ ଏକ ପ୍ରମୁଖ ନଦୀ ହୋଇଥିବା ସ୍ଥଳେ ପୁରୁଷୋତ୍ତମ ଏବଂ ଭଗବତୀ ଉପାସନା ସମଗ୍ର ଭାରତବର୍ଷରେ କେବଳ ଓଡ଼ିଶାରେ ହିଁ ରହିଛି । ପୂର୍ବେ କୌଣସି ଅଞ୍ଚଳର ଅଧିବାସୀ

ଅନ୍ୟ ଦୂର ଅଞ୍ଚଳରେ ବସବାସ କରୁଥିଲେ । ଅନ୍ୟମାନଙ୍କଠାରୁ ନିଜର ସ୍ୱତନ୍ତ୍ରତା ଜାହିର କରିବା ପାଇଁ ନିଜ ଅଞ୍ଚଳରେ ବିଭିନ୍ନ ସ୍ଥାନ ଏବଂ ଦେବଦେବୀଙ୍କ ନାମକୁ ସେଠାରେ ବ୍ୟବହାର କରୁଥିଲେ ।

ନୌବାଣିଜ୍ୟ ମାଧ୍ୟମରେ ପ୍ରାଚୀନ କଳିଙ୍ଗବାସୀ ଶ୍ୟାମଦେଶ ବା ଆଧୁନିକ ଥାଇଲାଣ୍ଡରେ ମଧ୍ୟ ନିଜର ପ୍ରଭାବ ବିସ୍ତାର କରିଥିଲେ । ବର୍ମାରେ ବାସ କରି ଆସୁଥିବା କଳିଙ୍ଗର ଅଧିବାସୀମାନେ ଜଣେ ରାଣୀଙ୍କ ନେତୃତ୍ୱରେ ସପ୍ତମ ଶତାବ୍ଦୀର ପ୍ରଥମାର୍ଦ୍ଧରେ କୌଣସି କାରଣରୁ ବର୍ମାରୁ ପଳାଇ ଆସି ଶ୍ୟାମ ଦେଶରେ 'ଦ୍ୱାରାବତୀ' ରାଜ୍ୟ ଏବଂ 'ହରିପୁଞ୍ଜୟ' ନାମକ ସହର ପ୍ରତିଷ୍ଠା କରିଥିଲେ । ତେବେ ଏହାର ବହୁ ପୂର୍ବରୁ ସେହି ଅଞ୍ଚଳରେ କଳିଙ୍ଗବାସୀ ମହାଯାନୀ ବୌଦ୍ଧ ଧର୍ମାବଲମ୍ବୀଙ୍କ ଦ୍ୱାରା ବୁଦ୍ଧଙ୍କର ବିଭିନ୍ନ ମୂର୍ତ୍ତି ଏବଂ ଚୈତ୍ୟ ସବୁ ଗଢ଼ି ଉଠିଥିବା କଥା ପ୍ରତ୍ନତାତ୍ତ୍ୱିକ ଖନନରୁ ଜଣାପଡ଼ିଛି । ତ୍ରୟୋଦଶ ଶତାବ୍ଦୀରେ ଶ୍ୟାମ ଦେଶରେ 'ଥାଇ' ଜାତିର ଲୋକମାନେ ବାହାରୁ ଆସି ବସବାସ କରିବା ସହିତ ନିଜର ସାମ୍ରାଜ୍ୟ ବିସ୍ତାର କରିଥିଲେ ମଧ୍ୟ ପୂର୍ବରୁ ସେଠାରେ ଚଳି ଆସୁଥିବା କଳିଙ୍ଗର ରୀତିନୀତି ଏବଂ ସଂସ୍କୃତିକୁ ସଂପୂର୍ଣ୍ଣ ଭାବରେ ବଦଳେଇ ପାରିନଥିଲେ ଯାହା ଆଜି ମଧ୍ୟ କିଛି ମାତ୍ରାରେ ବଳବତ୍ତର ରହିଛି । ଓଡ଼ିଶାରେ ପାଳିତ ହେଉଥିବା କୃଷିଭିତ୍ତିକ ପର୍ବ 'ଅକ୍ଷୟ ତୃତୀୟା' ଏବଂ ନୌବାଣିଜ୍ୟିକ ସ୍ମୃତି ବହନକାରୀ କାର୍ତ୍ତିକ ପୂର୍ଣ୍ଣିମାର 'ଡଙ୍ଗାଭସା' ଉତ୍ସବ ଏବେ ମଧ୍ୟ ସେଠାରେ ପାଳିତ ହେଉଛି । ଅକ୍ଷୟ ତୃତୀୟା, ରାଜକୀୟ ଚାଷ ଉତ୍ସବ ନାମରେ ସେଠାରେ ପାଳିତ ହୁଏ ଯେଉଁଥିରେ ପାରମ୍ପରିକ ଭାବରେ ସମ୍ରାଟ ନିଜେ ଲଙ୍ଗଳ ଧରି ଚାଷ କାମର ଶୁଭାରମ୍ଭ କରନ୍ତି ଏବଂ କୃଷକମାନେ ସେଥିରେ ସହଯୋଗ କରନ୍ତି । ଏହାର ରୀତିନୀତି ବୌଦ୍ଧ ପୁରୋହିତଙ୍କ ଦ୍ୱାରା ସଂପନ୍ନ ହୁଏ । ଠିକ୍ ସେହିପରି କାର୍ତ୍ତିକ ପୂର୍ଣ୍ଣିମା ଦିନ ପାଳିତ ହୁଏ 'ଲଇକ୍ରାଥଂ' ବା 'ଲଇ ବ୍ରାହ୍ପ୍ରହଦୀପ' ନାମକ ଡଙ୍ଗା ଭସା ପର୍ବ, ଯେଉଁଥିରେ ବିଶେଷ ଭାବରେ ସେ ଦେଶର ମହିଳାମାନେ ଅଂଶଗ୍ରହଣ କରନ୍ତି ଏବଂ ନଦୀ, ପୋଖରୀରେ କଦଳୀ ବାହୁଙ୍ଗା କିମ୍ବା ପଦ୍ମପତ୍ରରେ ତିଆରି ଡଙ୍ଗା ବ୍ୟବହାର କରାଯାଏ । ଏହି ସବୁ ଘଟଣାରୁ ଥାଇଲାଣ୍ଡରେ କଳିଙ୍ଗର ଅଧିବାସୀମାନଙ୍କର ସାଂସ୍କୃତିକ ପ୍ରଭାବ କିପରି ଥିଲା ସହଜରେ ଜାଣିହୁଏ ।

ପ୍ରାଚୀନ କଳିଙ୍ଗ ସହିତ ଦକ୍ଷିଣ-ପୂର୍ବ ଏସିଆର ଆଉ ଯେଉଁ ପ୍ରମୁଖ ଭୂଖଣ୍ଡ ସହିତ ବାଣିଜ୍ୟିକ ଏବଂ ସାଂସ୍କୃତିକ ସଂପର୍କ ଦେଇ ବିଶେଷ ଭାବରେ ଆଲୋଚନା ହୁଏ, ତାହା ହେଉଛି ବ୍ରହ୍ମଦେଶ ବା ଆଜିର ମିଆନମ୍ୟାର । ଏହାକୁ 'ସୁବର୍ଣ୍ଣ' ଦେଶ ମଧ୍ୟ କୁହାଯାଉଥିଲା । କୁହାଯାଏ ଅଶୋକଙ୍କ କଳିଙ୍ଗ ଆକ୍ରମଣର ବହୁ ପୂର୍ବରୁ କଳିଙ୍ଗବାସୀ ବ୍ରହ୍ମଦେଶର ଅନେକ ଅଞ୍ଚଳରେ ନିଜର ବାଣିଜ୍ୟିକ ଉପନିବେଶ ସ୍ଥାପନ କରିଥିଲେ । ଏକଦା ବ୍ରହ୍ମଦେଶର ଦୁଇଟି ପ୍ରମୁଖ ଅଞ୍ଚଳ 'ପେଗୁ' ଓ ଏହାର ଉତ୍ତରାଞ୍ଚଳ ଯଥାକ୍ରମେ 'କଳିଙ୍ଗ ଓ ଉତ୍କଳ' ନାମରେ ପରିଚିତ ଥିଲା । ଏପରି ଏହାର କାରଣ ସେଠାକାର ଅଧିବାସୀ କଳିଙ୍ଗ ବା ଉତ୍କଳରୁ ଯାଇ ବସବାସ କରିବା ସହିତ ନିଜର ପ୍ରଭାବ ବିସ୍ତାର କରିଥିଲେ । କଳିଙ୍ଗବାସୀଙ୍କ ସେ ଦେଶରେ ପ୍ରଭାବ ବିସ୍ତାର ଏବଂ ସଂସ୍କୃତିକୁ ନେଇ ଅନେକ ଲୋକକଥା ମଧ୍ୟ ସେଠାରେ ପ୍ରଚଳିତ ଅଛି ।

ଏସିଆର ବୃହତ୍ତମ ଚୀନ କଳିଙ୍ଗର ଧର୍ମ ସଂସ୍କୃତି ଦ୍ୱାରା ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭାବରେ ପ୍ରଭାବିତ ହୋଇଛି । ଫାୟିୟାନ, ହୁଏନସାଂ ଏବଂ ଇତ୍‌ସିଂ ଭଳି ବୌଦ୍ଧ ପଣ୍ଡିତ ଓ ପରିବ୍ରାଜକମାନେ କଳିଙ୍ଗ ଭ୍ରମଣ କରି ବୌଦ୍ଧ ଧର୍ମ ସଂସ୍କୃତି ବିଷୟରେ ଜ୍ଞାନ ଆହରଣ କରିବା ସହିତ ଯେଉଁ ବିବରଣୀ ଲେଖି ଯାଇଛନ୍ତି, ତାହା ସେ ସମୟର ଇତିହାସ ଜାଣିବା ପାଇଁ ନିର୍ଭରଯୋଗ୍ୟ ଉତ୍ସ ବୋଲି ବିବେଚନା କରାଯାଏ । ଏସବୁ କେବଳ ସମ୍ଭବ ହୋଇଥିଲା । ଓଡ଼ିଶାର ପ୍ରାଚୀନ ନୌବାଣିଜ୍ୟିକ ଶକ୍ତି ଯୋଗୁଁ କଳିଙ୍ଗର ଅଧିବାସୀମାନେ ଯେ କେବଳ ଦକ୍ଷିଣ-ପୂର୍ବ ଏସିଆ ବା ଚୀନ ପ୍ରଭୃତି ଦେଶରେ ନିଜ ସଂସ୍କୃତିର ଚିହ୍ନ ଛାଡ଼ିଛନ୍ତି ତା' ନୁହେଁ, ଏକ ଦୁର୍ଦ୍ଧର୍ଷ ନୌବାଣିଜ୍ୟିକ ଜାତି ହିସାବରେ ପାଶ୍ଚାତ୍ୟର ଗ୍ରୀସ୍, ରୋମ ଏବଂ କେତେକ ଆଫ୍ରିକୀୟ ଦେଶକୁ ମଧ୍ୟ ବାଣିଜ୍ୟ ବ୍ୟବସାୟ କରିବା ପାଇଁ ଯାଇ ସେଠାରେ ପ୍ରଭାବ ବିସ୍ତାର କରିଥିଲେ । ସେସବୁ ଦେଶର ଅଧିବାସୀ ମଧ୍ୟ ନୌବାଣିଜ୍ୟ ମାଧ୍ୟମରେ ଆମ ରାଜ୍ୟକୁ ଆସୁଥିବାର ଅନେକ ପ୍ରମାଣ ରହିଛି । ତେବେ ଏହି ପ୍ରକ୍ରିୟାର ସାଂସ୍କୃତିକ ପ୍ରଭାବ କ'ଣ ଥିଲା, ସେ ଦିଗରେ ଅଧିକ ଗବେଷଣାର ଆବଶ୍ୟକତା ରହିଛି ।

ସହାୟକ ଗ୍ରନ୍ଥସୂଚୀ

୧) ଓଡ଼ିଆ । ଜାତିର ଇତିହାସ : ଡକ୍ଟର ନବୀନ କୁମାର ସାହୁ

୨) ଆକା ମା ବୋଇ : ଆଶୁତୋଷ ପ୍ରସାଦ ପଟ୍ଟନାୟକ

୩) ହିଷ୍ଟ୍ରି ଅଫ୍ ଓଡ଼ିଶା : ଆର୍.କେ. ବାନାର୍ଜୀ

୪) ୱିକି ପିଡ଼ିଆ (wikipedia) ଇଣ୍ଟରନେଟ୍‌ରେ ଉପଲବ୍ଧ ତଥ୍ୟ ।

ଗ୍ରା/ପୋ- ସର୍ଦ୍ଦୋଳା, ଭାୟା- କନକପୁର
ଜି-ଜଗତସିଂହପୁର-୭୫୪୧୩୬

# କାର୍ତ୍ତିକ ପୂର୍ଣ୍ଣିମା ଓ ଉତ୍କଳୀୟ ନୌ-ବାଣିଜ୍ୟ

ରବୀନ୍ଦ୍ର କୁମାର ବେହୁରିଆ



ନ କାର୍ତ୍ତିକ ସମୋ ମାସୋ
ନ କୃତ୍ୟେନ ସମଂ ଯୁଗଂ ।

କାର୍ତ୍ତିକ ମାସ ପରି ମାସ ନାହିଁ । ସତ୍ୟଯୁଗ ପରି ଯୁଗ ନାହିଁ । କାର୍ତ୍ତିକ ମାସରୁ ସତ୍ୟଯୁଗ ଆରମ୍ଭ ହୋଇଥିବା ପରଂପରା ଓ କିମ୍ବଦନ୍ତୀ କହେ । କାର୍ତ୍ତିକ ଧର୍ମାଚରଣ ମାସ । କୁମାର ପୂର୍ଣ୍ଣିମାର ପରଦିନଠାରୁ କାର୍ତ୍ତିକ ବ୍ରତ ଆରମ୍ଭ ହୋଇ କାର୍ତ୍ତିକ ପୂର୍ଣ୍ଣିମାରେ ପରିସମାପ୍ତି ହୋଇଥାଏ ।

କାର୍ତ୍ତିକ ପୂର୍ଣ୍ଣିମା ଦିନ ପ୍ରତ୍ୟୁଷରୁ ବୋଇତ ବନ୍ଦାଣ ପ୍ରଥା ଓଡ଼ିଶାରେ କେବେଠାରୁ ପ୍ରଚଳିତ ତା'ର ବିବରଣୀ ଇତିହାସରେ ଲେଖାଯାଇ ନାହିଁ । କିନ୍ତୁ ଏହା ଯେ ଅତୀତ ଉତ୍କଳର ଗୌରବୋଜ୍ଜ୍ୱଳ ନୌ-ବାଣିଜ୍ୟ ପରଂପରାର ଦୃପ୍ତ, ଉଦ୍‌ଘୋଷକ ଏଥିରେ ସନ୍ଦେହ ନାହିଁ । କଦଳୀ ଗଛର ବାହୁଙ୍ଗାରେ ପାନ, ଗୁଆ ରଖି ଆ କା ମା ବୈ ଗୁଆ ପାନ ଦେଇ, ଗୁଆ ପାନ ଯାକ ତୋର, ମାସକ ଧରମ ମୋର- ଏହି ପଦ ବୋଲି ଆଜି ବି ଓଡ଼ିଶାର ପୁରପଲ୍ଲୀର ଜଳାଶୟମାନଙ୍କରେ ଡଙ୍ଗା ଭସାଯାଇଥାଏ । ସମ୍ଭବତଃ ଓଡ଼ିଶା ହେଉଛି ଏକମାତ୍ର ରାଜ୍ୟ ଯେଉଁଠି ଆବାଳବୃଦ୍ଧବନିତା ଧର୍ମ ପାଳନ କଲାଭଳି ନଦୀ ଓ ଜଳାଶୟମାନଙ୍କୁ ବର୍ତ୍ତିକା ସମନ୍ୱିତ ବୋଇତ ବନ୍ଦାଣ ଦ୍ୱାରା ଆଲୋକିତ କରିଥାନ୍ତି । ପଞ୍ଚଦଶ ଶତାବ୍ଦୀରେ କବି ସାରଳା ଦାସ ମହାଭାରତର ଆଦିପର୍ବରେ କୁନ୍ତୀ ଓ ପାଣ୍ଡୁଙ୍କ ବିବାହ ପ୍ରସଙ୍ଗ ଉଲ୍ଲେଖ କରିବାକୁ ଯାଇ ଲେଖିଛନ୍ତି-

କାର୍ତ୍ତିକ ମାସ ଶୁକ୍ଳ ପକ୍ଷ ବୁଧବାର ଯେ ପୂର୍ଣ୍ଣିମା
ଆ କା ମା ଭୈ ସ୍ନାହାନ ଦିନ ଗଙ୍ଗାକୁ ଗଲେ
କୁନ୍ତ ଭୋଜ ସ୍ୱାମୀ ।
ସେହି ଗଙ୍ଗା ସ୍ନାହାନକୁ ଭୀଷ୍ମ ଯେ ଅଇଲେ
କୁନ୍ତ ଭୋଜ ରାଜା ସଙ୍ଗେ ମଇତ୍ର ହୋଇଲେ ।୧।

ଉପେନ୍ଦ୍ର ଭଞ୍ଜଙ୍କ ପ୍ରସିଦ୍ଧ ଲାବଣ୍ୟବତୀ କାବ୍ୟରେ ବୋଇତ ବନ୍ଦାଣର ଉଲ୍ଲେଖ ରହିଛି-

ବୋଇତ ଲାଗିଲା ଆସି ସିଂହଳ ଦ୍ୱୀପରେ
ସାଧବ ଯୁବତୀମାନେ ଅତି ପ୍ରମୋଦରେ

ଗଲେ ବୋଇତ ବନ୍ଦାଇ
ଅର୍ଘ୍ୟଥାଳି କରେ ସର୍ବେ ହୁଳହୁଳି ଦେଇ ।୨।

ସ୍ୱର୍ଗୀୟ ଚକ୍ରଧର ମହାପାତ୍ରଙ୍କ ଦ୍ୱାରା ଆବିଷ୍କୃତ ଅର୍ଣ୍ଣବ ବିହାର ନାମକ ନୌ-ଶାସ୍ତ୍ରରୁ ଜଣାଯାଏ ଯେ ଏ ଦେଶର ବଣିକମାନେ ଉତ୍ତମ ହସ୍ତୀ, ସୂକ୍ଷ୍ମ ପଟ୍ଟବସ୍ତ୍ର ଓ ଉଚ୍ଚକୋଟୀର ପଣ୍ୟ ଦ୍ରବ୍ୟ ବୋଇତରେ ବହନ କରି ଦୂର ଦେଶରେ ବାଣିଜ୍ୟ କରୁଥିଲେ । ଏହି ପୋଥିରୁ ଆହୁରି ଜଣାଯାଏ ଯେ, ଅର୍ଣ୍ଣବ ବିହାର ରଚିତ ହେବା ବହୁ ପୂର୍ବରୁ ଏ ରାଜ୍ୟରେ ବହିତ୍ର କୀର୍ତ୍ତି ବୈଭବ, ଜଳଯାନ, ବିଶାଖା ନିର୍ଦ୍ଦେଶ ପ୍ରଭୃତି ନୌ-ଶାସ୍ତ୍ର ରହିଥିଲା ।

ସାରଳା ସାହିତ୍ୟର ରଚନାମାନଙ୍କରେ ସାରଳା ଦାସ ଯେଉଁ ଓଡ଼ିଆ ସଂସ୍କୃତିର ବିବରଣୀମାନ ପ୍ରଦାନ କରିଯାଇଛନ୍ତି, ସେଥିରେ ଆ କା ମା ଭୈର କଥା ଉଲ୍ଲେଖ ହୋଇଛି । ଆ କା ମା ବୈର ଅର୍ଥ ହେଉଛି- ଆଷାଢ଼ଠାରୁ କାର୍ତ୍ତିକ ପର୍ଯ୍ୟନ୍ତ ଯେଉଁ ବର୍ଷା ଓ ସାମୁଦ୍ରିକ ଝଡ଼ ସବୁ ଆସିଥାଏ, ତାହାକୁ ଆମେ ଭ୍ରୂକ୍ଷେପ କରୁନା । ଏତଦ୍‌ବ୍ୟତୀତ ଏହି ଆ କା ମା ଭୈ ଭିତରେ ଭିଏତନାମ, ଇଣ୍ଡୋନେସିଆ, ମାଳୟ, କାମ୍ବୋଡ଼ିଆର ନାମ ପ୍ରଚ୍ଛନ୍ନ ଭାବେ ଲୁଚି ରହିଛି । ଆ- ଆନାମ ବା ଭିଏତନାମ, କା-କାମ୍ବୋଡ଼ିଆ, ମା-ମାଳୟ ଓ ବୈ- ବୈବସ୍ୱାନ ଅର୍ଥାତ୍ ବୋର୍ଣ୍ଣିଓ ଓ ବାଲିଦ୍ୱୀପ । ସୁତରାଂ ଏହି ସ୍ମୃତିର ଭିତ୍ତିଭୂମି ଉପରେ ଦଣ୍ଡାୟମାନ ହୋଇ ଏବେ ବି ଓଡ଼ିଆ ଝିଅ ବୋହୂମାନେ ଡଙ୍ଗା ଭସା ଉତ୍ସବ କାର୍ତ୍ତିକ ପୂର୍ଣ୍ଣିମାର ଶୁଭ୍ର ସକାଳରେ ପାଳନ କରିଥାନ୍ତି । କଟକର ଗଡ଼ଗଡ଼ିଆ ଘାଟଠାରେ ପାଳିତ ହୁଏ ଐତିହାସିକ ବାଲିଯାତ୍ରା । ଏତଦ୍‌ବ୍ୟତୀତ ଗୋପାଳପୁର, ପାରାଦ୍ୱୀପ, ଚାନ୍ଦବାଲି ଓ ବାଲେଶ୍ୱରର ସୁନହଟଠାରେ ଡଙ୍ଗା ଭସା ଉତ୍ସବ ମଧ୍ୟ ବହୁବର୍ଷ ଧରି ପାଳିତ ହୋଇ ଆସୁଅଛି ।

ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗରେ ଗଚ୍ଛିତ ତାଳପତ୍ର ପୋଥି କାର୍ତ୍ତିକ ବ୍ରତ ପଞ୍ଚକ-OL-୬୯୫, କାର୍ତ୍ତିକ ମାହାତ୍ମ୍ୟ OL-୧୬୧୬, ପଞ୍ଚକ ବ୍ରତ ORP-୧୦୭୨, କୃଷ୍ଣ ପଞ୍ଚକ-୬୯୬, ବିଷ୍ଣୁ ପଞ୍ଚକ ବ୍ରତ OL-୧୪୫୭, ମାହା ରାହାସ OL-୪୦୮, ବନମାଳି ରାହାସ OL-୪୩୮, ରାସକ୍ରୀଡ଼ା OL-୪୫୨, କାର୍ତ୍ତିକ ମାହାତ୍ମ୍ୟ ORP-୧୦୭୫, ପଦ୍ମପୁରାଣ ଉପରେ ଆଧାରିତ ପଞ୍ଚକ ବ୍ରତ OL-୧୨୭୫ ପ୍ରଭୃତି ପୋଥିଗୁଡ଼ିକୁ ଉପଜୀବ୍ୟ କରି କାର୍ତ୍ତିକ ମାସର ଅନେକ ପରମ୍ପରା ସଂପର୍କରେ ତଥ୍ୟ ପ୍ରଦାନ କରିହୁଏ । ସର୍ବୋପରି ସଂଗ୍ରହାଳୟର ପୋଥି ବିଭାଗରେ ପ୍ରଦର୍ଶିତ ଓଡ଼ିଶାର ତାଳପତ୍ର ପୋଥିରେ ଖୁବ୍ ନିଖୁଣ ଭାବେ ବିମଣ୍ଡିତ ହୋଇଥିବା ନୌ-ବାଣିଜ୍ୟ ଚିତ୍ର ସହ ସାଧବ ବୋହୂମାନଙ୍କ ବୋଇତ ବନ୍ଦାଣର ଚିତ୍ରିତ ତାଳପତ୍ର ପୋଥି ଓଡ଼ିଶାର ନୌ-ବାଣିଜ୍ୟ ପରମ୍ପରାକୁ ଅଧିକ ରୁଦ୍ଧିମନ୍ତ କରେ । କାର୍ତ୍ତିକ ଅମାବାସ୍ୟାର ପୟାଶ୍ରାଦ୍ଧ ଦିନ ଘିଅ ବଳିତା ବା କାଉଁରିଆ କାଠି ଜାଳି ପିତୃଲୋକର ଶ୍ରଦ୍ଧାପୂତ ଆବାହନ କରି ବୋଲା ଯାଇଥାଏ ।

ଆହେ ବଡ଼ ବଡୁଆ
ଅନ୍ଧାରେ ଆସ, ଆଲୁଏ ଯାଅ
ବାଇଶି ପାହାଚରେ ମହାପ୍ରସାଦ ପାଅ ।

କାର୍ତ୍ତିକ ଯେ ପୁଣ୍ୟ ବ୍ରତର ମାସ- ଏଥିରେ ସନ୍ଦେହ ନାହିଁ । ପୁଣି ଆକାଶଦୀପ, ଧର୍ମ ବିଶ୍ୱାସର ଉଜ୍ଜ୍ୱଳ ପ୍ରତୀକ । ପଲ୍ଲୀ ଜୀବନକୁ ଭକ୍ତି ଭାବନାରେ ଆଲୋକିତ କରି ମାସ ସାରା ତୁଳସୀ ଚଉରା ମୂଳେ ଆକାଶଦୀପ ଜଳି ଉଠେ । ଓଷା ବ୍ରତ ହେଉଛି ଓଡ଼ିଆ ସାମାଜିକ ଓ ସାଂସ୍କୃତିକ ପରମ୍ପରାର ଏକ ଅଭିନ୍ନ ଅଙ୍ଗ । ନାରାୟଣଙ୍କ ଉଦ୍ଦେଶ୍ୟରେ ପଞ୍ଚୁକ ବ୍ରତରେ ଆରମ୍ଭ ହୁଏ କାର୍ତ୍ତିକ ଶୁକ୍ଳ ଦଶମୀଠାରୁ ଏବଂ ପରିସମାପ୍ତି ହୁଏ ପୂର୍ଣ୍ଣିମା ଦିନ । ବ୍ରତୀମାନେ ଏହି ତିଥିଠାରୁ ପାଞ୍ଚଦିନ ପ୍ରାତଃ ସ୍ନାନ କରି ହବିଷ୍ୟ ଭୋଜନ କରିଥାନ୍ତି, ପଞ୍ଚରଙ୍ଗୀ ମୁରୁଜରେ କିପରି ମଣ୍ଡି ହୋଇଯାଏ ତୁଳସୀ ଚଉରା ମୂଳ । ତୁଳସୀ ସହ ଜଡ଼ିତ ସତୀ ବୃନ୍ଦାବତୀଙ୍କର ସଜଳ ସ୍ମୃତି । ଆତ୍ମୋତ୍ସର୍ଗର ଅକ୍ଷୟ କୀର୍ତ୍ତି । ବିଷ୍ଣୁବରରେ ତୁଳସୀ ମହନୀୟା । କାର୍ତ୍ତିକରେ ତୁଳସୀ ପୂଜା ଉତ୍କଳୀୟ ସଂସ୍କୃତିର ଏକ ମହାନ ପରମ୍ପରା ।

କାର୍ତ୍ତିକ ମାସର ବିଶେଷ ଆକର୍ଷଣ ହେଲା ଚକୁଳିଆ ପଣ୍ଡାଙ୍କ ଗାଁ ଭ୍ରମଣ । ମୁଣ୍ଡରେ ତାଳପତ୍ର ଛତା । ହାତରେ କୌଣସି ବାସନ ଭିକ୍ଷା ନେବା ଉଦ୍ଦେଶ୍ୟରେ ଧରାଯାଇଥାଏ । ପରିସ୍ଥିତି ତଥା ପରିବେଶକୁ ଲକ୍ଷ୍ୟ କରି ଏମାନେ ଗୀତ ବୋଲିଥାନ୍ତି । ପ୍ରାଚୀନ ପୌରାଣିକ ଘଟଣାର ସୂଚନା ଏହି ଗୀତମାନଙ୍କରେ ଥିବାରୁ ଶ୍ରୋତାର ଜ୍ଞାନର ବିକାଶ ମଧ୍ୟ କେତେକ ପରିମାଣରେ ହୋଇଥାଏ ।

ଦେଲେ ନେବେ, ଡାକିଲେ ଚାହିଁବେ
ନୋହିଲେ କାହାକୁ କିଛି ନକରି ଫେରିଯିବେ
ଆହେ ଆପଣେ, ଆହେ ଆପଣେ ।
ଧର୍ମରୁ ରାମଚନ୍ଦ୍ର ଲଙ୍କା କଲେ ଜୟେ
ଅଧର୍ମରୁ ରାବଣର ବଂଶ କ୍ଷୟେ । ଆହେ ଆପଣେ ।
ଦେଇଥିଲେ ପାଇ, ବୁଣିଥିଲେ ଜାଇ

ପଡ଼ିଆ ଭୂମିରେ ଗୋଧନ ଚରାଇ ହେ ।
ଦାତା ଧନ, ଦେବତା ବ୍ରାହ୍ମଣ
ଅଦାତା ଧନ, କର୍ଣ୍ଣଦାତା ମୋକ୍ଷଦାତା ଜନାର୍ଦ୍ଦନ
ଆହେ ଆପଣେ, କାହାରି ଭାଗ୍ୟରେ ଥିବ
ଆଜି ବ୍ରାହ୍ମଣକୁ ଦାନ ଦେବ ହେ
ଦାତାଘର ଝିଅ ପୁଅ ଦାଣ୍ଡେ ଯାଚି ଦେବ,
ହେଳା ନକରିବ ଇତ୍ୟାଦି ।

ତତ୍କାଳୀନ ଓଡ଼ିଆ ଜାତିର ପ୍ରାଣ ଥିଲା ବାଣିଜ୍ୟ ବୋଇତ । ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଦ୍ୱୀପଠାରୁ ଆରମ୍ଭ କରି ସୁଦୂର ରୋମ ପର୍ଯ୍ୟନ୍ତ ବ୍ୟାପିଥିଲା ସାଧବ ପୁଅର ନୌ-ବାଣିଜ୍ୟ ସାମ୍ରାଜ୍ୟ । ଅଶୋକ ଓ ଖାରବେଳଙ୍କ ସମୟରେ ମଧ୍ୟ ପାରସ୍ୟ ଉପକୂଳରେ କଳିଙ୍ଗର ବାଣିଜ୍ୟ ବ୍ୟବସାୟ ଥିଲା ଅବ୍ୟାହତ । ତାର ନମୁନା ହେଉଛି ପ୍ରାଚୀନ ପ୍ରସ୍ତର ନିର୍ମିତ ନୌବାଣିଜ୍ୟ ଚିତ୍ର ଯାହାକି ରାଜ୍ୟ ସଂଗ୍ରହାଳୟର ପତ୍ନତତ୍ତ୍ୱ ବିଭାଗରେ ଦେଖିବାକୁ ମିଳେ । କେବଳ ଜାଭା, ସୁମାତ୍ରା, ବାଲିରେ ନୁହେଁ, ଓଡ଼ିଆ ସାଧବ ପୁଅ ସିମିଳି ଦ୍ୱୀପ ଓ ଲଙ୍କା ଦ୍ୱୀପକୁ ମଧ୍ୟ ବାଣିଜ୍ୟ ଉଦ୍ଦେଶ୍ୟରେ ଯାଉଥିଲା ବୋଲି ତାଳପତ୍ର ପୋଥି ଓ ଖ୍ୟାଡ଼ିଆ ଗୀତରେ ଦୃଷ୍ଟିଗୋଚର ହୁଏ-

ସାଧବ ପୂଜଇ କାଳୀ ଖମ୍ଭେଶ୍ୱରୀ
ସିମିଳି ଦ୍ୱୀପୁଁ ବୋଇତ ହୋ ଆସିବଣି ଫେରି ।
ଲଙ୍କା ଦ୍ୱୀପେ ଅଝାଲ ଛିଣ୍ଡି ଯେ ବାଉଳା ବତାସ
ଅମାପ ଦରିଆରେ ମୋ ସାଧବ ଅଣଶ୍ୱାସ ହୋ... ।

ପ୍ରାୟ ଖ୍ରୀଷ୍ଟାବ୍ଦ ୧୦୦୦ ବେଳକୁ କଳିଙ୍ଗର ଅଧିକାଂଶ ବନ୍ଦର ଅଚଳ ହୋଇପଡ଼ିଥିଲା ଓ ଦକ୍ଷିଣ ଭାରତର ଚୋଳ ରାଜାମାନଙ୍କ ଅଭ୍ୟୁଦ୍‌ଥାନ ଫଳରେ କ୍ରମେ କ୍ରମେ ପୂର୍ବ ଉପକୂଳର ବହିଃ ବାଣିଜ୍ୟ ଅନେକାଂଶରେ ତାମିଲ ବଣିକ ଓ ନାବିକମାନଙ୍କ ହାତକୁ ଚାଲି ଯାଇଥିଲା । କିନ୍ତୁ ଚୀନ ଓ ଦକ୍ଷିଣ-ପୂର୍ବ ଏସିଆ ସହିତ କଳିଙ୍ଗର ବାଣିଜ୍ୟ କେତେକାଂଶରେ ଚାଲୁ ରହିଥିଲା । କଳିଙ୍ଗର ବଣିକମାନେ ଏଥିପାଇଁ ମୁସଲିପଟ୍ଟମ୍ କିମ୍ବା କାକତୀୟ ନରପତିଙ୍କ ଅଧୀନରେ ଥିବା ଯୋଗୁଁ ମୋଟୁପଲ୍ଲୀ ବନ୍ଦରକୁ ବ୍ୟବହାର କରୁଥିଲେ । ଚୀନ ଦେଶର ଫୁକିନ୍ ପ୍ରଦେଶ (Fukien Province)ର ଚାଓ (Chan-Chou) ଅଞ୍ଚଳରେ ଅବସ୍ଥାପିତ ତତ୍କାଳୀନ ବୈଦେଶିକ ବାଣିଜ୍ୟର ଅଧକ୍ଷ ଚାଉଜୁ କୁଆଙ୍କ ଦ୍ୱାରା ଖ୍ରୀଷ୍ଟାବ୍ଦ ୧୨୨୫ରେ ରଚିତ ଚ-ଫୋନ୍‌ଚି ନାମକ ଗ୍ରନ୍ଥରେ ସେହି ସମୟର ବଣିକ ଓ ସେମାନଙ୍କର ଜାହାଜ ତଥା ନାବିକମାନଙ୍କର ପରିଚାଳନା ପଦ୍ଧତି ସଂପର୍କରେ କେତେକ ଉଲ୍ଲେଖ ଅଛି । ଏତଦ୍‌ବ୍ୟତୀତ ଶ୍ରୀ ରେଙ୍ଗଲଗଡ଼ କହ୍ନାଇବର ଚମ୍ପତିରାୟ ଚୂଡ଼ାମଣିଙ୍କ ରଚିତ ପାଇକ ଖେଦା ପୋଥି ନୌ-ବାଣିଜ୍ୟ ଚିତ୍ର ସଂପର୍କରେ ସ୍ୱତଃ ଧ୍ୟାନ ଆକର୍ଷଣ କରେ । ଏହି ପୋଥି ପଦ୍ୟରେ ରଚିତ ଓ ସ୍ୱର୍ଗତ ପଣ୍ଡିତ ସଦାଶିବ ରଥଶର୍ମାଙ୍କ ସଂପାଦନାରେ ୧୯୫୩ ମସିହାରେ ଜଗନ୍ନାଥ ଗବେଷଣା ସମିତି ଦ୍ୱାରା ପ୍ରକାଶିତ । ଏହି ପୋଥିରେ କବି ଓଡ଼ିଶାର ନଅ ପ୍ରକାର ପୋତର ବର୍ଣ୍ଣନା ଦେଇଛନ୍ତି-

ବହିତର, ପାଣ୍ଡିଆ, ଚୋଟମୁଖୀ
ବଣିଜରେ ଏହା ସାର ପରଖି
ସମରେ ନ ହୋଇ
ସମରେ ଅଟେ ସୁର ଚାତୁରୀ ।
ପୁଣ କୁଶ ରାଜପୁର, ଲାଞ୍ଜୁଆ
ଖାଇ ଜଙ୍ଗା, ଗଙ୍ଗା ପ୍ରସାଦ ଠିଆ ।
ନଦିଆ ଖୁଡୁପ ଗୁରୁ ଏ ମାନ
ଶୁଣ କହିବା ଗୁଣ ସାବଧାନ ।
ଲାଞ୍ଜୁଆ ଯେ ଚାରୁ
ଦୂରୁ ଦିଶଇ ଯେହ୍ନେ ମହାମେରୁ ।...

ସମୁଦାୟ ୯ ପ୍ରକାର ପୋତରୁ କବି ପ୍ରଥମ ୩ଟିକୁ ବାଣିଜ୍ୟ ପାଇଁ ଉପଯୁକ୍ତ କହିଛନ୍ତି ।

ଅଷ୍ଟାଦଶ ଶତାବ୍ଦୀରେ ରଚିତ କବି କର୍ଣ୍ଣଙ୍କ- ଅଭିନ୍ନ ମଦନ ପାଲାରେ ମରହଟ୍ଟାମାନଙ୍କ ସହିତ ଉତ୍କଳର ବାଣିଜ୍ୟ କାରବାରର ଉଲ୍ଲେଖ ଦେଖିବାକୁ ମିଳେ । କବି ଦୀନକୃଷ୍ଣ ଦାସଙ୍କ 'ପ୍ରସ୍ତାବ ସିନ୍ଧୁ', କବି ବଂଶୀ ଦାସଙ୍କ ମନସା ମଙ୍ଗଳ ଇତ୍ୟାଦି କାବ୍ୟରେ ମଧ୍ୟ ଉତ୍କଳର ତତ୍କାଳୀନ ଜାହାଜ ନିର୍ମାଣର ଶୈଳୀ ସଂପର୍କରେ ସୂଚନା ଦିଆଯାଇଛି । ଏହି ସମୟରେ ରଚିତ ସଂସ୍କୃତ କାବ୍ୟ ଗଙ୍ଗବଂଶାନୁଚରିତମ୍‌ରେ ଚିଲିକା ମଧ୍ୟ ଦେଇ ଆସୁଥିବା ବୋଇତ ଯାତ୍ରାର ଉଲ୍ଲେଖ ରହିଛି । ବଳରାମ ଦାସ, ଜଗମୋହନ ରାମାୟଣରେ ନୌକାର ବିଭିନ୍ନ ନାମ ଓ ଯୁଦ୍ଧ ନୌକାର ଉଲ୍ଲେଖ କରିଛନ୍ତି । ସଂସ୍କୃତ ଭାଷାରେ ରଚିତ ବ୍ରହ୍ମାଣ୍ଡ ପୁରାଣ ନାମକ ଏକ ତାଳପତ୍ର ପୋଥିରେ ବୋଇତର ଆକାର ପ୍ରକାର, ଗମନ କୁଶଳତା ବିଷୟରେ ବିଶଦ ବିବରଣୀ ଦିଆଯାଇଛି । ଏହି ପୋଥିରେ ମଧ୍ୟ ଚିଲିକା ହ୍ରଦରେ ବୋଇତ

ଚାଳକ, ଜାଭା, ମାଳୟ ସିଂହଳ ଦେଶ ପ୍ରଭୃତି ଦେଶ ସହ କଳିଙ୍ଗର ନୌ-ବାଣିଜ୍ୟ ସଂପର୍କରେ ଲିପିବଦ୍ଧ ହୋଇଛି । ତାହାର ଗୋଟିଏ ପଂକ୍ତି ନିମ୍ନରେ ପ୍ରଦତ୍ତ ହେଲା-

ଚିଲିକା ହ୍ରଦ ସହସ୍ରଂତୁ ଜଳଗାମୀ ସୁବୋଇତଃ
ବହୁ ଚକ୍ରାନ୍ୱିତାଃ ଶୀଘ୍ରାଃ ଯନ୍ତ୍ରଗାଃ ଚାଳିକାଶ୍ରିତାଃ
ବାଣିଜ୍ୟ କରଣେ ଶକ୍ତାଃ ତ୍ରପ୍ୟଞ୍ଚ ଶିଖର କୃତାଃ
ଦ୍ୱୀପାନ୍ତର ଗତାୟାତାଃ ଜାଭା ମାଳୟ ସିଂହଳେ ।
ଗଙ୍ଗା ସାଗର ପେଚିନା ତଦାଗତି ଯେଦେଚ୍ଛୟା
ଦେଶ ଦେଶାନ୍ତ ଦ୍ରବ୍ୟାଣି ଗମନା ଗମନେ ପି ବା ।

ଅତୀତରେ ଉତ୍କଳ ଏକ ବନ୍ଦର ରାଜ୍ୟ ଥିଲା । ଗ୍ରୀକ୍ ଐତିହାସିକମାନଙ୍କ ମତରେ ପ୍ରଥମ ଦ୍ୱିତୀୟ ଶତାବ୍ଦୀରେ ଭାରତର ନଅଗୋଟି ବନ୍ଦର ମଧ୍ୟରୁ କେବଳ କଳିଙ୍ଗ ଉପକୂଳରେ ପାଞ୍ଚଗୋଟି ବନ୍ଦର ବିଶେଷ ଉଲ୍ଲେଖଯୋଗ୍ୟ । ଏହି ବନ୍ଦରମାନଙ୍କରୁ ସୁଦୂର ଜାଭା, ବୋର୍ଣ୍ଣିଓ, ବାଲି, ମାଳୟ, ସିଂହାପୁର, ଶ୍ୟାମ, କାମ୍ବୋଡ଼ିଆ ପ୍ରଭୃତି ଦେଶ ସହିତ ବାଣିଜ୍ୟ ଚାଲୁଥିଲା । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ଟୋଲେମୀଙ୍କ ଭୂଗୋଳରେ ଓଡ଼ିଶା ଉପକୂଳରେ ଯେଉଁ ବନ୍ଦରମାନଙ୍କ ନାମକରଣ କରାଯାଇଛି, ସେଗୁଡ଼ିକ ହେଲେ- ନନିଗେନ (ପୁରୀ), କଟିମର୍ଦ୍ଦମ (କଟକ), କୋଣଗର (କୋଣାର୍କ), କୋଶମ୍ବ (ବାଲେଶ୍ୱର) ଓ କଳିଙ୍ଗ ନଗର । ଐତିହାସିକମାନେ କଳିଙ୍ଗର ବିଭିନ୍ନ ବନ୍ଦର ବିଷୟରେ ଆଲୋଚନା କରିଛନ୍ତି । ସେଗୁଡ଼ିକ ମଧ୍ୟରୁ କୋଣଗର, କଟିମର୍ଦ୍ଦମ, ପାଲୁର, ଅପେନ୍ତେରିୟାନ, ବାଲେଶ୍ୱର, ତାମ୍ରଲିପି, ସୁବର୍ଣ୍ଣରେଖା, ନରେଗା, ମଦନ, ସାରଗୋ, ଛଳୟୁ, କୋଇଚନପୁର, ଚୂଡ଼ାମଣି, ଧାମରା ପ୍ରଭୃତି ଉଲ୍ଲେଖଯୋଗ୍ୟ । ହକିଟୋଲା, ବତୀଘର, ଚାନ୍ଦବାଲି, ପୁରୀ, ଡଲିକା ପ୍ରଭୃତି ବନ୍ଦରର ବର୍ଣ୍ଣନା ରହିଛି ।

ପ୍ରଥମ ଶତାବ୍ଦୀରେ ଲିଖିତ ପ୍ଲିନି (Plinny)ଙ୍କ 'Natural History' ପୁସ୍ତକରେ ଥିବା ଚେ-ଲି-ତାଲୋ ଆଜିର ଚାନ୍ଦବାଲି ବୋଲି ଅନୁମେୟ । ଏତିହାସିକ ହଣ୍ଟର ସାହେବଙ୍କ ଓଡ଼ିଶା (୧୮୭୨) ପୁସ୍ତକରୁ ତତ୍କାଳୀନ ଓଡ଼ିଶାର ସୁବର୍ଣ୍ଣରେଖା, ଛନୁଆ, ବାଲେଶ୍ୱର, ଲଇଛନପୁର, ଚୂଡ଼ାମଣି, ଧାମରା, ଫଲସ୍‌ପଏଣ୍ଟ, ପୁରୀ, ଗୋପାଳପୁର ପ୍ରଭୃତି ନଅଗୋଟି ବନ୍ଦର ବର୍ଣ୍ଣନା ମିଳେ । ଏସ୍‌ଏଲ୍ ମେଡ଼େକ୍ସ ତାଙ୍କ ଓଡ଼ିଶା ପ୍ରଦେଶ ଅନୁଧ୍ୟାନ ଏବଂ ବନ୍ଦୋବସ୍ତ (୧୮୯୦-୧୯୦୦) ବିବରଣୀରେ ଚାନ୍ଦବାଲି ବନ୍ଦରର ଅବସ୍ଥିତି ଓ ପ୍ରାଧାନ୍ୟ ସଂପର୍କରେ ବିଶଦ୍ ଆଲୋଚନା କରିଯାଇଛନ୍ତି । କମିଶନର ରେଭେନ୍‌ସାଙ୍କ ବିବରଣୀରୁ ଜଣାଯାଏ ଯେ, ବାଣିଜ୍ୟ କାରବାରରେ ଚାନ୍ଦବାଲି ବିଶେଷ ପ୍ରସିଦ୍ଧି ଲାଭ କରିଥିଲା । ଏହା ଏକ ପ୍ରାକୃତିକ ନଦୀ ବନ୍ଦର ରୂପେ ଖ୍ୟାତି ଅର୍ଜନ କରିଥିଲା ।

ସ୍ୱାଧୀନୋତ୍ତର ଭାରତବର୍ଷରେ କଳିଙ୍ଗର ନବ ରୂପାନ୍ତର ଓଡ଼ିଶାରେ ପୂର୍ବଭଳି ଅଧିକ ବନ୍ଦର ନାହିଁ । ସଂପ୍ରତି ଓଡ଼ିଶା ଉପକୂଳରେ ବନ୍ଦର କହିଲେ ପ୍ରଥମେ ପାରାଦ୍ୱୀପ ଓ ଦ୍ୱିତୀୟରେ ଗୋପାଳପୁରକୁ ଗ୍ରହଣ କରାଯାଇଛି । ଗୌରବର ବିଷୟ, ଧାମରା-ଚାନ୍ଦବାଲି ବନ୍ଦର ନିର୍ମାଣ ପାଇଁ ୧୯୭୭ ମସିହା ଏପ୍ରିଲ ୨ ତାରିଖରେ ଓଡ଼ିଶା ସରକାର ଓ ସିଂହାପୁରସ୍ଥିତ ଆନ୍ତର୍ଜାତିକ ସି ପୋର୍ଟ ସଂସ୍ଥା ମଧ୍ୟରେ ଏକ ବୁଝାମଣା ସ୍ୱାକ୍ଷରିତ ହୋଇଥିଲା । ସେହି ଅନୁଯାୟୀ ୧୯୯୮ ମସିହା ଏପ୍ରିଲ ୨ ତାରିଖ ବନ୍ଦର ନିର୍ମାଣ ପାଇଁ ଅନୁମୋଦନ ପତ୍ର ସ୍ୱାକ୍ଷରିତ ହୋଇଥିଲା । ସିଂହାପୁରସ୍ଥିତ ଏହି ବହୁ ରାଷ୍ଟ୍ରୀୟ ଆନ୍ତର୍ଜାତିକ କମ୍ପାନୀ ପ୍ରଥମ ପର୍ଯ୍ୟାୟରେ ୧୨୦୦ କୋଟି ଟଙ୍କା ଓ ଦ୍ୱିତୀୟ ପର୍ଯ୍ୟାୟରେ ୧୫୦୦ କୋଟି ଟଙ୍କା ବ୍ୟୟ କରିବାର ଯୋଜନା ପ୍ରସ୍ତୁତ କରି ସାରିଥିଲା । କିନ୍ତୁ କୌଣସି କାରଣବଶତଃ ସିଂହାପୁରସ୍ଥିତ ଆନ୍ତର୍ଜାତିକ ସି ପୋର୍ଟ କମ୍ପାନୀ ଚୁକ୍ତିରୁ ଓହରିଯିବା ପରେ ଲାର୍ସନ ଆଣ୍ଡ ଟର୍ବୋ ଓ ଟାଟା କମ୍ପାନୀ ଏହାର ସ୍ୱୟଂ ସଂପୂର୍ଣ୍ଣ କରିବା ପାଇଁ ପୁଣିଥରେ ଚୁକ୍ତି ସ୍ୱାକ୍ଷରିତ କରିଛନ୍ତି । ୨୦୨୦ ସୁଦ୍ଧା ଧାମରା ବନ୍ଦର ବିଶ୍ୱ ନୌ-ବାଣିଜ୍ୟ କ୍ଷେତ୍ରରେ କେବଳ ଉଲ୍ଲେଖନୀୟ ବନ୍ଦର ନୁହେଁ ବରଂ ଭବିଷ୍ୟତରେ ଏସିଆ ମହାଦେଶର ବୃହତମ ବନ୍ଦର ହେବାର ସୌଭାଗ୍ୟ ଲାଭ କରିବ ବୋଲି ଆଶାପୋଷଣ କରାଯାଇଛି ।

ଗ୍ରୀକ୍ ପରିବ୍ରାଜକ ମେଘାସ୍ଥିନିସ୍ କହିଛନ୍ତି ଯେ, ଚୀନ ଦେଶ ସହିତ ବହୁ ପ୍ରାଚୀନ କାଳରୁ ବାଣିଜ୍ୟ ବ୍ୟବସାୟ ଚାଲି ଆସିଥିଲା । ଚୀନ ଲୋକମାନେ ବାଣିଜ୍ୟ କରୁଥିବା ଲୋକମାନଙ୍କୁ କୁନ୍ ଲୁନ୍ ବୋଲି କହୁଥିଲେ । ଏହା କଳିଙ୍ଗ ଶବ୍ଦର ନାମାନ୍ତର ମାତ୍ର । ଡକ୍ଟର ହିମାଂଶୁ ଭୂଷଣ ସରକାର ତାଙ୍କ ରଚିତ (cultural Relations between India and South East Asian countries-1905) ପୁସ୍ତକରେ ଏହି କୁନ୍ ଲୁନ୍‌ମାନେ କଳିଙ୍ଗର ଅଧିବାସୀ ବୋଲି ସଫଳତାର ସହିତ ପ୍ରମାଣ କରିଛନ୍ତି ।

ଖ୍ରୀଷ୍ଟପୂର୍ବ ୩ୟ ଶତାବ୍ଦୀରେ ତାମ୍ରଲିପି ବନ୍ଦରଠାରୁ ରାଜକୁମାର ମହେନ୍ଦ୍ର ଓ ରାଜକୁମାରୀ ସଂଘମିତ୍ରା ବୋଧି ଶାଖା ସହିତ ସିଂହଳକୁ ଯାଇଥିଲେ । ପୁନଶ୍ଚ ଏହି ବନ୍ଦରଠାରୁ ଖ୍ରୀଷ୍ଟୀୟ

୩ୟ ଶତାବ୍ଦୀରେ କଳିଙ୍ଗରାଜ ଗୁହଶିବଙ୍କ ଦୁହିତା ହେମମାଳା ଓ ଜାମାତା ଦନ୍ତକୁମାର କଳିଙ୍ଗରେ ପୂଜିତ ବୁଦ୍ଧଦେବଙ୍କ ଦନ୍ତକୁ ନେଇ ସିଂହଳରେ ପହଞ୍ଚାଇଥିଲେ ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀରେ ଚୀନ ପରିବ୍ରାଜକ ଫାହିୟାନ କଳିଙ୍ଗର ତାମ୍ରଲିପି ବନ୍ଦରରୁ ସିଂହଳକୁ ଯାଇ ସେଠାରେ କଳିଙ୍ଗ ଜାହାଜରେ ଜାଭା ବାଟଦେଇ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ । ଟାଙ୍ଗ ରାଜତ୍ୱ କାଳରେ ଚମନ ଦେଶରୁ ଲୋକେ ଜାଭାକୁ ହୋଲିଙ୍ଗ ବୋଲି କହିଥିଲେ । ଏହା କଳିଙ୍ଗ ଶବ୍ଦର ଚୀନ ଉଚ୍ଚାରଣ । ହରପ୍ରସାଦ ଶାସ୍ତ୍ରୀଙ୍କ ମତାନୁସାରେ ସପ୍ତମ/ଅଷ୍ଟମ ଶତାବ୍ଦୀରେ ଜାଭାରେ ଶାସନ କରୁଥିବା ଶୈଳେନ୍ଦ୍ର ରାଜବଂଶ କଳିଙ୍ଗ ବା ଦକ୍ଷିଣ ଭାରତରୁ ଯାଇଥିଲେ । ଐତିହାସିକ ରମେଶ ଚନ୍ଦ୍ର ମଜୁମଦାରଙ୍କ ମତରେ ମୂଳତଃ ଶୈଳେନ୍ଦ୍ର ବଂଶୀୟ ରାଜାମାନେ କଳିଙ୍ଗର ଶୈଳୋଭବ ବଂଶୀୟ ରାଜା ଐତିହାସିକ ଅଭିଲେଖ ଓ ତଥ୍ୟଗୁଡ଼ିକରେ କଳିଙ୍ଗ ସହ ସାମଞ୍ଜସ୍ୟ ଥିବା ଦକ୍ଷିଣ-ପୂର୍ବ ଏସିଆର ଅନେକ ସ୍ଥାନରେ ନାମ, ନଦୀ, ପର୍ବତ, ବ୍ୟକ୍ତି ବିଶେଷ ନାମ, ଉପାଧି ବିଷୟରେ ବର୍ଣ୍ଣନା ଥିବା ଜଣାପଡ଼େ । ଇଣ୍ଡୋନେସିଆ ଓ ବୋର୍ଣ୍ଣିଓ ଦ୍ୱୀପରୁ ମିଳିଥିବା ୮ମ ଓ ୯ମ ଶତାବ୍ଦୀର ଦୁଇଟି ଶିଳାଲେଖର ଅକ୍ଷର ଅନୁଧ୍ୟାନ କଲେ ଜଣାଯାଏ ତହିଁରେ ବ୍ୟବହୃତ ହୋଇଥିବା ଲିପି ସହିତ ତତ୍କାଳୀନ କଳିଙ୍ଗ ଲିପିର ଯଥେଷ୍ଟ ସାମଞ୍ଜସ୍ୟ ଅଛି । କୋଣାର୍କ ମନ୍ଦିରରେ ଖୋଦିତ ଜିରାଫ୍ ଚିତ୍ରରୁ ଅନୁମାନ କରାଯାଏ ଯେ, ସମ୍ଭବତଃ ଗଙ୍ଗ ରାଜତ୍ୱ କାଳରେ ଆଫ୍ରିକା ସହିତ ଉତ୍କଳର ନୌବାଣିଜ୍ୟ ସଂପର୍କ ଥିଲା । ପୁରୀ ଜଗନ୍ନାଥ ମନ୍ଦିରରେ ଖୋଦିତ ଜାହାଜ ଚିତ୍ର ଉତ୍କଳୀୟ ନୌ-ବାଣିଜ୍ୟ ପରମ୍ପରାର ପ୍ରମାଣ ବହନ କରେ ।

ଡକ୍ଟର ହରେକୃଷ୍ଣ ମହତାବ ତାଙ୍କ ଓଡ଼ିଶା ଇତିହାସରେ ପ୍ରାଚୀନ କାଳର ଓଡ଼ିଶାରେ ଅନେକଗୁଡ଼ିଏ ବଡ଼ ବଡ଼ ବନ୍ଦର ଥିବାର ଉଲ୍ଲେଖ କରିଛନ୍ତି । ସେହି ବନ୍ଦରମାନଙ୍କ ମଧ୍ୟରେ ଦନ୍ତପୁର ବନ୍ଦର ସବୁଠାରୁ ପୁରାତନ । ଦନ୍ତପୁର ଋଷିକୁଲ୍ୟା ମୁହାଣରେ ଅବସ୍ଥିତ । ଦନ୍ତପୁର ଆଜିକାଲିର ଏରଣ୍ଡପଲ୍ଲୀ ନିକଟସ୍ଥ ଦଣ୍ଡଗୁଳ ।

ଉତ୍କଳୀୟ ବାଣିଜ୍ୟ ବୋଇତ ସଂପର୍କରେ ଅନେକ କାହାଣୀ ଦୃଷ୍ଟିକୁ ଆସେ । ଲୋକପ୍ରିୟ ଖୁଦୁରୁକୁଣୀ ବ୍ରତ ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ସହ ସଂପୃକ୍ତ ଥିବାରୁ ଏହି ପର୍ବ ବିଶେଷତଃ ଉପକୂଳବର୍ତ୍ତୀ ଜିଲ୍ଲା କଟକ, ପୁରୀ, ବାଲେଶ୍ୱର, ଭଦ୍ରକ, କେନ୍ଦ୍ରାପଡ଼ା, ଜଗତସିଂହପୁର ପ୍ରଭୃତି ଅଞ୍ଚଳରେ ବହୁଳ ଭାବେ ଆଦୃତି ଲାଭ କରିଛି । ଏହି ଓଷାରେ ବୋଇତ ବନ୍ଦାଣ କଥା ଉଲ୍ଲେଖ କରାଯାଇଛି । ଏଥିରେ ନିମ୍ନୋକ୍ତ ଭାବେ ଦେବୀ ମଙ୍ଗଳାଙ୍କୁ ଆବାହନ କରାଯାଇଛି ।

ଜୟ ତୁ ଜୟ ଗୋ ମଙ୍ଗଳା
ହୃଦେ ବିକାଶ ହେଉମାଳା
ଜୟ ତୁ ମଙ୍ଗଳା ଉତ୍ତମ
ଆରତ ଭଞ୍ଜନ ତୋ ନାମ
ସଂକଟ ତାରିଣୀ ମଙ୍ଗଳା
ଉଦ୍ଧାରୁ ବୁଡ଼ିବାର ଭେଳା ।

ବୋଇତ ବନ୍ଦାପନା ଓ ବୈଦେଶିକ ବାଣିଜ୍ୟ ପରମ୍ପରାର ଅନେକ ଉଦାହରଣ ଦେଖିବାକୁ ମିଳେ । ଉତ୍କଳମଣି ଗୋପବନ୍ଧୁଙ୍କ ଭାଷାରେ-

କାହିଁଗଲା ସେହି ହଜିଲା ଅତୀତ ?
କାହିଁଗଲା ସେହି ନାବିକ ଉଦ୍ଦାମ ସଂଗୀତ ?
ଜଳପଥେ କାହିଁ ବିଦେଶ ଗମନ ?
କାହିଁ ପୂର୍ବ ଖ୍ୟାତି କାହିଁ ପୂର୍ବଧନ ?
କଥାରେ ରହିଛି ସବୁ ଆଜି ଯାଏ
ସାଧବାଣୀ ବୋହୂ ବୋଇତ ବନ୍ଦାଏ ।

ଏତଦ୍ ବ୍ୟତୀତ ଓଡ଼ିଶାର ପୁରପଲ୍ଲୀରେ ବହୁ ଲୋକଗୀତ ପ୍ରାଚୀନ ନୌ-ବାଣିଜ୍ୟ ପରମ୍ପରାର ଗୌରବାବହ ସ୍ମୃତି ବହନ କରେ । ଓଡ଼ିଆ ସାଧବଘର ବୋହୂ ଦିନେ ସ୍ୱପ୍ନାଭିଭୂତା ହୋଇ ଗାଉଥିଲା-

ଶ୍ୱଶୁର ହୋଇବେ ଗାଁ ରାଜନଲୋ
ଶାଶୁ ହୋଇବେ ରାଣୀ
ଛ ଦେଢ଼ଶୁର ଛ ସାଆନ୍ତଲୋ
ଛ ଯାଆ ସାଆନ୍ତାଣୀ
ମୋ ଗିରସ୍ତ ହେବେ କନକ ରାଜନ
ମୁଁ ହେବି ପାଟରାଣୀ
ପୁଅ ବେଇଥିବି ରାଜକୁମାର ଲୋ
ପୋଥି ଧରି ଗୀତ ଗାଇବ
ଦ୍ୱାରେ ଲଗାଇବି ସୁନା ଟଭା ଗଛ
ନନ୍ଦ ଧରି ଫୁଲ ତୋଳିବ ।

ଏହି ଆ, କା, ମା, ବୈ ଭିତରେ ଭିଏତନାମ୍, ଇଣ୍ଡୋନେସିଆ, ମାଳୟ ଓ କାମ୍ବୋଡ଼ିଆର ନାମ ପ୍ରଚ୍ଛନ୍ନ ଭାବେ ଲୁଚି ରହିଛି । ସୁତରାଂ ଏହି ସ୍ମୃତିର ଭିତ୍ତିଭୂମି ଉପରେ ଦଣ୍ଡାୟମାନ ହୋଇ ଏବେ ବି ଝିଅ ବୋହୂମାନେ ଡଙ୍ଗା ଭସା ଉତ୍ସବ କାର୍ତ୍ତିକ ପୂର୍ଣ୍ଣିମାରେ ଶୁଭ୍ର ସକାଳରେ ପାଳନ କରିଥାନ୍ତି

। କଟକର ଗଡ଼ଗଡ଼ିଆ ଘାଟଠାରେ ପାଳିତ ହୁଏ ଐତିହାସିକ ବାଲିଯାତ୍ରା । ପୁଣି ସେଇ ସ୍ମୃତିର ରୋମନ୍ଥନରେ ପାରାଦ୍ୱୀପ ବନ୍ଦରରେ କାଶତଣ୍ଡୀର ମେଳଣ ଭିତରେ ହସି ଉଠେ ବୋଇତ ବନ୍ଦାଣ ଉତ୍ସବ । ସାଧବ ପୁଅ ଓ ସାଧବ ବୋହୂ ଏବଂ ତଅପୋଇର ବେଶଭୂଷାରେ ସଜ୍ଜିତ ହୋଇ ଓଡ଼ିଆମାନେ ଭସାଇ ଦିଅନ୍ତି ପରମ୍ପରା ଓ ସଂସ୍କୃତି ବିମଣ୍ଡିତ ଐତିହ୍ୟ ସଂପନ୍ନ ସେଇ ବୈଭବ ଭରା ବୋଇତକୁ ପାରାଦ୍ୱୀପ ବନ୍ଦରର ନୀଳ ଜଳରାଶି ମଧ୍ୟକୁ । ଟୁବୀ ଗଡିଆଠାରୁ ଆରମ୍ଭ କରି ନଈ ସମୁଦ୍ର ଯାଏ ଭର୍ତ୍ତି ହୋଇଯାଏ କଦଳୀ ପାଟୁଙ୍ଗା ବା ସୋଲରେ ତିଆରି ମାଳ ମାଳ ଡଙ୍ଗା ।

କାଳର ପ୍ରବାହରେ ଏହି ସୁମହାନ ପରମ୍ପରା ଆଜି ବିଲୁପ୍ତ । କିନ୍ତୁ ଏଇଭଳି ଅନେକ ପୌରାଣିକ କାହାଣୀ, କିମ୍ବଦନ୍ତୀ ପରମ୍ପରା ତଥା ବଳିଷ୍ଠ ଇତିହାସର ପୃଷ୍ଠଭୂମି ଉପରେ ଠିଆ ହୋଇଛି ଓଡ଼ିଶାର ଐଶ୍ୱର୍ଯ୍ୟମୟ ଅତୀତ । ଏସବୁର ମିଳିତ ଆବେଗରେ ପାଳିତ ହୁଏ ସମଗ୍ର କାର୍ତ୍ତିକ ମାସଟି । କଅଁଳ କାର୍ତ୍ତିକ ପୂର୍ଣ୍ଣିମାର ଶୁଭ୍ର ସକାଳରେ କୁହୁଡ଼ିର କୁହୁକରେ ମାଟି ଓ ଆକାଶ ଯେତେବେଳେ ଏକାକାର ହୋଇ ଉଠୁଥାଏ, ସେତେବେଳେ କେଉଁଠୁ ଭାସି ଉଠୁଥାଏ, ଆ କା ମା ବୈର ଶଙ୍ଖ ଓ, କେଉଁଠୁ ପବିତ୍ର ରାସପୂର୍ଣ୍ଣମୀର ସୁମଧୁର ସ୍ୱର, ଆଉ ପୁଣି ଦୂର ଦେବାଳୟରୁ ଭାସି ଆସୁଥାଏ ଘଣ୍ଟ ଘଣ୍ଟାର ସୁମଧୁର ଧ୍ୱନି । ସୁତରାଂ ଏହି ମାସଟି ଇତିହାସ ଓ ପୌରାଣିକ ଦୃଷ୍ଟିକୋଣରୁ ତାତ୍ପର୍ଯ୍ୟପୂର୍ଣ୍ଣ । ଓଡ଼ିଆ ସାଧବ ପୁଅର ବାଲିଯାତ୍ରା ଓ ସେଠାରେ ଉପନିବେଶ ସ୍ଥାପନର ସ୍ମାରକୀ ଏହି ପର୍ବ । ଏତଦ୍‌ବ୍ୟତୀତ ଏ ଜାତିର ସଚେତନ ନାଗରିକମାନଙ୍କ ମନରେ ସ୍ୱାଭିମାନ ଓ ଦମ୍ଭ ସୃଷ୍ଟି କରିବା ନିମନ୍ତେ, ନୌ-ବାଣିଜ୍ୟ କ୍ଷେତ୍ରରେ ସମୁଜ୍ଜ୍ୱଳ ଭବିଷ୍ୟତର ଆଶା ସଂଚାର କରିବା ନିମନ୍ତେ ଏହି ପରମ୍ପରାର ଅନୁଶୀଳନ ବାଞ୍ଛନୀୟ ।

ଅବସରପ୍ରାପ୍ତ ଅଧ୍ୟାପକ
ଚାନ୍ଦବାଲି କଲେଜ, ଚାନ୍ଦବାଲି,
ଭଦ୍ରକ-୭୫୬୧୩୩

ସହାୟକ ଗ୍ରନ୍ଥସୂଚୀ

୧) ଦାସ, ସାରଳା । ମହାଭାରତ ଆଦିପର୍ବ, ପୃ-୧୩୧ ।

୨) ଭଞ୍ଜ, ଉପେନ୍ଦ୍ର । ଲାବଣ୍ୟବତୀ, ୨ୟ ଖଣ୍ଡ, ସପ୍ତଦଶ ଛନ୍ଦ ।

୩) କର, ବିରୁପାକ୍ଷ । ଉତ୍କଳର ନୌ-ବାଣିଜ୍ୟ, କଟକ ମାଧ୍ୟମିକ ଶିକ୍ଷାବୋର୍ଡ଼, ୧୯୭୪ ।

୪) ମଲ୍ଲ, ଭାଗ୍ୟଲିପି । ଉତ୍କଳ ପ୍ରସଙ୍ଗ, ଡିସେମ୍ବର ୨୦୦୬, ପୃ-୩୮-୪୦ ।

୫) ରଥ, ଜୟନ୍ତୀ । ଓଡ଼ିଶାର କଳା ଓ ସଂସ୍କୃତି, ୨୦୦୭, ପୃ-୪୯-୫୪ ।

୬) ସିଂହ, ଜଗବନ୍ଧୁ । ପ୍ରାଚୀନ ଉତ୍କଳ, ଭୁବନେଶ୍ୱର, ଓଡ଼ିଶା ସାହିତ୍ୟ ଏକାଡେମୀ, ୧୯୬୪, ପୃ-୫୫୪ ।

୭) ମହାନ୍ତି, ଶାନ୍ତନୁ କୁମାର । ଐତିହାସିକ ଚାନ୍ଦବାଲି ବନ୍ଦର ଉତ୍କଳ ପ୍ରସଙ୍ଗ । ନଭେମ୍ବର ୧୯୯୮, ପୃ-୬ ।

୮) ମିଶ୍ର, ଜ୍ଞାନେନ୍ଦ୍ର ମୋହନ । କାର୍ତ୍ତିକ ପୂର୍ଣ୍ଣିମା ଓ ବୋଇତ ବନ୍ଦାଣ । ପ୍ରଜାତନ୍ତ ୧, ୧୧, ୧୯୯୮ ।

୯) ନାୟକ, ରବି । ଉତ୍କଳ ପ୍ରସଙ୍ଗ, ନଭେମ୍ବର ୧୯୯୮, ପୃ-୫୧-୨ ।



# ପ୍ରଥମା ମହାବିଦ୍ୟା– ମହାକାଳୀ

ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର

ମହାମାୟାଙ୍କର ତ୍ରିବିଧରୂପ ହେଉଛି ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀ । ତମରଜସତ ଏହି ତିନିଭେଦର ତ୍ରିବିଧ ସ୍ୱରୂପ ମଧ୍ୟରୁ ମହାକାଳୀ ହେଉଛନ୍ତି ତମପ୍ରଧାନ ରୌଦ୍ରରୂପ । ଶାସ୍ତ୍ର, ପୁରାଣ ଓ ତନ୍ତ୍ରରେ ମହାକାଳୀଙ୍କୁ ସୃଷ୍ଟିର ଆଧାର ରୂପେ ଚିତ୍ରଣ କରାଯାଇଛି । ମହାକାଳୀଙ୍କ ସହିତ ମହାକାଳୀଙ୍କର ସଂପର୍କ ସୂକ୍ଷ୍ମାତିସୂକ୍ଷ୍ମ ତଥା ଆତ୍ମିକ ବିଚାରବୋଧରେ ମହାକାଳ ମହାକାଳୀଙ୍କ ଚରଣ ତଳେ ନିପତିତ । ଋଗ୍‌ବେଦୋକ୍ତ ଦେବୀ ସୂକ୍ତରେ ମହାଶକ୍ତିଙ୍କୁ ସୃଷ୍ଟିକର୍ତ୍ତ୍ରୀ ରୂପେ ଏବଂ ତତ୍ ପରବର୍ତ୍ତୀ ରାତ୍ରି ସୂକ୍ତରେ ସଂହାରକର୍ତ୍ତ୍ରୀ ରୂପେ ବର୍ଣ୍ଣନା କରାଯାଇଛି । ଆର୍ଯ୍ୟ ପ୍ରଚେତାବୃନ୍ଦ ଆପଣାର ଅତୀନ୍ଦ୍ରିୟ ବିଦ୍ୟାନୁଭୂତିରେ ଉପଲବ୍‌ଧି କରିଥିଲେ ଯେ ସମଗ୍ର ଜୀବଜଗତ କାଳର ଅଧୀନ ତଥା କାଳକୁ ଅତିକ୍ରମ କରିବାର ଶକ୍ତି କାହାର ନାହିଁ । କାଳର କରାଳ ସ୍ରୋତରେ ଜୀବଜଗତ ନିରନ୍ତର ନିଷ୍ପେଷିତ ହେଉଛନ୍ତି । କିନ୍ତୁ କାଳ ଯାହାର ଅଧୀନ ତାଙ୍କୁ କାଳୀ ନାମରେ ଅଭିହିତ କରି ବୈଦିକ ଋଷିଗଣ ମହାକାଳୀଙ୍କର ଉପାସନା ଆରମ୍ଭ କରିଥିଲେ । ସେମାନଙ୍କ ଅନିର୍ବଚନୀୟ କଳ୍ପନାରେ ନିତ୍ୟସିଦ୍ଧା ମହାକାଳୀ ମହାକାଳଙ୍କ ଉପରେ ପ୍ରତିଷ୍ଠିତ ଏବଂ ସମଗ୍ର ବିଶ୍ୱର ଆଧାର । ତନ୍ତ୍ରଧାରାରେ ମହାକାଳ ଅର୍ଥାତ୍ ମହାରୁଦ୍ରଙ୍କ ଉପରେ ମହାକାଳୀଙ୍କ ଦଣ୍ଡାୟମାନ ଉଗ୍ରମୂର୍ତ୍ତିଙ୍କ ଉପାସନାର ବ୍ୟାପକ ପ୍ରସାର ଘଟିଥିଲା । ଅଧିକନ୍ତୁ, ତନ୍ତ୍ର ସଂସ୍କୃତିର ଉତ୍ତରଣରେ ମହାମାୟାଙ୍କର ଦଶବିଧରୂପ ବା ଦଶମହାବିଦ୍ୟାଙ୍କର ଉପାସନା କରାଯାଇ ମହାକାଳୀଙ୍କୁ ପ୍ରଥମା ମହାବିଦ୍ୟା ସ୍ୱରୂପରେ ମହିମାମଣ୍ଡିତ କରାଗଲା ।

ତନ୍ତ୍ରଧାରାର ସର୍ବଶ୍ରେଷ୍ଠ ସାଧନ ହେଉଛି ଦଶମହାବିଦ୍ୟା ସାଧନା । ଏହି ଦଶମହାବିଦ୍ୟାଙ୍କ ମଧ୍ୟରୁ ଯେକୌଣସି ଗୋଟିଏ ମହାବିଦ୍ୟା ସାଧନ କରିପାରିଲେ ସାଧକ ଅଲୌକିକ ସିଦ୍ଧିର ଅଧିକାରୀ ହୋଇଥାଏ । ସେହି ଦଶମହାବିଦ୍ୟା ହେଉଛନ୍ତି କାଳୀ, ତାରା, ଷୋଡ଼ଶୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳାମୁଖୀ, ମାତଙ୍ଗୀ ଓ କମଳାତ୍ମିକା ।

କାଳୀ ତାରା ମହାବିଦ୍ୟା ଷୋଡ଼ଶୀ ଭୁବନେଶ୍ୱରୀ
ଭୈରବୀ ଛିନ୍ନମସ୍ତା ଚ ବିଦ୍ୟା ଧୂମାବତୀ ତଥା
ବଗଳା ସିଦ୍ଧବିଦ୍ୟା ଚ ମାତଙ୍ଗୀ କମଳାତ୍ମିକା
ଏତାଦୃଶ ମହାବିଦ୍ୟାଃ ସିଦ୍ଧବିଦ୍ୟାଃ ପ୍ରକୀର୍ତ୍ତିତାଃ ।

ଦଶମହାବିଦ୍ୟାଙ୍କ ଉତ୍ପତ୍ତି ସଂପର୍କରେ ଶାସ୍ତ୍ରରେ କୌତୁହଳଦୀପକ ଆଖ୍ୟାୟିକାର ଅବତାରଣା କରାଯାଇଛି । ବର୍ଣ୍ଣନାନୁସାରେ ଶିବଙ୍କ ପତ୍ନୀ ସତୀ ଦକ୍ଷଯଜ୍ଞରେ ଶିବଙ୍କ ଅପମାନ ସହ୍ୟ କରିନପାରି ସ୍ୱପିତା ଦକ୍ଷଙ୍କ ଯଜ୍ଞ ସ୍ଥଳୀକୁ ଗମନ କରିବାକୁ ଉଦ୍ୟମ କରିବାରୁ ଶିବ ତାଙ୍କ ପଥରୋଧ କଲେ । ଏଥିରେ ସତୀ କ୍ରୋଧ ଜର୍ଜରିତା ହୋଇ ଭୟାନକ ଦିଗମ୍ବରୀ ରୂପ ଧାରଣ କଲେ । ସେହି ରୂପ ସଂଦର୍ଶନରେ ଶିବ ଭୟଭୀତ ହୋଇ ଅନ୍ୟତ୍ର ପଳାୟନ କରିବାକୁ ଉଦ୍ୟତ ହୁଅନ୍ତେ ସତୀ ସ୍ୱଶରୀରରୁ ଦଶଗୋଟି ଭୟଙ୍କର ମୂର୍ତ୍ତି ସୃଷ୍ଟିକରି ଦଶଦିଗରେ ଶିବଙ୍କ ପଥରୋଧ କଲେ । ଆପଣାର ଦଶବିଧ ରୂପ ସଂପର୍କରେ ସତୀ କହିଲେ ଯେ ତାଙ୍କର ଏହି ଦଶରୂପ ଦଶମହାବିଦ୍ୟା ନାମରେ ବିଶ୍ୱରେ ଖ୍ୟାତ ହେବ । ଏହି ଦଶମହାବିଦ୍ୟା ତନ୍ତ୍ର ବିଧିରେ ପୂଜାକଲେ ମାରଣ, ମୋହନ, ବଶ୍ୟ, ଉଚ୍ଚାଟନ, ସ୍ତମ୍ଭନ, ବିଦ୍ୱେଷଣ, ଶାନ୍ତିକରଣ ଏବଂ ଦ୍ରାବଣ ଆଦି ଅଷ୍ଟସିଦ୍ଧି ପ୍ରାପ୍ତ ହୋଇଥାଏ ।

ଭାରତୀୟ ଦର୍ଶନ ଶାସ୍ତ୍ରର ମାନ୍ୟତାରେ ତନ୍ତ୍ରର ତିନିଗୋଟି ପ୍ରଧାନ ବିଭାଗ ରହିଅଛି । ସେଗୁଡ଼ିକ ହେଉଛି– ବ୍ରାହ୍ମଣ ତନ୍ତ୍ର, ଜୈନତନ୍ତ୍ର ଓ ବୌଦ୍ଧତନ୍ତ୍ର । ତନ୍ମଧ୍ୟରୁ ବ୍ରାହ୍ମଣ ତନ୍ତ୍ର ଉପାସନା

ଭେଦରେ ବୈଷ୍ଣବ ତନ୍ତ୍ର, ଶୈବତନ୍ତ୍ର ଓ ଶାକ୍ତତନ୍ତ୍ର ପ୍ରଭୃତି ତିନି ଭାଗରେ ବିଭକ୍ତ । ବୈଷ୍ଣବତନ୍ତ୍ର ମତରେ ସକଳ ବିଶ୍ୱ ବିଷ୍ଣୁମୟ । ସୃଷ୍ଟିର ପ୍ରାରମ୍ଭରୁ ଏଯାବତ୍ ସଂଘଟିତ ବିବର୍ତ୍ତନକୁ ବୈଷ୍ଣବାଚାର୍ଯ୍ୟବୃନ୍ଦ ପରମ ବିଷ୍ଣୁଙ୍କର ଦଶଟି ଅବତାରର ପରିପ୍ରକାଶ ବୋଲି ବିବେଚନା କରିଥାନ୍ତି । ସେହି ଦଶ ଅବତାର ହେଉଛନ୍ତି ମତ୍ସ୍ୟ, କୂର୍ମ, ବରାହ, ନୃସିଂହ, ବାମନ, ପର୍ଶୁ ରାମ, ରାମ, ବଳରାମ, ବୁଦ୍ଧ ଓ କଳକୀ । ଶୈବତନ୍ତ୍ରାଚାର୍ଯ୍ୟବୃନ୍ଦ ଶିବଙ୍କର ମଧ୍ୟ ଦଶରୂପ ଯଥା:- ମହାକାଳ, ଅକ୍ଷୋଭ୍ୟ, ପଞ୍ଚବକ୍ତ୍ର, ତ୍ର୍ୟମ୍ବକ, ଦକ୍ଷିଣାମୂର୍ତ୍ତି, ଶୂନ୍ୟପୁରୁଷ, ମହାରୁଦ୍ର, କବନ୍ଧ, ମତଙ୍ଗ ଓ ସଦାଶିବ ପ୍ରଭୃତି ପରିକଳ୍ପନା କରିଥିଲେ । ଶାକ୍ତତନ୍ତ୍ରସିଦ୍ଧଗଣ ମହାମାୟାଙ୍କର କାଳୀ, ତାରା, ଷୋଡ଼ଷୀ, ଭୁବନେଶ୍ୱରୀ, ଭୈରବୀ, ଛିନ୍ନମସ୍ତା, ଧୂମାବତୀ, ବଗଳାମୁଖୀ, ମାତଙ୍ଗୀ ଓ କମଳାତ୍ମିକା ପ୍ରଭୃତି ଦଶବିଧରୂପ ପୂଜାକରି ବୈଷ୍ଣବ ଓ ଶୈବ ସଂସ୍କୃତି ସହିତ ସମନ୍ୱୟ ରକ୍ଷାକଲେ । ଏହି ଦଶବିଧ ଶକ୍ତି ବା ଦଶମହାବିଦ୍ୟାଙ୍କ ମଧ୍ୟରେ କାଳୀ ଆଦ୍ୟା ଅର୍ଥାତ୍ ପ୍ରଥମା ମହାବିଦ୍ୟା ରୂପେ ପ୍ରତିଷ୍ଠିତା ହେଲେ ତୋଡଳ । ତନ୍ତ୍ରରେ ତାରାଙ୍କୁ ମତ୍ସ୍ୟ, ବଗଳାଙ୍କୁ କୂର୍ମ, ଧୂମାବତୀଙ୍କୁ ବରାହ, ଛିନ୍ନମସ୍ତାଙ୍କୁ ନୃସିଂହ, ଭୁବନେଶ୍ୱରୀଙ୍କୁ ବାମନ, ଷୋଡ଼ଷୀଙ୍କୁ ପର୍ଶୁରାମ, ମାତଙ୍ଗୀଙ୍କୁ ରାମ, ଭୈରବୀଙ୍କୁ ବଳରାମ ତଥା ମହାଲକ୍ଷ୍ମୀଙ୍କୁ ବୁଦ୍ଧ, ଦୁର୍ଗାଙ୍କୁ କଳ୍କୀ ଓ କାଳୀଙ୍କୁ କୃଷ୍ଣରୂପ ଧାରିଣୀ କୁହାଯାଇଛି ।

ତାରାଦେବୀ ମୀନରୂପା ବଗଳା କୂର୍ମମୂର୍ତ୍ତିକା,
ଧୂମାବତୀ ବରାହସ୍ୟାତ୍ ଛିନ୍ନମସ୍ତା ନୃସିଂହିକା
ଭୁବନେଶୀ ବାମନଃ ସ୍ୟାନ୍ମାତଙ୍ଗୀ ରାମମୂର୍ତ୍ତିକା
ତ୍ରିପୁରା ଜାମଦଗ୍ନ୍ୟସ୍ୟାତ୍ ବଳଭଦ୍ରସ୍ତୁ ଭୈରବୀ
ମହାଲକ୍ଷ୍ମୀର୍ଭବେଦ୍‌ବୁଦ୍ଧୋ ଦୁର୍ଗାସ୍ୟାତ୍ କଳ୍କୀରୂପିଣୀ
ସ୍ୱୟଂ ଭଗବତୀ କାଳୀ କୃଷ୍ଣମୂର୍ତ୍ତି ସମୁଦ୍‌ଭବା ।

ଏଥିରୁ ହୃଦ୍‌ବୋଧ ହୁଏ କାଳୀଙ୍କୁ ଶୈବତନ୍ତ୍ରର ମହାକାଳ ଓ ବୈଷ୍ଣବ ତନ୍ତ୍ରର କୃଷ୍ଣଙ୍କ ସହିତ ସମାନ କରିଦିଆଯାଇ ପ୍ରଥମା ମହାବିଦ୍ୟାଙ୍କ ମାନ୍ୟତା ପ୍ରଦାନ କରାଯାଇଛି ।

ମାର୍କଣ୍ଡେୟ ପୁରାଣାନ୍ତର୍ଗତ ସପ୍ତଶତୀ ଚଣ୍ଡୀରେ ମହାକାଳୀଙ୍କ ଉତ୍ପତ୍ତି ସଂପର୍କରେ ଉଲ୍ଲେଖ ରହିଛି ଯେ ପ୍ରଳୟ କାଳରେ ସଂପୂର୍ଣ୍ଣ ସଂସାର ଜଳମଗ୍ନ ଥିବା ସମୟରେ ଯୋଗନିଦ୍ରାଭିଭୂତ ଭଗବାନ ବିଷ୍ଣୁଙ୍କ କର୍ଣ୍ଣମୂଳରୁ ମଧୁ କୈଟଭ ନାମଧାରୀ ରାକ୍ଷସଦ୍ୱୟ ଉତ୍ପନ୍ନ ହୋଇ ବ୍ରହ୍ମାଙ୍କୁ ଆକ୍ରମଣ କରନ୍ତେ ବ୍ରହ୍ମା ଯୋଗନିଦ୍ରାଙ୍କୁ ସ୍ତୁତି କଲେ ତଥା ବ୍ରହ୍ମାଙ୍କ ସ୍ତୁତିରେ ପ୍ରସନ୍ନହୋଇ ମହାମାୟା ପ୍ରତ୍ୟକ୍ଷ ଆବିର୍ଭାବ ହୋଇଥିଲେ । ମହାମାୟାଙ୍କୁ ବ୍ରହ୍ମା ମହାକାଳୀ ସ୍ୱରୂପରେ ସ୍ତୁତି କଲେ । ଏହି ତମୋଗୁଣମୟୀ ନିଦ୍ରାରୂପିଣୀ ଦେବୀ ମହାକାଳୀଙ୍କର ଲୀଳା ଶ୍ରୀଶ୍ରୀଚଣ୍ଡୀର ପ୍ରଥମ ଚରିତରେ ବର୍ଣ୍ଣିତ । ବୈକୃତିକ ରହସ୍ୟରେ ମଧ୍ୟ ମହାକାଳୀ ବିଷ୍ଣୁଙ୍କର ଯୋଗନିଦ୍ରା ରୂପା ତାମସୀ ବୋଲି ଅଭିହିତା ।

ଯୋଗନିଦ୍ରା ହରେରୁକ୍ତା ମହାକାଳୀ ତମୋଗୁଣା
ମଧୁ କୈଟଭ ନାଶାର୍ଥଂ ଯାଂ ତୁଷ୍ଟାବାମ୍ବୁଜାସନଃ
ଦଶବକ୍ତ୍ରା ଦଶଭୁଜା ଦଶ ପାଦାଞ୍ଜନ ପ୍ରଭା
ବିଶାଳୟା ରାଜମାନା ତ୍ରିଂଶ ଲୋଚନ ମାଳୟା
ସ୍ଫୁରଦ୍ଦଶନଦଂଷ୍ଟ୍ରା ସା ଭୀମରୂପାପି ଭୂମିପ
ରୂପସୌଭାଗ୍ୟକାନ୍ତୀନାଂ ସା ପ୍ରତିଷ୍ଠା ମହାଶ୍ରିୟଃ
ଖଡ୍‌ଗବାଣଗଦାଶୂଳ ଶଙ୍ଖ ଚକ୍ର ଭୂଶୁଣ୍ଡିଭୃତ୍
ପରିଘଂ କାର୍ମୁକଂ ଶୀର୍ଷଂ ନିଶ୍ଚ୍ୟୋତଦ୍ରୁଧିରଂଦଧୌ
ଏଷା ସା ବୈଷ୍ଣବୀ ମାୟା ମହାକାଳୀ ଦୂରତୀୟା
ଆରାଧିତା ବଶୀକୁର୍ଯ୍ୟାତ୍ ପୂଜାକର୍ତ୍ତୁଶ୍ଚ ରାଚରମ୍

ଏଥିରେ କୁହାଗଲା ମହାକାଳୀଙ୍କୁ ଆରାଧନା କଲେ ପୂଜକର ସଚରାଚର ଜଗତ ବଶୀଭୂତ ହୁଏ । ବୈଦିକ ଯୁଗୀୟ ପରମ ତତ୍ତ୍ୱରୂପା ମହାକାଳୀ ପୁରାଣ ଓ ତନ୍ତ୍ରଯୁଗରେ ପ୍ରବୃତ୍ତି ଓ ନିବୃତ୍ତିର ଆଧାର ରୂପେ ପ୍ରତିଷ୍ଠା ଲାଭ କଲେ । ସେହି ଶ୍ରୀ ଶ୍ରୀ ଚଣ୍ଡୀର ଉତ୍ତର ଚରିତ ସପ୍ତମ ଅଧ୍ୟାୟ ବର୍ଣ୍ଣନ ଅନୁଯାୟୀ ମହାଦେବୀଙ୍କ ଭ୍ରୁକୁଟି କୁଟିଳ ଓ ଲଲାଟ ଦେଶରୁ ଖଡ୍ଗଧାରିଣୀ, ପାଶହସ୍ତା ଭୀଷଣବଦନା କାଳୀ ଆବିର୍ଭୂତା ହେଲେ । ସେହି ଦେବୀ ବିଚିତ୍ର ନରକଙ୍କାଳ ଧାରିଣୀ, ନୃମୁଣ୍ଡମାଳିନୀ, ବ୍ୟାଘ୍ରଚର୍ମ ପରିହିତା, ଅସ୍ଥିଚର୍ମ ଦେହା, ଅତି ଭୟଙ୍କରା, ବିଶାଳ ବଦନା, ଲୋଲଜିହ୍ୱା, କୋଟରାଗତ ରକ୍ତନୟନା ଏବଂ ବିକଟ ଶବ୍ଦରେ ଦିକ୍‌ମଣ୍ଡଳ ପୂର୍ଣ୍ଣକାରିଣୀ ।

ଭ୍ରୁକୁଟୀ କୁଟିଳାତ୍ତସ୍ୟା ଲଲାଟ ଫଳକାଦ୍ଦ୍ରୁତମ୍
କାଳୀ କରାଳବଦନା ବିନିଷ୍କ୍ରାନ୍ତାସି ପାଶିନୀ
ବିଚିତ୍ରଖଟ୍ୱାଙ୍ଗଧରା ନରମାଳା ବିଭୂଷଣା
ଦ୍ୱୀପିଚର୍ମ ପରିଧାନା ଶୁଷ୍କମାଂସାତି ଭୈରବା
ଅତି ବିସ୍ତାର ବଦନା ଜିହ୍ୱାଲଳନ ଭୀଷଣା
ନିମଗ୍ନା ରକ୍ତ ନୟନା ସଦା ପୂରିତ ଦିଙ୍‌ମୁଖା

ଏତଦ୍‌ଭିନ୍ନ ସେହି ଶ୍ରୀ ଶ୍ରୀ ଚଣ୍ଡୀରେ ବର୍ଣ୍ଣନ ରହିଛି ଯେ ଦେବୀ କାଳିକା ଯେତେବେଳେ ଚଣ୍ଡମୁଣ୍ଡ ନାମକ ରାକ୍ଷସଦ୍ୱୟଙ୍କୁ ବଧ କରି ଭଗବତୀ ଦୁର୍ଗାଙ୍କ ନିକଟକୁ ଆସିଲେ ସେତେବେଳେ ଦେବୀ ଦୁର୍ଗା ସେହି କାଳିକାଙ୍କୁ କୋମଳ ବାକ୍ୟରେ କହିଲେ-

ହେ ଦେବୀ ! ଆପଣ ଚଣ୍ଡ ଓ ମୁଣ୍ଡର ମସ୍ତକ ଦୁଇଟି ମୋ ନିକଟକୁ ଆଣିଛନ୍ତି ବୋଲି ଜଗତରେ ଚାମୁଣ୍ଡା ନାମରେ ଖ୍ୟାତ ହେବେ । ତେଣୁ ଚାମୁଣ୍ଡା ହେଉଛନ୍ତି ମହାକାଳୀଙ୍କର ଉଗ୍ରରୂପ । ଚଣ୍ଡାଦି ଅସୁରଗଣ ଅତି ତମୋଗୁଣଯୁକ୍ତ ବୋଲି ସେମାନଙ୍କ ବିନାଶ ନିମିତ୍ତ ମହାମାୟା ତାମସୀ ରୂପରେ ଆବିର୍ଭାବ ହୋଇଥିଲେ । ଶାରଦୀୟ ଓ ବାସନ୍ତୀକ ଦୁର୍ଗାପୂଜାର ଅଷ୍ଟମୀ ଓ ନବମୀ ତିଥି ସଂଯୋଗ ସମୟରେ ଯେଉଁ ସନ୍ଧି ପୂଜା ହୁଏ, ସେଥିରେ ଚାମୁଣ୍ଡାଙ୍କର ପୂଜା ହୁଏ । କାର୍ତ୍ତିକମାସ ଦୀପାବଳୀ ଅମାବାସ୍ୟା ରାତ୍ରିରେ ଯେଉଁ କାଳୀପୂଜା ହୁଏ, ତାହା ଚାମୁଣ୍ଡା ଦେବୀଙ୍କ ପୂଜା ଅଟେ ।

ପୁରାଣମାନଙ୍କରେ ହିମାଳୟ ସମ୍ଭୂତା ପାର୍ବତୀଙ୍କ ନାମ କାଳୀ ବୋଲି ଉଲ୍ଲେଖ ରହିଛି । ବର୍ଣ୍ଣନାନୁସାରେ ଦେବୀ କୃଷ୍ଣବର୍ଣ୍ଣ ହୋଇ ଜନ୍ମଗ୍ରହଣ କରିଥିବାରୁ ତାଙ୍କ ନାମ କାଳୀ ।

ବରାହ ପୁରାଣ ଓ ସୌର ପୁରାଣ ବର୍ଣ୍ଣନାନୁଯାୟୀ ସତୀ ଅଗ୍ନିରେ ଝାସ ପ୍ରଦାନ ପୂର୍ବକ ଦଗ୍ଧହୋଇ କଳାବର୍ଣ୍ଣ ଧାରଣ କରିଥିଲେ । ଦକ୍ଷସୂତା ସତୀ ଶରୀର ତ୍ୟାଗ କଲାପରେ ହିମାଳୟ କନ୍ୟାରୂପେ ଆତ୍ମପ୍ରକାଶ କଲେ ଏବଂ ତାଙ୍କ ନାମ କାଳୀ ହେଲା ।

ସଂକ୍ଷେପରେ ଉଲ୍ଲେଖ କଲେ ବିଭିନ୍ନ ପୁରାଣରେ ଉମା, ସତୀ ଓ ପାର୍ବତୀଙ୍କୁ କାଳୀ କୁହାଯାଇଛି । ସେହିଁ ଆଦିମାତା । ତନ୍ତ୍ରଶାସ୍ତ୍ରରେ କାଳୀଙ୍କୁ ଆଦ୍ୟାଶକ୍ତି ମହାମାୟା ଉଲ୍ଲେଖ କରାଯାଇ ତାଙ୍କର ଆଠ ପ୍ରକାର ମୂର୍ତ୍ତିର ଉପାସନା ନିର୍ଦ୍ଧାରଣ କରାଯାଇଛି । ତନ୍ମଧ୍ୟରେ ଭଦ୍ରକାଳୀ, ଦକ୍ଷିଣକାଳୀ ଓ ଶ୍ମଶାନକାଳୀ ପୂଜା ବିଶେଷ ପ୍ରସିଦ୍ଧି ଲାଭ କରିଛି । ମହାକାଳୀଙ୍କର ଉପାସନା ଯଥାର୍ଥରେ ଓଁକାରମୟୀ ସର୍ବବ୍ୟାପିନୀ ଅବିନାଶିନୀ ନିତ୍ୟା ମହାମାୟାଙ୍କର ଆରାଧନା ।

ପ୍ରଥମା ମହାବିଦ୍ୟା ମହାକାଳୀଙ୍କର ତାନ୍ତ୍ରିକ ଆରାଧନା ଅଲୌକିକ ସିଦ୍ଧିପ୍ରଦ । କାଳିକୋପନିଷଦ୍ ଉଲ୍ଲେଖ ଅନୁଯାୟୀ ଜଗଜ୍ଜନନୀ ମହାକାଳୀ ବ୍ରହ୍ମସ୍ୱରୂପିଣୀ ତଥା ବ୍ରହ୍ମରନ୍ଧ୍ରରେ ବିରାଜିତ । ଏହି ଦିବ୍ୟ ଦୃଷ୍ଟିରେ କାଳୀ ସାଧନାରେ ବ୍ରହ୍ମୋପଲବ୍ଧି ସୁନିଶ୍ଚିତ । ମହାକାଳୀ ଉପାସନାର ବିଧି କାଳିକୋପନିଷଦ୍, କାଳିକା ପୁରାଣ, କାଳୀତନ୍ତ୍ର, ସ୍ୱତନ୍ତ୍ର ତନ୍ତ୍ର, ମୁଣ୍ଡମାଳାତନ୍ତ୍ର, ତୋଡଳତନ୍ତ୍ର, ଶାକ୍ତ ପ୍ରମୋଦ, ଅଂଶୁମଦ୍ ଭେଦାଗମ ଓ ମାର୍କଣ୍ଡେୟ ପୁରାଣରେ ବିଶଦ ଭାବରେ ବର୍ଣ୍ଣିତ । ତନ୍ତ୍ରୋକ୍ତ ବୀଜମନ୍ତ୍ର, ପଟଳ, ପଦ୍ଧତି, ସହସ୍ରନାମ, ହୋମ, ବଳୀ, ତର୍ପଣ ପ୍ରଭୃତିର ଉପଯୋଗ ଦ୍ୱାରା ମହାକାଳୀଙ୍କ ଆରାଧନା କରାଗଲେ ବିଶେଷ ସର୍ବସିଦ୍ଧି ପ୍ରାପ୍ତ ହୋଇଥାଏ । ମହାକାଳୀଙ୍କର ଭୟାନକ ରୂପ ସାଧକ ମନରେ ଭୀତି ସଂଚାର କରୁଥିବାରୁ ପ୍ରାରମ୍ଭିକ ପର୍ଯ୍ୟାୟରେ କାଳୀଯନ୍ତ୍ର ସାଧନାର ବିଧାନ ମଧ୍ୟ ରହିଛି । ସାଧକଙ୍କୁ ମହାକାଳୀ ପୂଜା ନିଷ୍ଠା, ଏକାଗ୍ରତା ଓ ସତର୍କତାର ସହିତ କରିବାକୁ ହୋଇଥାଏ । ସର୍ବଦା ସ୍ମରଣ କରିବାକୁ ହେବ ଯେ, ମହାକାଳ ପୁରୁଷଙ୍କ ମହାଶକ୍ତି ମହାକାଳୀ ଶବାରୂଢ଼ା ଅର୍ଥାତ୍ ଶକ୍ତି ବିହୀନ ଶିବଙ୍କ ଉପରେ ଆସୀନା । ଏହି ପୁରୋଦୃଷ୍ଟିରେ ସାଧକ ନିରନ୍ତର ମନ୍ତ୍ରଜପ ଦ୍ୱାରା ମହାକାଳୀଙ୍କୁ ପ୍ରସନ୍ନ କରି ଶକ୍ତି ଆହରଣ ପୂର୍ବକ ଶିବସ୍ୱରୂପ ହେବା ବିଧେୟ । ସାଧକ ଶିବସ୍ୱରୂପ ହୋଇପାରିଲେ ଅଣିମାଦି ଅଷ୍ଟସିଦ୍ଧି ଅଚିରେ ତାର ଅଧିକୃତ ହୋଇଥାଏ । ତତ୍‌ସହିତ ସେ ପରମ ପଦତ୍ୱ ଲାଭ ପୂର୍ବକ ଜୀବନ୍ମୁକ୍ତ ହୋଇଥାଏ । ମଦ, ମାଂସ, ମତ୍ସ୍ୟ, ମୁଦ୍ରା ଓ ମୈଥୁନାଦି ପଞ୍ଚମକାର ମହାକାଳୀ ସାଧନା ମହତ୍ୱପୂର୍ଣ୍ଣ ତନ୍ତ୍ର ସାଧନା । ପ୍ରତ୍ୟେକ ମୁଦ୍ରା ବା ମକାରର ଆଧ୍ୟାତ୍ମିକ ପ୍ରୟୋଗ ବିଶେଷ ଫଳପ୍ରଦ । ପୀଠ ଅପେକ୍ଷା ଶ୍ମଶାନରେ ମହାକାଳୀ ପୂଜା ଅତ୍ୟନ୍ତ ସୌଭାଗ୍ୟଦାୟକ ଓ ସିଦ୍ଧିପ୍ରଦ ବୋଲି କୁହାଯାଇଛି । ଶାକ୍ତ ପ୍ରମୋଦ ଉଲ୍ଲିଖିତ ମହାକାଳୀ ଧ୍ୟାନରେ ତାଙ୍କୁ ଶ୍ମଶାନବାସିନୀ ବୋଲି ମଧ୍ୟ ସମ୍ବୋଧନ କରାଯାଇଛି ।

ଧ୍ୟାନାନୁଯାୟୀ ଜଗଜ୍ଜନନୀ ମହାକାଳୀ ଶବାରୁଢ଼ା, ଚତୁର୍ଭୂଜା, ଖଡ୍ଗମୁଣ୍ଡବରଦ ଓ ଅଭୟମୁଦ୍ରା ଧାରିଣୀ । ଦେବୀ ଦିଗ୍‌ବସନା ତଥା ମୁଣ୍ଡମାଳ ପରିଶୋଭିତା ଲୋଳଜିହ୍ୱା । ଏତାଦୃଶ ଭୟଙ୍କର ମୂର୍ତ୍ତିଙ୍କୁ ସାକାର କରାଇବା ଅନେକ ସାଧକଙ୍କ ପକ୍ଷରେ ସମ୍ଭବ ହେଉନଥିବାରୁ କାଳୀଯନ୍ତ୍ର ପୂଜାବିଧି ପ୍ରଚଳିତ । ଯନ୍ତ୍ରରେ ଦେବୀଙ୍କ ମୂର୍ତ୍ତି ପ୍ରଚ୍ଛନ୍ନ ଭାବରେ ତାନ୍ତ୍ରିକ ରେଖାବିଜ୍ଞାନରେ ଅବସ୍ଥିତ । ପୀଠ ଭିନ୍ନ ଅନ୍ୟ ସ୍ଥାନରେ ଯନ୍ତ୍ରରେ କାଳୀପୂଜା କରାଯାଏ । ତନ୍ତ୍ରଶାସ୍ତ୍ରରେ କାଳୀଯନ୍ତ୍ର ନିର୍ମାଣ ବିଧି ବର୍ଣ୍ଣିତ ।

ତିନିଗୋଟି ତ୍ରିକୋଣ ଉପରେ ତିନିଗୋଟି ବୃତ୍ତ ଏବଂ ଶେଷବୃତ୍ତ ଉପରେ ଅଷ୍ଟଦଳ ତଥା ତଦୁପରି ବୃତ୍ତ ଓ ସର୍ବ ଉପରେ ଏକ ଭୂପୁର ହିଁ ମହାକାଳୀ ଯନ୍ତ୍ର । ଏହି ଯନ୍ତ୍ରକୁ ତନ୍ତ୍ରୋକ୍ତ ବିଧିରେ ସ୍ନାନ, ବସ୍ତ୍ର, ଗନ୍ଧ, ପୁଷ୍ପ, ଧୂପ, ଦୀପ, ନୈବେଦ୍ୟାଦି ଉପଚାର ପ୍ରଦାନ ବିଧିରେ ପୂଜା ପୂର୍ବକ ବଳି, ହୋମ, ତର୍ପଣ, କବଚ, କୀଳକ, ପଟଳ, ସହସ୍ରନାମ ଆଦି କରିବା ସହିତ ଶକ୍ତି ଆହରଣ ନିମିତ୍ତ ସାଧକ ନିରନ୍ତର ବୀଜମନ୍ତ୍ର ଜପ କରିବା ବିଧେୟ । ଏହି ବୀଜମନ୍ତ୍ର କାଳିକୋପନିଷଦ୍‌ରେ ଉଲ୍ଲେଖ ରହିଛି । ଯଥା:– କ୍ରୀଂ କ୍ରୀଂ କ୍ରୀଂ ହ୍ରୀଂ ହ୍ରୀଂ ହୂଂ ହୂଂ ଦକ୍ଷିଣ କାଳିକେ କ୍ରୀଂ କ୍ରୀଂ କ୍ରୀଂ ହ୍ରୀଂ ହ୍ରୀଂ

ହୂଂ ହୂଂ ସ୍ୱାହା । ସାଧକ ଏହି ମନ୍ତ୍ର ନିଜର ଶକ୍ତି ଅନୁସାରେ ଜପକରି ତନ୍ତ୍ରୋକ୍ତେ ବିଧିରେ ପୁରଶ୍ଚରଣ କଲେ ସିଦ୍ଧିଲାଭର ଅଧିକାରୀ ହୋଇଥାଏ । ନିରନ୍ତର କାଳୀକର୍ପୂର, ଦେବୀସୂକ୍ତ, ରାତ୍ରିସୂକ୍ତ, ସ୍ତୋତ୍ର, ହୃଦୟ, ଶତନାମ ସହସ୍ର ନାମ ପାଠ କରି ଜଗଜ୍ଜନନୀ ମହାକାଳୀଙ୍କୁ ସନ୍ତୁଷ୍ଟ କଲେ ସିଦ୍ଧି ତତ୍‌କ୍ଷଣାତ୍ ପ୍ରାପ୍ତି ହୋଇଥାଏ ।

ଉଚ୍ଚକୋଟୀର ସାଧକବୃନ୍ଦ ଯନ୍ତ୍ର ପୂଜା ନକରି ପୀଠ ବା ଶ୍ମଶାନରେ ସାକ୍ଷାତ୍ ମୂର୍ତ୍ତି ପୂଜା କରନ୍ତି । ଏମାନେ ମଧ୍ୟ ଉପଚାର ପୂଜା, ବୀଜମନ୍ତ୍ର ଜପ, କବଚ, କୀଳକ, ପଟଳ, ପଦ୍ଧତି, ଶତନାମ, ସହସ୍ରନାମ, ହୋମ, ତର୍ପଣ ଓ ବଳୀ ପ୍ରଭୃତି କରନ୍ତି । ଏହି ପୂଜାରେ ନ୍ୟାସ, ମୁଦ୍ରା, ଚୁକ୍ତି ଓ ମନ୍ତ୍ରକୁ ବିଶେଷ ପ୍ରାଧାନ୍ୟ ଦିଆଯାଏ । ତ୍ରିକୋଣ ବା ନବକୋଣ ପଦ୍ମଉପରେ ଷଡ଼ାଙ୍ଗନ୍ୟାସ ଦ୍ୱାରା ଜଗଜ୍ଜନନୀଙ୍କୁ ଅର୍ପଣ କରିବା ଉଚ୍ଚକୋଟୀର ସାଧକଙ୍କର ମହାନ ଲକ୍ଷଣ । ସେମାନେ ଆଧ୍ୟାତ୍ମିକ ଅର୍ଥରେ ପଞ୍ଚମକାର ପ୍ରୟୋଗ କରିଥାନ୍ତି । ଶ୍ରଦ୍ଧା, ଏକାଗ୍ରତା ଓ ନିଷ୍ଠାର ସହିତ ପୂଜା ଓ ମନ୍ତ୍ରଜପ ପୂର୍ବକ ଏହି ସାଧକଗଣ ଅଚିରେ ସିଦ୍ଧିଲାଭ କରନ୍ତି ତଥା ଯାବତୀୟ କାମ୍ୟବସ୍ତୁ ପ୍ରାପ୍ତ କରନ୍ତି । କାଳୀଙ୍କର କକାରାଦି ସହସ୍ରନାମ ପାଠକରି ସେମାନେ ଜଗଜ୍ଜନନୀଙ୍କର ସନ୍ତୋଷ ବିଧାନ କରନ୍ତି ତଥା ବିଶେଷ ପ୍ରସିଦ୍ଧ ମନ୍ତ୍ରଧାରା ପ୍ରୟୋଗରେ ମନସ୍କାମନା ପୂରଣ କରିଥାନ୍ତି ।

ସପ୍ତଜିହ୍ୱା ମଧ୍ୟରେ ପ୍ରଥମ ଜିହ୍ୱାକୁ କାଳୀ ଓ ଦ୍ୱିତୀୟ ଜିହ୍ୱାକୁ କରାଳୀ କୁହାଯାଇ ବୈଦିକ ଯଜ୍ଞରେ କାଳୀଙ୍କ ପ୍ରାଧାନ୍ୟ ପ୍ରତିଷ୍ଠା କରାଯାଇଛି । ବେଦପରବର୍ତ୍ତୀ ପୁରାଣ ଓ ତନ୍ତ୍ର ଯୁଗରେ ମହାକାଳୀଙ୍କର ଉଗ୍ରମୂର୍ତ୍ତିର ଅଚିନ୍ତ୍ୟନୀୟ କଳ୍ପନା କରାଯାଇ ପ୍ରଳୟକାଳୀନ ମେଘମାଳା ସଦୃଶ କୃଷ୍ଣବର୍ଣ୍ଣା, ମୁକ୍ତକେଶପାଶ, ନୃମୁଣ୍ଡମାଳିନୀ ମୂର୍ତ୍ତି ପୂଜା କରାଗଲା । ଏହି ମୂର୍ତ୍ତିଙ୍କର ଯନ୍ତ୍ର ପୂଜା ଏକ ତନ୍ତ୍ରବିଜ୍ଞାନ ସ୍ୱରୂପରେ ପ୍ରତିଭାତ ହେଲା । ଗୁପ୍ତଯୁଗରେ ବିଭିନ୍ନ ସ୍ଥାନରେ କାଳୀମନ୍ଦିର ଓ ପୀଠ ନିର୍ମାଣ ହୋଇ କାଳୀ ଉପାସନାର ବ୍ୟାପକ ପ୍ରସାର ଘଟିଥିଲା । ସେହି ସମୟରେ ଉଜ୍ଜୟିନୀରେ ମହାକାଳ ଓ ମହାକଳୀଙ୍କର ମନ୍ଦିର ନିର୍ମାଣ ହୋଇ ଏହି ପ୍ରାଚୀନ ନଗରୀ କାଳୀ ଉପାସନାର କେନ୍ଦ୍ରର ମାନ୍ୟତା ଲାଭ କଲା । ଏହି ଗଡ଼କାଳୀ ମହାରାଜ ବିକ୍ରମାଦିତ୍ୟଙ୍କର ଇଷ୍ଟଦେବୀ ତଥା ମହାକବି କାଳିଦାସ ଏହି ପୀଠରେ ସିଦ୍ଧିଲାଭ କରିଥିଲେ । ସ୍ୱଂୟଂ ମହାରାଜ ବିକ୍ରମାଦିତ୍ୟ ଓ ତଦୀୟ ଭ୍ରାତା ଭଦ୍ରକାଳୀ ସାଧକ ଥିଲେ । ଗୁପ୍ତଯୁଗ ପରେ କାଳୀ ଓ ଚାମୁଣ୍ଡା ଉଭୟଙ୍କ ଉପାସନାର ପ୍ରସାର ଘଟିଥିଲା । ଗବେଷକଙ୍କ ମତରେ ଯାଜପୁରରେ ହିଁ ଚାମୁଣ୍ଡା ଉପାସନାର ଉନ୍ମେଷ ହୋଇଥିଲା । ଏହାର ଉଦ୍ଧରଣରେ ଦିଲ୍ଲୀର କାଳୀ ମନ୍ଦିର, ମସୌରୀର ଚାମୁଣ୍ଡା ମନ୍ଦିର ଓ କଳିକତାର କାଳୀମନ୍ଦିର ପ୍ରସିଦ୍ଧ କାଳୀପୀଠ ରୂପେ ପ୍ରତିଷ୍ଠିତ ହେଲା । ପରବର୍ତ୍ତୀ କାଳରେ ଭକ୍ତ ଚଣ୍ଡୀ ଦାସ, ସାଧକ କମଳାକାନ୍ତ, ସାଧକ ରାମ ପ୍ରସାଦ, ସାଧକ ରାମକୃଷ୍ଣ ପରମହଂସ ପ୍ରଭୃତି ଦିବ୍ୟ ସାଧକ କାଳୀ ଉପାସନାକୁ ଭବ୍ୟରୂପ ପ୍ରଦାନ କଲେ । ସପ୍ତଦଶ-ଅଷ୍ଟାଦଶ ଶତାବ୍ଦୀରୁ ସାର୍ବଜନୀନ ମୃଣ୍ମୟୀ କାଳୀପୂଜା ଅନୁଷ୍ଠିତ ହୋଇ ମହାକାଳୀ ସର୍ବଜନାରାଧ୍ୟା ହୋଇଗଲେ ।

ଓଡ଼ିଶାରେ ଗୁପ୍ତଯୁଗରେ ଭଦ୍ରକାଳୀ ପୀଠରୁ କାଳୀ ଉପାସନାର ଅୟମାରମ୍ଭ ହୋଇଥିଲା । ପରବର୍ତ୍ତୀ ଭୌମକର ଯୁଗରେ ବିରଜା କ୍ଷେତ୍ରରେ କାଳୀ ଉପାସନା ଏକ ଭବ୍ୟରୂପ ଗ୍ରହଣ କରିଥିବା ଏହି କ୍ଷେତ୍ରର ତ୍ରିଲୋଚନେଶ୍ୱର ମନ୍ଦିରର କାଳୀପୀଠ ଏକ ପ୍ରସିଦ୍ଧ ପୀଠ । ଏହି କାଳୀ ଅଷ୍ଟାଦଶଭୁଜା ହୋଇଥିବାରୁ ନଅ ହାତ ଦେଉଳରେ ଅଠର ହାତ କାଳୀ ବଚନିକା ରହିଛି । କେନ୍ଦୁଝରର ସିଦ୍ଧମଠ, ବାରିପଦାର ଚତୁର୍ଭୁଜା କାଳୀମନ୍ଦିର, କଳାହାଣ୍ଡିର ମାଣିକେଶ୍ୱରୀ ମନ୍ଦିର, ସୋନପୁରର ସୁରଶ୍ୱେରୀ ମନ୍ଦିର, ପାଟଣାଗଡ଼ର ପାଟଣେଶ୍ୱରୀ ପୀଠ, ବଲାଙ୍ଗୀର ଜିଲ୍ଲା ସିଦ୍ଧକେଲାଠାରେ ଥିବା ଦ୍ୱାରସେନୀ ପୀଠ, ପୁରୀର ଶ୍ୟାମାକାଳୀ ପୀଠ, କାଳିକାଦେବୀ ସାହିର ଦକ୍ଷିଣକାଳୀ ପୀଠ, ଶ୍ରୀମନ୍ଦିର ପରିସରରେ ଥିବା ବେଢ଼ାକାଳୀ ଓ କୋଇଲିବୈକୁଣ୍ଠରେ ଥିବା ଶ୍ମଶାନକାଳୀ ପୀଠ ପ୍ରଭୃତି ଓଡ଼ିଶାର ପ୍ରସିଦ୍ଧ କାଳୀପୀଠ । ଭୁବନେଶ୍ୱରର ବିନ୍ଦୁସାଗର ଉତ୍ତର ତଟରେ ବିରାଜିତା ଉତ୍ତରାୟଣୀ ବା ଉତ୍ତରେଶ୍ୱରୀ ପୀଠ ହେଉଛି ମହାଶ୍ମଶାନ କାଳୀ ତନ୍ତ୍ର ପୀଠ । ଏଠାରେ କାଳୀଙ୍କ ସହିତ ତିନିଶହ ଯୋଗିନୀ ବାସ କରନ୍ତି ବୋଲି ତନ୍ତ୍ରାଚାର୍ଯ୍ୟଙ୍କର ବିଶ୍ୱାସ । ସର୍ବୋପରି ଓଡ଼ିଶାର ଇଷ୍ଟ ଶ୍ରୀଜଗନ୍ନାଥଙ୍କୁ ତନ୍ତ୍ରସିଦ୍ଧବୃନ୍ଦ ପ୍ରଥମ ମହାବିଦ୍ୟା ଦକ୍ଷିଣକାଳୀ ସ୍ୱରୂପରେ ବିବେଚନା କରିଥାନ୍ତି ।

ଓରିଏଣ୍ଟାଲ ଇନ୍‌ସ୍ୟୁରାନ୍ସ ବିଲ୍‌ଡିଙ୍ଗ୍
ଦକ୍ଷିଣକାଳୀ ମାର୍ଗ, ଢ଼େଙ୍କାନାଳ



# ଓଡ଼ିଶାର ଗୌରବୋଜ୍ଜ୍ୱଳ ନୌବାଣିଜ୍ୟ

**ଅଜିତ କୁମାର ଦାଶ**



ପ୍ରାଚୀନ ଯୁଗର ନୌବାଣିଜ୍ୟ କ୍ଷେତ୍ରରେ ଓଡ଼ିଆମାନେ ଥିଲେ ଅଗ୍ରଣୀ । ବିଶେଷତଃ ଓଡ଼ିଶାର ସାଧବପୁଅମାନେ ନୌବାଣିଜ୍ୟ ଦୃଷ୍ଟିରୁ ଥିଲେ ଭାରତର ଗର୍ବ ଓ ଗୌରବ । ନୌବହର ଜାତି ରୂପେ ଓଡ଼ିଆମାନେ ବିଶ୍ୱ ଦରବାରରେ ସ୍ୱତନ୍ତ୍ର ଆସନ ଅଳଙ୍କୃତ କରିପାରିଥିଲେ । ଉଲ୍ଲେଖଯୋଗ୍ୟ ଯେ, ଓଡ଼ିଶାର ସୁଦୀର୍ଘ ସମୁଦ୍ର ଉପକୂଳରେ ଅନେକ ପ୍ରାକୃତିକ ବନ୍ଦର ରହିଥିଲା । ଏହି ବନ୍ଦରଗୁଡ଼ିକ ସୁନାବ୍ୟା ନଦୀ ଦ୍ୱାରା ଆଭ୍ୟନ୍ତରୀଣ ଅଞ୍ଚଳ ସହିତ ସଂଯୁକ୍ତ ଥିଲା । ଫଳତଃ ନଦୀ ପଥରେ ବାଣିଜ୍ୟ ସାମଗ୍ରୀ ଅନାୟାସରେ ବନ୍ଦରମାନଙ୍କରେ ପହଞ୍ଚି ପାରୁଥିଲା । ଏହିସବୁ ବନ୍ଦରରୁ ବିଦେଶକୁ ପ୍ରଚୁର ପରିମାଣରେ ହାତୀଦାନ୍ତ, ସୂକ୍ଷ୍ମବସ୍ତ୍ର, ପଟ୍ଟବସ୍ତ୍ର, ସୌଖୀନ ହସ୍ତଶିଳ୍ପ ସାମଗ୍ରୀ, ମୂଲ୍ୟବାନ ରତ୍ନପଥର, ଚାନ୍ଦୁଆ ଓ ପାନପତ୍ର ପ୍ରଭୃତି ବିଦେଶକୁ ରପ୍ତାନୀ କରାଯାଉଥିଲା ଏବଂ ସୁବର୍ଣ୍ଣ, ମୁକ୍ତା, ରୂପା, ତମ୍ବା, ଅଗୁରୁ ତଥା ମୂଲ୍ୟବାନ ମସଲା ପ୍ରଭୃତି ବିଦେଶରୁ ଆମଦାନୀ ହେଉଥିଲା । ଏହି ବହିର୍ବାଣିଜ୍ୟ ମାଧ୍ୟମରେ ଓଡ଼ିଆମାନେ ଦରିଆପାରି ଦୂରଦୂରାନ୍ତ ଦେଶମାନଙ୍କରୁ ଅସରନ୍ତି ଧନଦୌଲତ ବୋହିଆଣି ଓଡ଼ିଶାକୁ ସମୃଦ୍ଧିଶାଳୀ କରିଥିଲେ । ଏତଦ୍‌ଭିନ୍ନ ନଦୀ ମାଧ୍ୟମରେ ଉପକୂଳ ଅଞ୍ଚଳର ଦ୍ରବ୍ୟ ମାଳଅଞ୍ଚଳକୁ ତଥା ପାର୍ବତ୍ୟାଞ୍ଚଳର ଦ୍ରବ୍ୟ ଉପକୂଳ ଅଞ୍ଚଳକୁ ପରିବହନ ହୋଇ ଅନ୍ତର୍ବାଣିଜ୍ୟ ଅବ୍ୟାହତ ରହିଥିଲା । ଓଡ଼ିଆ ଲୋକକଥାରେ ସାଧବପୁଅ କାହାଣୀ ବହୁଳ ଭାବରେ ବର୍ଣ୍ଣିତ । ଓଡ଼ିଆ ସାହିତ୍ୟରେ ସାମୁଦ୍ରିକ ବାଣିଜ୍ୟର ଗୌରବୋଜ୍ଜ୍ୱଳ ଚିତ୍ର ସ୍ୱର୍ଣ୍ଣାକ୍ଷରରେ ଅଙ୍କିତ । ଅନେକ ବିଦେଶୀ ଭୌଗଳିକ, ଐତିହାସିକ ତଥା ପରିବ୍ରାଜକ ଓଡ଼ିଶାବାସୀଙ୍କର ସାମୁଦ୍ରିକ ବାଣିଜ୍ୟ ବ୍ୟବସାୟର ଭୂୟସୀ ପ୍ରଶଂସା କରି ଯାଇଛନ୍ତି । ସମୃଦ୍ଧ ସାମୁଦ୍ରିକ ବାଣିଜ୍ୟ ଯୋଗୁଁ ଓଡ଼ିଶାର ରାଜାଙ୍କୁ ପ୍ରାଚୀନ ସାହିତ୍ୟରେ ମହୋଦଧିପତି ବୋଲି ଉଲ୍ଲେଖ କରାଯାଇଛି । ପ୍ରାୟ ପ୍ରତ୍ୟେକ ଓଡ଼ିଆ ନୌବାଣିଜ୍ୟ ଓ ସାଧବପୁଅ କଥା ପଢ଼ିଲେ ଜାତୀୟ ଗର୍ବରେ ଉଲ୍ଲସିତ ହୋଇଥାନ୍ତି ।

ପୌରାଣିକ ଓ ଐତିହାସିକ ଯୁଗରେ ଓଡ଼ିଶା ଭୂଖଣ୍ଡ ଉଡ୍ର, କଳିଙ୍ଗ, ତ୍ରିକଳିଙ୍ଗ, ଉତ୍‌କଳିଙ୍ଗ, ଉତ୍କଳ, ତୋଷଳ, କୋଶଳ, କଙ୍ଗୋଦ ପ୍ରଭୃତି ବହୁନାମରେ ପରିଚିତ ଥିଲା । ପ୍ରାଚୀନ କାଳରେ ପୂର୍ବମହୋଦଧି କଳିଙ୍ଗ ଉପକୂଳରେ ଥିବାରୁ ଏହାକୁ କଳିଙ୍ଗ ସାଗର କୁହାଯାଉଥିଲା, ଯାହାକି ସଂପ୍ରତି ବୈଦେଶିକଙ୍କ ଦ୍ୱାରା ବଙ୍ଗୋପ ସାଗର ନାମରେ ଚିହ୍ନିତ । ଗଙ୍ଗାନଦୀର ମୁହାଣଠାରୁ ଗୋଦାବରୀର ମୁହାଣ ମଧ୍ୟରେ କଳିଙ୍ଗ ସାଗରରେ ବହୁ ପ୍ରାକୃତିକ

ବନ୍ଦର ରହିଥିଲା । ସେହିସବୁ ବନ୍ଦରମାନଙ୍କ ମଧ୍ୟରେ ତାମ୍ରଲିପ୍ତ, ଅଜିତା, ପିପିଲି, ଦଶାର୍ଣ୍ଣ, ଚେଲିତୋଳ, ଦନ୍ତପୁରୀ, ମାଣିକପାଟଣା, ପାଲୁର, ଗଞ୍ଜାମ ପ୍ରଭୃତି ବିଶ୍ୱ ପ୍ରସିଦ୍ଧିଲାଭ କରିଥିଲା । ପୁରୀ, ବାଲେଶ୍ୱର, ମାଣିକପାଟଣା ପ୍ରଭୃତି ସ୍ଥାନରୁ ପ୍ରାଚୀନ ବୈଦେଶିକ ମୁଦ୍ରା ମିଳିଥିବାରୁ ପ୍ରମାଣିତ ହୁଏ । ଓଡ଼ିଶାବାସୀଙ୍କର ଦରିଆପାରି ଦେଶମାନଙ୍କ ସହିତ ଖ୍ରୀଷ୍ଟପୂର୍ବ କାଳରୁ ସାମୁଦ୍ରିକ ବାଣିଜ୍ୟ ସଂପର୍କ ରହିଥିଲା । ବୌଦ୍ଧ ଧର୍ମଯାଜକ ବିଜ୍ଞଦତ୍ତ ସ୍ୱରଚିତ ବୁଦ୍ଧ ଜୀବନ ଚରିତରେ ଓଡ଼ିଶାର ଅଜିତ ବନ୍ଦର ସଂପର୍କରେ ଉଲ୍ଲେଖ କରିଛନ୍ତି । ତାଙ୍କ ବର୍ଣ୍ଣନାନୁସାରେ ବ୍ରହ୍ମଦେଶର ଦୁଇଭାଇ ବୋଇତରେ ପାଞ୍ଚ ଶହ ଶଗଡ଼ ପଣ୍ୟ ଦ୍ରବ୍ୟ ଆଣି ଅଜିତ ବନ୍ଦରରେ ପହଞ୍ଚିଥିଲେ ଏବଂ ସେଠାରୁ ସ୍ଥଳପଥରେ ମଗଧ ଯାତ୍ରା କରିଥିଲେ । ଏହା ଖ୍ରୀଷ୍ଟପୂର୍ବ ପଞ୍ଚମ-ଷଷ୍ଠ ଶତାବ୍ଦୀ ପ୍ରସଙ୍ଗ ହେଲେ ହେଁ ଅଦ୍ୟାବଧି ଅଜିତ ବନ୍ଦର ପରିଚିହ୍ନିତ ହୋଇପାରିନାହିଁ । ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ମଗଧରେ ଚନ୍ଦ୍ରଗୁପ୍ତ ମୌର୍ଯ୍ୟ ଶାସନ ପ୍ରତିଷ୍ଠା କରି ସମଗ୍ର ଭାରତ ଜୟ କଲେ ହେଁ ସମୃଦ୍ଧିଶାଳୀ ଓଡ଼ିଶା ଜୟକରି ପାରିନଥିଲେ । ତଦୀୟମନ୍ତ୍ରୀ ଚାଣକ୍ୟ ସ୍ୱରଚିତ ଅର୍ଥଶାସ୍ତ୍ରରେ ସମୁଦ୍ରଯାତ୍ରା ଓ ପୋତ ନିର୍ମାଣ ସଂପର୍କରେ ସବିଶେଷ ସୂଚନା ରହିଛି । ଅନୁମିତ ହୁଏ, କଳିଙ୍ଗ ବା ଓଡ଼ିଶାବାସୀଙ୍କ ନୌଯାତ୍ରା ଓ ପୋତ ନିର୍ମାଣ ହିଁ ଚାଣକ୍ୟଙ୍କ ଦ୍ୱାରା ବର୍ଣ୍ଣିତ, କାରଣ ଚାଣକ୍ୟଙ୍କ ଉଲ୍ଲେଖ ଅନୁଯାୟୀ ଆଷାଢ଼ ମାସଠାରୁ କାର୍ତ୍ତିକ ମାସ ନୌଯାତ୍ରା ନିମିତ୍ତ ପ୍ରଶସ୍ତ । ଏବେ ମଧ୍ୟ ଓଡ଼ିଶାରେ କାର୍ତ୍ତିକ ମାସରେ ବୋଇତ ବନ୍ଦାଣ ହେଉଛି । ଏଥିରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ ଓଡ଼ିଶାରେ ଖ୍ରୀଷ୍ଟପୂର୍ବ କାଳରୁ ସାମୁଦ୍ରିକ ନୌବାଣିଜ୍ୟ ଅବ୍ୟାହତ ଥିଲା, ଯାହାକି ସୁଦୀର୍ଘ ପରମ୍ପରାରେ ପ୍ରତିଫଳିତ । ଯାତ୍ରା ଆରମ୍ଭ ଓ ପ୍ରତ୍ୟାବର୍ତ୍ତନ ସମୟରେ ସାଧବବୋହୂମାନେ ଅର୍ଘ୍ୟଥାଳି ନେଇ, ହୁଳହୁଳି ପକାଇ ବୋଇତ ବନ୍ଦାଉ ଥିଲେ । ବର୍ତ୍ତମାନ ଓଡ଼ିଆଙ୍କ ସାମୁଦ୍ରିକ ବାଣିଜ୍ୟ ଲୋପ ପାଇଥିଲେ ହେଁ ପୂର୍ବଗୌରବର ପରମ୍ପରା ବିଦ୍ୟମାନ । ଅଧିକନ୍ତୁ, ସାର୍ବଜନୀନ, ପାରିବାରିକ ଓ ବ୍ୟକ୍ତିଗତ ଭାବରେ ଏହା ପାଳିତ ହୋଇ ଜାତୀୟ ମହୋତ୍ସବ ସ୍ୱରୂପରେ ପ୍ରତିଭାତ ।

ପ୍ରଥମ ଶତାବ୍ଦୀ ଥିଲା ଓଡ଼ିଶାର ଗୌରବୋଜ୍ଜ୍ୱଳ ଶତାବ୍ଦୀ । ସେହି ସମୟରୁ ଓଡ଼ିଆମାନେ ନୌବାଣିଜ୍ୟ ମାଧ୍ୟମରେ ବାଲି, ଜାଭା,ସୁମାତ୍ରା, ବ୍ରହ୍ମଦେଶ ଓ ଶ୍ରୀଲଙ୍କା ପ୍ରଭୃତି ଦେଶ ସହିତ ସ୍ଥାୟୀ ସଂପର୍କ ସ୍ଥାପନ କରିସାରିଥିଲେ । ଇତିହାସ ବର୍ଣ୍ଣନାନୁସାରେ ୭୫ ଖ୍ରୀଷ୍ଟାବ୍ଦରେ କଳିଙ୍ଗରୁ ଅନେକ ବ୍ୟକ୍ତି ସାମୁଦ୍ରିକ ବାଣିଜ୍ୟ ଉଦ୍ଦେଶ୍ୟରେ ଜାଭା ଦ୍ୱୀପକୁ ଯାଇ ସେଠାରେ ସ୍ଥାୟୀ ଭାବରେ ବସବାସ ଆରମ୍ଭ କରିଥିଲେ । ସେହି ବର୍ଷଠାରୁ ଜାଭାରେ ଏକ ଅଙ୍କ ପ୍ରଚଳନ ହୋଇଆସୁଅଛି । ଏବେ ବି କଳିଙ୍ଗ ବଂଶଧରଗଣ ସେଠାରେ କ୍ଲିଙ୍ଗ ନାମରେ ପରିଚିତ । ସେହି ପ୍ରଥମ ଶତାବ୍ଦୀରେ ଓଡ଼ିଶାର କିଛି ବ୍ୟକ୍ତି ଜଳପଥରେ ବାଣିଜ୍ୟ ଉଦ୍ଦେଶ୍ୟରେ ବ୍ରହ୍ମଦେଶ ଯାଇ ଉପନିବେଶ ସ୍ଥାପନ କରିଥିଲେ । ସେମାନେ ତତ୍‌କାଳୀନ ପ୍ରୋମ୍ ନଗରୀର ନାମ ଶ୍ରୀକ୍ଷେତ୍ର ରଖିଥିଲେ । ବାଲି ଓ ଅନ୍ୟାନ୍ୟ ଦ୍ୱୀପରେ ବହୁ ଓଡ଼ିଆ ଯାଇ ରହିଛନ୍ତି । ସେହିସବୁ ସ୍ଥାନରେ ଅଦ୍ୟାବଧି ଓଡ଼ିଆ ସଂସ୍କୃତି ଉଜ୍ଜୀବିତ ରହିଛି । ନୌବାଣିଜ୍ୟ ମାଧ୍ୟମରେ ସେହିକାଳରୁ ବ୍ରହ୍ମଦେଶ, ଥାଇଲାଣ୍ଡ, କାମ୍ବୋଡ଼ିଆ, ଶ୍ରୀଲଙ୍କା, ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ଚିନ୍, ରୋମ୍, ଜାପାନ ତଥା ଆଫ୍ରିକା ସହିତ ଓଡ଼ିଶାର ବାଣିଜ୍ୟିକ ଓ ସାଂସ୍କୃତିକ ସମ୍ପର୍କ ରହିଛି । ଓଡ଼ିଆମାନେ ହିଁ ସେହିସବୁ ଦେଶରେ ଜଗନ୍ନାଥ ଓ ବୌଦ୍ଧ ସଂସ୍କୃତି ପ୍ରଚାର କରିଥିଲେ । ଏହା ସତ୍ୟ ଯେ, ଓଡ଼ିଆଙ୍କ ନୌବାଣିଜ୍ୟ ଯୋଗୁଁ ବୌଦ୍ଧ ଧର୍ମ ଆବିଶ୍ୱ ପ୍ରସାରିତ ହୋଇଥିଲା ।

ପ୍ରଥମ ଶତାବ୍ଦୀରେ ଟଲେମି ସ୍ୱରଚିତ ଭୌଗଳିକ ବିବରଣୀରେ ଲେଖିଛନ୍ତି ଯେ ଓଡ଼ିଶାରେ ବହୁ ବନ୍ଦର ଓ ନଗର ରହିଥିଲା । ସେଗୁଡ଼ିକ ମଧ୍ୟରେ ନନିଗେନ (ପୁରୀ), କଟିକର୍ଦ୍ଦମ(କଟକ), କୋଣଗର (କୋଣାର୍କ), କୋଲାମ୍ବ (ବାଲେଶ୍ୱର), ପ୍ଲୁରୁ (ଜଳେଶ୍ୱର), ମନଦ (ମହାନଦୀ), ତିଲିସ୍ (ବ୍ରାହ୍ମଣୀ), ଦୋସ୍ୱରମ (ବୈତରଣୀ), ଅଦମସ୍ (ସୁବର୍ଣ୍ଣରେଖା), ପକୁରା (ଗଞ୍ଜାମ) ପ୍ରଭୃତି ପ୍ରଧାନ । ଏଥିରୁ ଓଡ଼ିଶାର ତତ୍କାଳୀନ ଉପଲବ୍ଧ ହୋଇଥାଏ । ମନେହୁଏ, ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ସୁବର୍ଣ୍ଣରେଖା, ବୁଢ଼ାବଳଙ୍ଗ, ଋଷିକୁଲ୍ୟା ପ୍ରଭୃତି ନଦୀରେ ଆଭ୍ୟନ୍ତରୀଣ ଅଞ୍ଚଳରୁ ପଣ୍ୟଦ୍ରବ୍ୟ ଆସି ନଦୀ ମୁହାଣରେ ଥିବା ବନ୍ଦର ନଗରୀରେ ଏକତ୍ରିତ ହୋଇଥିଲା ଏବଂ ବାଣିଜ୍ୟ ପୋତରେ ସାଗରପାରି ଦେଶମାନଙ୍କୁ ଯାଉଥିଲା । ସେହି ସମୟରେ ଓଡ଼ିଶା ଏକ ନୌବାଣିଜ୍ୟ ସମୃଦ୍ଧ ରାଜ୍ୟ ଥିଲା ବୋଲି ପ୍ରମାଣିତ ହୁଏ । ଏହାର ଅନ୍ତର୍ନୌବାଣିଜ୍ୟ ଓ ବାହ୍ୟ ନୌବାଣିଜ୍ୟ ସୁସଂହତ ଥିଲା । ଅନ୍ତଃବାଣିଜ୍ୟ ଦୃଷ୍ଟିରୁ ଜଳେଶ୍ୱର, ବାଲେଶ୍ୱର, ବାମନଘାଟୀ, କଟକ, ଯାଜପୁର, ଆନନ୍ଦପୁର, ଚାନ୍ଦବାଲି, ବାରକୋଟ, ତାଳଚେର, ଭୁବନ, ଆଦିପୁରା, ଜେନାପୁର, ଇନ୍ଦିପୁର, ପଞ୍ଚାମୁଣ୍ଡାଇ, ଆସ୍କା, ସମ୍ବଲପୁର, ସୋନପୁର ପ୍ରଭୃତି ସମୃଦ୍ଧ ବାଣିଜ୍ୟ ନଗରୀ ଥିଲା । ପେରିପ୍ଲିସ୍ ନାମକ ପୁସ୍ତକରୁ ଜଣାଯାଏ, ପ୍ରଥମ ଶତାବ୍ଦୀରେ ଓଡ଼ିଶାରେ ପ୍ରଚୁର ହାତୀଦାନ୍ତ ମିଳୁଥିଲା । କଳିଙ୍ଗର ସୂକ୍ଷ୍ମବସ୍ତ୍ର ଓ

ପଟ୍ଟବସ୍ତ୍ର ସାଗରପାରି ଦେଶମାନଙ୍କରେ ଆଦୃତ ହେଉଥିଲା । ଓଡ଼ିଆ ସାଧବମାନେ ଏହିସବୁ ଦ୍ରବ୍ୟ ବିକ୍ରୟ କରି ବିଦେଶରୁ ପ୍ରଚୁର ସୁନା, ମୁକ୍ତା ଆଣୁଥିଲେ । ତେଣୁ ପ୍ରକୃତପକ୍ଷେ ପ୍ରଥମ ଶତାବ୍ଦୀ ଥିଲା ଓଡ଼ିଆ ନୌବାଣିଜ୍ୟର ସୁବର୍ଣ୍ଣଯୁଗ । ଗୌରବର କଥା, ଏହି ଶତାବ୍ଦୀରେ ଓଡ଼ିଆମାନେ ଦରିଆପାରି ଦେଶମାନଙ୍କରେ ଭାରତୀୟ ସଂସ୍କୃତିର ପ୍ରସାର ଘଟାଇଥିଲେ, ଯାହାକି ବର୍ତ୍ତମାନ ବିଭିନ୍ନ ସ୍ଥାନର ଭୂଖନନରୁ ସୁସ୍ପଷ୍ଟ । ସେହିସବୁ ଦେଶର ଅଭିଲେଖରୁ ପାଲି, ସଂସ୍କୃତ ଭାଷାର ନିଦର୍ଶନ ମିଳିଛି । ବୌଦ୍ଧ, ଶାକ୍ତ, ଶୈବ, ବୈଷ୍ଣବ ଓ ଜଗନ୍ନାଥ ଧର୍ମ ପ୍ରଚାରରେ ଓଡ଼ିଶା ନୌବାଣିଜ୍ୟର ଭୂମିକା ଉଲ୍ଲେଖନୀୟ ।

ତୃତୀୟ ଶତାବ୍ଦୀରେ କଳିଙ୍ଗ ରାଜ ଗୁହଶିବ ଆପଣାର କନ୍ୟା ହେମମାଳା ଓ ଜାମାତା ଦନ୍ତକୁମାରଙ୍କ ହସ୍ତରେ ସମୁଦ୍ର ପଥରେ ଭଗବାନ ବୁଦ୍ଧଙ୍କର ପବିତ୍ର ଦନ୍ତ ସିଂହଳ ଅଧିପତି ମହାସେନଙ୍କ ନିକଟକୁ ପଠାଇଥିଲେ । ଦନ୍ତବଂଶ, ଲଳିତବିସ୍ତର ଓ ସିଉକି ପ୍ରଭୃତି ଗ୍ରନ୍ଥରୁ ଚୀନ ସହିତ ଓଡ଼ିଶାର ସାଂସ୍କୃତିକ ସଂପର୍କ ସ୍ପଷ୍ଟ ପ୍ରମାଣିତ । ନୌବାଣିଜ୍ୟ କୁଶଳୀ ଓଡ଼ିଆମାନେ ପ୍ରାଚ୍ୟ ଭୂଖଣ୍ଡ ତଥା ଆଫ୍ରିକା ମହାଦେଶର ବିଭିନ୍ନ ଅଞ୍ଚଳରେ ଏହି ସମୟରେ ଉପନିବେଶ ସ୍ଥାପନ କରିଥିଲେ । ଐତିହାସିକଙ୍କ ମତରେ ସିଂହଳ ଓ ବ୍ରହ୍ମ ଦେଶର ରାଜବଂଶ ଓଡ଼ିଆ କ୍ଷତ୍ରିୟ କୁଳୋଦ୍ଭବ । ସୁବର୍ଣ୍ଣ ଦୀପରେ ଓଡ଼ିଆମାନେ ଦୀର୍ଘ ୩୦୦ ବର୍ଷ ଧରି ରାଜ୍ୟ ବିସ୍ତାର କରିଥିଲେ । ଜାଭାରେ ପ୍ରଚଳିତ କିମ୍ବଦନ୍ତୀ ଅନୁଯାୟୀ କଳିଙ୍ଗ ରାଜା କୋଡ଼ିଏ ହଜାର ପରିବାରକୁ ଜାଭା ପଠାଇଥିଲେ ଏବଂ ସେମାନେ ତିନିପୁରୁଷ ଧରି ସେଠାରେ ରାଜତ୍ୱ କରିଥିଲେ । ଓଡ଼ିଆମାନେ ବାଲିଦୀପକୁ ଯାତ୍ରା କରିବାର ସ୍ମାରକୀ ସଦୃଶ ଅଦ୍ୟାବଧି କଟକରେ ବାଲିଯାତ୍ରା ଅନୁଷ୍ଠିତ ହେଉଅଛି । ଓଡ଼ିଶାର ଆଭ୍ୟନ୍ତରୀଣ ଅଞ୍ଚଳରୁ ବିଭିନ୍ନ ସାମଗ୍ରୀ ନଦୀପଥରେ ଆସି କଟକ ମହାନଦୀ କୂଳରେ ଏକତ୍ର ହେଉଥିଲା । ଓଡ଼ିଆ ବଣିକମାନେ ସେହି ସବୁ ସାମଗ୍ରୀ ଧରି ବାଣିଜ୍ୟ ପୋତରେ ଦୂରଦୂରାନ୍ତ ଦେଶକୁ ଯାତ୍ରା କରୁଥିଲେ । ସେମାନଙ୍କର ବାଣିଜ୍ୟ ତରୀ ମହାନଦୀ ବକ୍ଷରେ ସାଗର ଅଭିମୁଖେ ଯାତ୍ରା କରିବାର ଅବ୍ୟବହିତ ପୂର୍ବରୁ ବୋଇତ ବନ୍ଦାଣ, ଶୁଭ ବିଦାୟ ତଥା ଅନ୍ତର୍ଦେଶୀୟ ଓ ବହିର୍ଦେଶୀୟ ବାଣିଜ୍ୟ ଉଦ୍ଦେଶ୍ୟରେ ଏକତ୍ରିତ ଜନସମାଗମରୁ ସୃଷ୍ଟି ହୋଇଥିଲା ବାଲିଯାତ୍ରା । ସଂସ୍କୃତିର ପ୍ରବହମାନ ଧାରାରେ ଏହା ଏକ ବାର୍ଷିକ ବାଣିଜ୍ୟ ମହୋତ୍ସବର ମାନ୍ୟତା ଲାଭ କଲା ତଥା ଅଦ୍ୟାବଧି ଏହାର ଅବିଚ୍ଛିନ୍ନ ଧାରା ପ୍ରବାହିତ ।

ଚୀନ ପରିବ୍ରାଜକ ଇତିସିଂ ମଧ୍ୟ ଓଡ଼ିଆମାନଙ୍କ ବାଣିଜ୍ୟ ତରୀରେ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ । ସେ ବ୍ରହ୍ମଦେଶର ପ୍ରୋମ୍ ନଗରୀରେ ଓଡ଼ିଆମାନଙ୍କ ଦ୍ୱାରା ପ୍ରତିଷ୍ଠିତ ଶ୍ରୀକ୍ଷେତ୍ର ସଂପର୍କରେ ଉଲ୍ଲେଖ କରିଛନ୍ତି । ଚତୁର୍ଥ ଶତାବ୍ଦୀରେ ଅନ୍ୟତମ ଚୀନ ପରିବ୍ରାଜକ ଫାହିୟାନ ଓଡ଼ିଶାର ତାମ୍ରଲିପ୍ତ ବନ୍ଦରରୁ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରିଥିଲେ । ସେ ଜାଭାରେ ଓଡ଼ିଆଙ୍କ ଦ୍ୱାରା ବ୍ରାହ୍ମଣ୍ୟଧର୍ମ ପ୍ରତିଷ୍ଠା କରାଯାଇଥିବା ଲେଖିଛନ୍ତି । ସେ ଯେଉଁ ବାଣିଜ୍ୟ ପୋତରେ ଯାତ୍ରା କରିଥିଲେ ତାହା ଓଡ଼ିଶାର ବ୍ରାହ୍ମଣ ନାବିକମାନେ ଚଳାଉଥିଲେ । ଏଥିରୁ ପ୍ରମାଣିତ ହୁଏ ଜାତି, ବର୍ଣ୍ଣ, ନିର୍ବିଶେଷରେ ଓଡ଼ିଆମାନେ ନୌବାଣିଜ୍ୟକୁ ଆପଣାର କରି ନେଇଥିଲେ । ନୌବାଣିଜ୍ୟ ଯୋଗୁଁ ଓଡ଼ିଶା ସମୃଦ୍ଧ ହୋଇଥିବାରୁ ଅନେକ ସମୟରେ ଯବନ ଓ ଜଳଦସ୍ୟୁମାନେ ଓଡ଼ିଶା ଆକ୍ରମଣ କରୁଥିଲେ । ମାଦଳାପାଞ୍ଜି ବର୍ଣ୍ଣନାନୁସାରେ ଯବନ ରକ୍ତବାହୁ ସମୁଦ୍ର ପଥରେ ଆସି ପୁରୀ ଆକ୍ରମଣ କରିଥିଲା । ଶାମ୍ବ ପୁରାଣରେ ସେମାନେ ବନ୍ଦରମାନଙ୍କରେ କର ଆଦାୟ କରୁଥିଲେ । ପ୍ରତିବଦଳରେ ନଉ୍ବାରାମାନେ ଜଳଦସ୍ୟୁ ଆକ୍ରମଣରୁ ବଣିକମାନଙ୍କୁ ସୁରକ୍ଷା ପ୍ରଦାନ କରୁଥିଲେ । ସେହି ସମୟରେ ହୁଗୁଳି, ବାଲେଶ୍ୱର, ପିପିଲି, ମୁରଯଂ, ବିଲ୍‌ମାରି ଓ ଯଶୋର ପ୍ରଭୃତି ସ୍ଥାନରେ ଜଳ ଜାହାଜ ନିର୍ମାଣ କରାଯାଉଥିଲା । ବଙ୍ଗ ନବାବ ସାଏଗସ୍ରା ଖାଁ ବନ୍ଦରମାନଙ୍କରୁ କର ଆଦାୟ କରୁଥିଲେ ତଥା ଫିରିଙ୍ଗି ଜଳଦସ୍ୟୁଙ୍କୁ ଦମନ କରୁଥିଲେ । ବୋରେ ସାହେବଙ୍କ ବର୍ଣ୍ଣନାନୁସାରେ ବାଲେଶ୍ୱର ଓ ପିପିଲିରେ ସୁଦୃଢ଼ ଜାହାଜ ନିର୍ମାଣ ହେଉଥିଲା ଏବଂ ସେହି ସ୍ଥାନମାନଙ୍କରୁ ଦରିଆପାରି ଦେଶମାନଙ୍କୁ ବାଣିଜ୍ୟ ତରୀ ଯାତ୍ରା କରୁଥିଲା । ଭକ୍ତକବି ଦୀନକୃଷ୍ଣ ଦାସ ସ୍ୱରଚିତ ପ୍ରସ୍ତାବ ସିନ୍ଧୁ ଗ୍ରନ୍ଥରେ ବାଣିଜ୍ୟ ତରୀ ନିର୍ମାଣ ପ୍ରଣାଳୀ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ଏହି ରଚନାରେ ସାମୁଦ୍ରିକ ବାଣିଜ୍ୟର ବହୁଳ ବର୍ଣ୍ଣନା ରହିଛି । କବିକର୍ଣ୍ଣଙ୍କ ସହିତ ସତ୍ୟନାରାୟଣ ଷୋଳପାଲାରେ ବାଣିଜ୍ୟ ପୋତର ମାର୍ଗ ବର୍ଣ୍ଣିତ । ପାଲା ବର୍ଣ୍ଣନାରୁ ଜଣାଯାଏ, ଓଡ଼ିଶାର ସାଧବ ପୁଅମାନେ ଓଡ଼ିଆ ସହିତ ସଂସ୍କୃତ, ପାଲି, ବଙ୍ଗଳା, ନାଗରୀ, ଫରାସୀ ପ୍ରଭୃତି ବହୁଭାଷା ଶିକ୍ଷା କରୁଥିଲେ, ଯାହାକୁ ସେମାନେ ଦରିଆପାରି ଦେଶମାନଙ୍କରେ ବ୍ୟବହାର କରି ବାଣିଜ୍ୟ କରୁଥିଲେ । ଏତଦ୍‌ଭିନ୍ନ ଉପେନ୍ଦ୍ର ଭଞ୍ଜଙ୍କ ରଚନା ଓ ଅନ୍ୟାନ୍ୟ ଲୋକ ସାହିତ୍ୟରୁ ଓଡ଼ିଶାର ମଧ୍ୟଯୁଗୀୟ ନୌବାଣିଜ୍ୟ ସଂପର୍କରେ ଅନେକ ସୂଚନା ମିଳିଥାଏ । ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଏଫ୍ ବଳଜର ସଲ୍‌ଭିନସ କେତେକ ଆଦର୍ଶ ବାଣିଜ୍ୟ ପୋତର ବର୍ଣ୍ଣନା କରିଛନ୍ତି । ତାଙ୍କ ମତରେ ବାଲେଶ୍ୱର ହିଁ ପୂର୍ବ

ଭାରତର ପ୍ରବେଶ ଦ୍ୱାର ଥିଲା । ଏଠାରୁ ବହୁ ଜାହାଜ ୟୁରୋପ ଓ ଆଫ୍ରିକା ମହାଦେଶର ବହୁ ବନ୍ଦରକୁ ବାଣିଜ୍ୟ ଉଦ୍ଦେଶ୍ୟରେ ଯାଉଥିଲା ତଥା ବହୁ ବିଦେଶୀ ଜାହାଜ ଆସୁଥିଲା । ଏତଦ୍‌ଭିନ୍ନ ବାଲେଶ୍ୱର ବନ୍ଦରରୁ ଲୁଗା ଓ ମାଟିହାଣ୍ଡି ବିଦେଶକୁ ରପ୍ତାନୀ କରାଯାଉଥିଲା । ବ୍ୟାସକବି ଫକୀର ମୋହନଙ୍କ ଆତ୍ମଜୀବନରୁ ଜଣାଯାଏ, ଉନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଓଡ଼ିଶାର ନୌବାଣିଜ୍ୟ ଅବ୍ୟାହତ ରହିଥିଲା ।

ବିଂଶ ଶତାବ୍ଦୀରେ ଓଡ଼ିଶାର ନୌବାଣିଜ୍ୟ ସଂପୂର୍ଣ୍ଣ ଲୋପ ପାଇଗଲା । ଏହାର କାରଣ ହେଉଛି, ୟୁରୋପୀୟମାନେ ଏକଚାଟିଆ ବାଣିଜ୍ୟ କାରବାର କରିବା ନିମିତ୍ତ କଟକଣା ଜାରି କଲେ । ଓଡ଼ିଆଙ୍କ ପାଲଟଣା ଜାହାଜ ପରିବର୍ତ୍ତେ ସେମାନେ ଉନ୍ନତ ଯନ୍ତ୍ରଚାଳିତ ଜାହାଜ ବ୍ୟବହାର କଲେ । ନଦୀମୁହାଣରେ ବାଲିଚଢ଼ା ସୃଷ୍ଟି ହୋଇ ଜାହାଜ ଚଳାଚଳରେ ଅସୁବିଧା ସୃଷ୍ଟି ହେଲା । ପୋତାଶୟଗୁଡ଼ିକ ଅସୁରକ୍ଷିତ ହେଲା । ସର୍ବୋପରି ବାଣିଜ୍ୟ କୁଶଳୀ ଇଂରେଜମାନେ ଶାସକ ହୋଇଥିବାରୁ ଓଡ଼ିଆ ନାବିକମାନଙ୍କୁ ସୁରକ୍ଷା ପ୍ରଦାନ କଲା ନାହିଁ । ବିଶେଷତଃ ନଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଆ ଜାତିର ଅଣ୍ଟା ଭାଙ୍ଗିଗଲା ଏବଂ ପ୍ରୋତ୍ସାହନ ଓ ଆର୍ଥିକ କାରଣ ନିମିତ୍ତ ଓଡ଼ିଆଙ୍କ ନୌବାଣିଜ୍ୟର ପତନ ଘଟିଲା । ପରିସ୍ଥିତି ଏପରି ହେଲା ଯେ ଯେଉଁ ଓଡ଼ିଆମାନେ ବର୍ମା ଦେଶରେ ସାମୁଦ୍ରିକ ବାଣିଜ୍ୟ ସମୃଦ୍ଧ ଜାତି ଭାବରେ ପରିଚୟ ସୃଷ୍ଟି କରିଥିଲେ, ସେମାନଙ୍କ ଜୀବନ ରକ୍ଷା ଲାଗି ରେଙ୍ଗୁନରୁ ଚାଉଳ ଜାହାଜ ଯୋଗେ ଅଣାଗଲା । ପୃଥିବୀର ଏକ ବାଣିଜ୍ୟ ସମୃଦ୍ଧ ନୌବହନ ଜାତିର ପତନ ନିମିତ୍ତ ଏହା ଥିଲା କୁଚକ୍ରୀ ଇଂରେଜ ଶାସକଙ୍କ ନୀତିବିହୀନ ବାଣିଜ୍ୟ କୌଶଳ । ଏଣୁ ନିଃସନ୍ଦେହରେ ବ୍ୟକ୍ତ କରାଯାଇପାରେ ଯେ ଓଡ଼ିଆଙ୍କ ନୌବାଣିଜ୍ୟ ଲୋପ ହେବା ପଛରେ ବେପାରୀ ଇଂରେଜମାନଙ୍କ ପଚ୍ଛନ୍ନ ଭୂମିକା ରହିଥିଲା ।

ଖ୍ରୀଷ୍ଟପୂର୍ବ କାଳରୁ ଓଡ଼ିଶାରେ ନୌବାଣିଜ୍ୟର ଉନ୍ମେଷ ଘଟି ଓଡ଼ିଆ ସଂସ୍କୃତି ଓ ଶିଳ୍ପ ନୈପୁଣ୍ୟ ଆବିଶ୍ୱ ପ୍ରସାର ହୋଇଥିଲା । ନୌବାଣିଜ୍ୟ କୁଶଳୀ ଓଡ଼ିଆମାନେ ଦରିଆପାରି ଦେଶମାନଙ୍କରେ ବାଣିଜ୍ୟ କରି ଅସରନ୍ତି ଧନଦୌଲତ ବୋହିଆଣି ପ୍ରାଚୀନ କାଳରୁ ଓଡ଼ିଶାକୁ ସମୃଦ୍ଧ କରିଥିଲେ । ଓଡ଼ିଆ ବଣିକମାନଙ୍କ ଦ୍ୱାରା ହିଁ ବିଦେଶରେ ଜଗନ୍ନାଥ, ବୌଦ୍ଧ, ଶୈବ, ବୈଷ୍ଣବ, ଶାକ୍ତ ଓ ବୈଦିକ ସଂସ୍କୃତି ଦରିଆପାରି ଦେଶମାନଙ୍କରେ ପ୍ରସାର ହୋଇଥିଲା । କାମ୍ବୋଡ଼ିଆରେ ହରିହର ଉପାସନା, ଭିଏତ୍‌ନାମାରେ ରାମାୟଣର ପ୍ରଚାର, ପୁରୁଷୋତ୍ତମ ମନ୍ଦିର ଓ ଭଗବତୀ ମନ୍ଦିର, ଜାଭାର ବ୍ରାହ୍ମଣ୍ୟଧର୍ମ, ବ୍ରହ୍ମଦେଶର ବୌଦ୍ଧ ଓ ଜଗନ୍ନାଥ ଧର୍ମ ଏସବୁ ହେଉଛି ଓଡ଼ିଆଙ୍କ ନୌବାଣିଜ୍ୟର ସତ୍‌ଫଳ । ନୌବାଣିଜ୍ୟ ଦ୍ୱାରା ଚୀନ, ଜାପାନ, ଶ୍ରୀଲଙ୍କା, ଇଣ୍ଡୋନେସିଆ ପ୍ରଭୃତି ଦେଶ ସହିତ ଓଡ଼ିଶାର ବାଣିଜ୍ୟିକ ଓ ସାଂସ୍କୃତିକ ସଂପର୍କ ରହିଥିଲା । ନୌବାଣିଜ୍ୟ ମାଧ୍ୟମରେ ହିଁ ଓଡ଼ିଆମାନେ ବିଭିନ୍ନ ଦେଶରେ ଉପନିବେଶ ସ୍ଥାପନ କରିଥିଲେ । ମୋଟ ଉପରେ କହିଲେ ଓଡ଼ିଆଙ୍କର ଅର୍ଥନୈତିକ, ରାଜନୈତିକ, ସାଂସ୍କୃତିକ ଓ ଧାର୍ମିକ ଜୀବନର ଅଭିବୃଦ୍ଧି ନୌବାଣିଜ୍ୟ ଦ୍ୱାରା ହିଁ ହୋଇଥିଲା । ଅପର ପକ୍ଷରେ ନୌବାଣିଜ୍ୟ ଦ୍ୱାରା ଓଡ଼ିଆମାନେ ହିଁ ଭାରତୀୟ ସଂସ୍କୃତିର ମର୍ଯ୍ୟାଦାବନ୍ତ ଆତ୍ମ ପରିଚୟ ପ୍ରଦାନ ପୂର୍ବକ ଆନ୍ତର୍ଜାତୀୟ ସୁଖ୍ୟାତି ଅର୍ଜନ କରିଥିଲେ । ନୌବାଣିଜ୍ୟ ହିଁ ଓଡ଼ିଶାକୁ ଏକ ସାମୁଦ୍ରିକ ବାଣିଜ୍ୟ ସମୃଦ୍ଧ, ଐଶ୍ୱର୍ଯ୍ୟ ପରିପୂର୍ଣ୍ଣ ବିଭବଶାଳୀ ରାଜ୍ୟର ମାନ୍ୟତା ପ୍ରଦାନ କରିଥିଲା । ଆଜି ଓଡ଼ିଆଙ୍କର ନୌବାଣିଜ୍ୟ ନଥିଲେ ହେଁ ପ୍ରାଚୀନ ପରମ୍ପରା, ସଂସ୍କୃତି, ଜାତୀୟ ଜୀବନ ତଥା ଗୌରବୋଜ୍ଜ୍ୱଳ ସ୍ମୃତିର ସ୍ୱାକ୍ଷର ବହନ କରି ବାଲିଯାତ୍ରା ଓ ବୋଇତ ବନ୍ଦାଣ ଏକ ଜାତୀୟ ମହୋତ୍ସବ ସ୍ୱରୂପରେ ପ୍ରତିଭାତ ।

ମାର୍ଥାପୁର ଶାସନ
ଢେଙ୍କାନାଳ– ୭୫୯୦୨୩



# ଆଲୋକ ବନ୍ଦନାର ପର୍ବ: ଦୀପାବଳି

ଡକ୍ଟର ଶରତ ଚନ୍ଦ୍ର ପରିଡା

କାଶ୍ମୀରରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷର ପୁରପଲ୍ଲୀରେ ମହାସମାରୋହରେ ପାଳିତ ହେଉଥିବା ମହୋତ୍ସବର ନାମ ଦୀପାବଳି । ଯେମିତି ପ୍ରସିଦ୍ଧ ସେମିତି ଲୋକପ୍ରିୟ । ଭାରତ ମାଟିରେ ଏହାର ଗୌରବ ବଜାୟ ରହିବା ସହିତ ବିଦେଶ ଭୂଇଁରେ ମଧ୍ୟ ଏହାର ମହିମା ଅକ୍ଷୁଣ୍ଣ ରହିଛି । ବୈଦିକ ଯୁଗରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଦୀପାଲୋକର ମହନୀୟତ ପ୍ରତିପାଦିତ ହୋଇଛି । ରାମାୟଣ, ମହାଭାରତ, ପୁରାଣ ଇତିହାସ ପୃଷ୍ଠାରେ ଦୀପାବଳିର ସାମାଜିକ, ସାଂସ୍କୃତିକ ତଥା ଆଧ୍ୟାତ୍ମିକ ଭିତ୍ତିଭୂମି ଅତ୍ୟନ୍ତ ପ୍ରଭାବଶାଳୀ ତଥା ତାତ୍ପର୍ଯ୍ୟପୂର୍ଣ୍ଣ । ଯୁଗଯୁଗ ଧରି ଦୀପୋତ୍ସବର ପ୍ରେରଣାଦାୟୀ ବାର୍ତ୍ତା ଓ ସଙ୍କେତରେ ସାଧାରଣ ମଣିଷଟିର ଚେତନା ଜାଗ୍ରତ ହୋଇଥାଏ । ଏହି ଶାଶ୍ୱତ ଚେତନା ପ୍ରତି ମଣିଷ ନିକଟକୁ ସଂପ୍ରସାରିତ ହୋଇ ତାକୁ ଚିରନ୍ତନ ମୂଲ୍ୟବୋଧରେ ଉଦ୍‌ବୁଦ୍ଧ କରିଥାଏ । ଆର୍ଯ୍ୟ ପ୍ରଚେତାଗଣ ଦୀପାଲୋକର ମହିମାଗାନରେ ଶତମୁଖ ହୋଇଉଠିଛନ୍ତି । ଏହି ଲୋକପ୍ରସିଦ୍ଧ ପର୍ବ କେତେ ପ୍ରାଚୀନ ତାହା ଆକଳନ କରିବା ଏକ କଷ୍ଟସାଧ୍ୟ ବ୍ୟାପାର ।



କୀର୍ତ୍ତିମୟୀ କାର୍ତ୍ତିକ ମାସର ଅମାବାସ୍ୟା ତିଥିରେ ଦୀପାବଳି ମହୋତ୍ସବ ବଡ ଆନନ୍ଦ ଉଲ୍ଲାସରେ ପାଳିତ ହୋଇଥାଏ । 'ଦୀପ' ଶବ୍ଦର ଅର୍ଥ ଆଲୋକ, 'ଆବଳି'ର ଅର୍ଥ ଧାଡି । ଦୀପାବଳିର ଉତ୍ସବ ଆଲୋକମାଳାର ଉତ୍ସବ । ଘନ ଅନ୍ଧକାରକୁ କାଟି ଖଣ୍ଡଖଣ୍ଡ କରି ନାଶ କରିବାକୁ ହେଲେ ଗୋଟିଏ ଦୀପ ଯଥେଷ୍ଟ ନୁହେଁ । ଅଗଣିତ ଦୀପାଲୋକର ତେଜ ସେଥିପାଇଁ ଅତି ଜରୁରୀ ।

ଦୀପାବଳିର ଐତିହ୍ୟ ଓ ପରମ୍ପରା ଅତି ପ୍ରାଚୀନ ଓ ମହାନ୍ । ଏହି ଉତ୍ସବ ପାଳନ ପଛରେ ଅନେକ ପୌରାଣିକ ଉପାଖ୍ୟାନ ଓ କିମ୍ବଦନ୍ତୀ ରହିଛି । ଐତିହାସିକ କାହାଣୀ ଦ୍ୱାରା ମଧ୍ୟ ଦୀପୋତ୍ସବ ସମୃଦ୍ଧ ଅଟେ ।

ସମସ୍ତେ ଜାଣନ୍ତି ପିତୃଭକ୍ତ ପ୍ରଭୁ ଶ୍ରୀରାମଚନ୍ଦ୍ର ପିତୃସତ୍ୟ ପାଳନ କରି ଚଉଦବର୍ଷ ବନବାସ ପାଳନ କରିଥିଲେ । ଶରତ ଋତୁରେ ଦୁର୍ଗା ଦେବୀଙ୍କୁ ଆରାଧନା କରି ସେତୁବନ୍ଧ ନିର୍ମାଣ କରିଥିଲେ । ସୀତାଙ୍କୁ ହରଣ କରିଥିବା ରାବଣକୁ ବିନାଶ କରି ଅଧର୍ମ ଉପରେ ଧର୍ମର ବିଜୟ ପତାକା ଉଡାଇଥିଲେ । ସୀତା ଓ ଲକ୍ଷ୍ମଣଙ୍କୁ ସାଙ୍ଗରେ ଧରି ପୁଷ୍ପକ ବିମାନରେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ

କରିଥିଲେ । ଏହି ଦିନ ଥିଲା କାର୍ତ୍ତିକ ଅମାବାସ୍ୟା ତିଥି । ଅଯୋଧ୍ୟାବାସୀ ବଡ ଆନନ୍ଦ ଉଲ୍ଲାସରେ ସହସ୍ର ଆଲୋକର ପ୍ରଦୀପ ଜାଳି ବାଣଫୁଟାଇ ଶ୍ରୀରାମଚନ୍ଦ୍ରଙ୍କର ଏହି ପ୍ରତ୍ୟାବର୍ତ୍ତନ ଉତ୍ସବକୁ ସ୍ୱାଗତ କରିଥିଲେ । ପ୍ରଜାଗଣ ଦ୍ୱାରେ ଦ୍ୱାରେ ରମ୍ଭା ବୃକ୍ଷ, ପୂର୍ଣ୍ଣକଳସୀ ସ୍ଥାପନ କରିଥିଲେ । ଅନୁଷ୍ଠିତ ହୋଇଥିଲା ଶ୍ରୀରାମଚନ୍ଦ୍ରଙ୍କର ଅଭିଷେକୋତ୍ସବ । ପ୍ରଜାକୁଳର ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଗ୍ରହଣ କରି ସେ ଅଭିଭୂତ ହୋଇ ପଡିଥିଲେ । ସେ ହଠାତ୍ ସ୍ମରଣ କଲେ– ଯଦି ମୋର ପିତୃପୁରୁଷ ବଞ୍ଚିଥାନ୍ତେ ଏହି ଅଭିନନ୍ଦନ ଉତ୍ସବକୁ ଦେଖି କେତେ ଖୁସୀ ହୋଇନଥାନ୍ତେ । ତାଙ୍କର ଏହି କଥାକୁ ସ୍ମରଣ ରଖିବା ପାଇଁ ଆମେ ଆମର ପିତୃପୁରୁଷଙ୍କୁ ଏହି ପବିତ୍ର ଦିବସରେ ଦୀପଦାନ ସହିତ ପିଣ୍ଡଦାନ କରିଥାଉ । ଶ୍ରୀରାମଚନ୍ଦ୍ର ସମଗ୍ର ଭାରତବାସୀ ହିନ୍ଦୁ ଜାତିର ପରମ ଆରାଧ୍ୟ ଦେବତା ଭାବରେ ପୂଜିତ ହୋଇଥା'ନ୍ତି । ତେଣୁ ଉତ୍ତର ଭାରତରୁ ଏହି ପରମ୍ପରା ସମଗ୍ର ଦେଶରେ ସଂପ୍ରସାରିତ ହେବା ସ୍ୱାଭାବିକ ଅଟେ ।

ଦକ୍ଷିଣ ଭାରତରେ ଏହି ଦିନଟି ଗୁରୁତ୍ୱପୂର୍ଣ୍ଣ ଅଟେ ପ୍ରାଗ୍ ଜ୍ୟୋତିଷପୁରରେ ନରକାସୁର ନାମରେ ଜଣେ ଦୁର୍ଦ୍ଦାନ୍ତ ଅତ୍ୟାଚାରୀ ଅସୁର ରାଜା ଥିଲା । ସେ ଷୋହଳ ହଜାର ସୁନ୍ଦରୀ ରମଣୀଙ୍କୁ ଅନ୍ତଃପୁରରେ ବନ୍ଦୀ କରି ରଖିଥିଲା । ଶ୍ରୀକୃଷ୍ଣ ସତ୍ୟଭାମାଙ୍କ ସହାୟତାରେ ଦୀପାବଳି ପୂର୍ବଦିନ ତାକୁ ବଧ କରି ବନ୍ଦୀମାନଙ୍କୁ ମୁକ୍ତ କରିଥିଲେ । ସେଥିପାଇଁ ଏହି ଚତୁର୍ଦ୍ଦଶୀକୁ ନରକ ଚତୁର୍ଦ୍ଦଶୀ ବା 'ଭୂତ ଚତୁର୍ଦ୍ଦଶୀ' ରୂପେ ଲୋକେ ପାଳନ କରିଥା'ନ୍ତି । ଅମାବାସ୍ୟା ରାତିରେ ଅସୁର ବଳ ଉପରେ ଦୈବୀବଳର ବିଜୟ କାହାଣୀକୁ ସ୍ମରଣ କରି ଦ୍ୱାରକାପୁରବାସୀ ଘରେ ଘରେ ଦୀପ ଜାଳି ବିପୁଳ ଆନନ୍ଦରେ ନିଜକୁ ହଜାଇ ଦେଇଥିଲେ । ଶ୍ରୀମଦ୍‌ଭାଗବତ ପୁରାଣର କଥନିକା ଅନୁସାରେ ଏହି ସ୍ମରଣୀୟ ଦିନରେ ଶ୍ରୀକୃଷ୍ଣ ଗୋବର୍ଦ୍ଧନ ଗିରିଧାରଣ କରି ଇନ୍ଦ୍ରଦେବଙ୍କ ମନ୍ଦ ଉଦ୍ଦେଶ୍ୟ ପ୍ରଣୋଦିତ ଅବିରତ ବର୍ଷାଜଳର କୋପରୁ ଗୋପପୁରବାସୀଙ୍କୁ ସୁରକ୍ଷା ଦେଇଥିଲେ । ଭାରତର କୃଷ୍ଣଭକ୍ତ ବୈଷ୍ଣବମାନେ ଅତି ଭକ୍ତିଭାବରେ ନୀଚ ଉପରେ ଉଚ୍ଚ ଭାବନାର ବିଜୟ ସ୍ମାରକୀ ବହନ କରୁଥିବା ଏହି ଦୀପାବଳି ଉତ୍ସବକୁ ପାଳନ କରିଥା'ନ୍ତି ।

ପୁରାଣ ବର୍ଣ୍ଣନା ଅନୁସାରେ ମହାପ୍ରତାପୀ ଦାନବରାଜ ବଳି ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତ୍ରିଭୁବନ ଜୟକରି ମା' ଲକ୍ଷ୍ମୀଙ୍କୁ ଆଣି ପାତାଳପୁରରେ ବନ୍ଦୀ କରି ରଖିଥିଲା । ଐଶ୍ୱର୍ଯ୍ୟାର ଦେବୀ ଲକ୍ଷ୍ମୀଙ୍କ କରୁଣାରୁ ସେ ମହାଦାନୀ ହୋଇ ଗର୍ବରେ ଉତ୍‌ଫୁଲ୍ଲିତ ହୋଇଉଠିଲେ । ଗର୍ବଗଞ୍ଜନ ହରି ବାମନ ରୂପରେ ତାଙ୍କ ଦ୍ୱାରରେ ଉପସ୍ଥିତ ହେଲେ । ତିନିପାଦ ଭୂମି ମାଗିଲେ । ପ୍ରଥମ ଓ ଦ୍ୱିତୀୟ ପାଦରେ ଯଥାକ୍ରମେ ପୃଥିବୀ ଓ ଆକାଶକୁ ଆଚ୍ଛାଦିତ କରି ସାରିଲାପରେ ନାଭିରୁ ସୃଷ୍ଟି ତୃତୀୟ ପାଦକୁ ବଳିର ତାଳୁରେ ରଖି ତାଙ୍କୁ ପାତାଳକୁ ଚାପି ଦେଲେ । ସପ୍ତପାତାଳ ପୁରରେ ବନ୍ଦୀଥିବା ସୌଭାଗ୍ୟର ଦେବୀ ମହାଲକ୍ଷ୍ମୀଙ୍କୁ ଠିକ୍ କାର୍ତ୍ତିକ ଅମାବାସ୍ୟା ଦିନ ମୁକ୍ତ କରିଥିଲେ । ପାତାଳକୁ ଯିବାବେଳେ ବଳି ବିଷ୍ଣୁଙ୍କୁ ଗୋଟିଏ ପ୍ରାର୍ଥନା କରିଥିଲେ– ପ୍ରଭୁ ! ମୋତେ ଦୟାକରି ଅନୁମତି ଦିଅନ୍ତୁ, ମୁଁ ବର୍ଷକରେ ଥରେ ମର୍ତ୍ତ୍ୟମଣ୍ଡଳକୁ ଆସି ମୋର ପ୍ରଜାମାନଙ୍କ ଦୁଃଖ ଦୁର୍ଦ୍ଦଶା ପ୍ରତ୍ୟକ୍ଷ କରିବି । ତ୍ରିବିକ୍ରମ ବିଷ୍ଣୁ ତଥାସ୍ତୁ କହିଥିଲେ । କାର୍ତ୍ତିକ ଅମାବାସ୍ୟା ହେଉଛି ସେହି ପ୍ରାର୍ଥିତ ଦିବସ । ଦାନବୀର ବଳିଙ୍କ ସ୍ମୃତିରେ ମର୍ତ୍ତ୍ୟବାସୀ ପ୍ରତିବର୍ଷ ଏହି ଦୀପମାଳାର ଉତ୍ସବ ପାଳନ କରନ୍ତି ।

ଦୀପାବଳି ଦିନ ଗଜଲକ୍ଷ୍ମୀ ପୂଜା ବହୁଳ ଭାବରେ ଦେଖିବାକୁ ମିଳେ । ପାତାଳରୁ ଉଦ୍ଧାର ପାଇଥିବା ମା' ଲକ୍ଷ୍ମୀଙ୍କୁ ଦେଖି ମାନବସମାଜ ଆନନ୍ଦରେ ଅଧୀର ହୋଇଉଠିଥିଲା । ତାଙ୍କୁ ଭବ୍ୟ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବା ଉଦ୍ଦେଶ୍ୟରେ ଲୋକମାନେ ବ୍ୟାପକ ଆଲୋକ ସଜ୍ଜାର ବ୍ୟବସ୍ଥା କରି ଦୀପ ଜଳାଇଥା'ନ୍ତି । ତାଙ୍କର କୃପାଦୃଷ୍ଟି ଆକର୍ଷଣ କରିବା ପାଇଁ ଅନେକ ବ୍ୟବସାୟୀ ଲକ୍ଷ୍ମୀଙ୍କ ପୂଜା ଆରାଧନା କରି ମିଷ୍ଟାନ୍ନ ବଣ୍ଟନ କରିଥା'ନ୍ତି । କେତେକ ଏହି ଦିବସରେ ବ୍ୟବସାୟିକ ପ୍ରତିଷ୍ଠାନର ଶୁଭାରମ୍ଭ କଲେ ମା' ଲକ୍ଷ୍ମୀ ଐଶ୍ୱର୍ଯ୍ୟ ଓ ସମୃଦ୍ଧି ବର୍ଷା କରିଥାନ୍ତି ବୋଲି ବିଶ୍ୱାସ କରିଥା'ନ୍ତି ।

ଦୀପାବଳି କେବଳ ହିନ୍ଦୁମାନଙ୍କର ପର୍ବ ନୁହେଁ । ଏହା ବହୁଧର୍ମର ଉତ୍ସବ । ଶୈବ, ଶାକ୍ତ, ବୌଦ୍ଧ, ଜୈନ ଓ ଖ୍ରୀଷ୍ଟିୟାନ୍ ପ୍ରାୟ ସବୁ ଧର୍ମାବଲମ୍ବୀମାନେ ପ୍ରଦୀପ ପ୍ରଜ୍ୱଳନକୁ ଏକ ପୁଣ୍ୟପ୍ରଥା ଓ ମଙ୍ଗଳଦାୟକ କାର୍ଯ୍ୟ ବୋଲି ଗ୍ରହଣ କରି ନେଇଛନ୍ତି । ଜୈନଧର୍ମର ଚତୁର୍ବିଂଶ ତୀର୍ଥଙ୍କର ମହାବୀର ଜୈନଙ୍କର ଏହି ଦିନ ମହାପ୍ରୟାଣ ଘଟିଥିଲା । ଜୈନମାନଙ୍କର ଭାବନା ଏହିଦିନ ପ୍ରଭୁଙ୍କର ମହାପ୍ରୟାଣ ଘଟିଥିଲେ ମଧ୍ୟ ତାଙ୍କ ଜ୍ଞାନର ଆଲୋକ ସାରା ବିଶ୍ୱରେ ଆଲୋକମାଳା ପରି ଯେପରି ଅନିର୍ବାଣ ରହେ, ସେଥିପାଇଁ ଦୀପ ପ୍ରଜ୍ୱଳନର ଆଦର୍ଶ ପରମ୍ପରାକୁ ଆଦରି ନେଇଥିଲେ । ପୁନଶ୍ଚ ଲକ୍ଷ୍ମୀ ଧନସମ୍ପତ୍ତିର ଦାତ୍ରୀ ହୋଇଥିବାରୁ ବଣିକ ଜାତି ଜୈନ ଆରାଧ୍ୟଦେବୀ ଲକ୍ଷ୍ମୀଙ୍କୁ ବଡ ଆଡମ୍ବର ସହିତ ପ୍ରଦୀପ ଜାଳି ଆବାହନ କରିଥାନ୍ତି । ବଙ୍ଗଦେଶରେ ବେଦପ୍ରସିଦ୍ଧ ଅଲକ୍ଷ୍ମୀଙ୍କୁ ପୂଜାକରି ଦୀପାବଳି ଦିନ ବିଦାୟ ଦିଆଯାଇ ଥାଏ ।

ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ପରଦେହରେ ପ୍ରବେଶ କରିବାର ସିଦ୍ଧିଲାଭ କରିଥିଲେ । ସେ ଦୀପାବଳି ଦିନ ନିଜର ପ୍ରାଣହୀନ ଦେହରେ ପୁନଃ ପ୍ରବେଶ କରି ପୁନର୍ଜୀବନ ଲାଭ କରିଥିଲେ । ଏହି ଅଲୌକିକ ବିରଳ ସ୍ଥିତିକୁ ପୁନଃଜୀବିତ କରିବା ପାଇଁ ଶଙ୍କରାଚାର୍ଯ୍ୟଙ୍କ ଶିଷ୍ୟମାନେ ଏହି ପାରମ୍ପରିକ ଦିନଟିକୁ ବଡ ଆନନ୍ଦ ସହକାରେ ଦୀପଜାଳି ପାଳନ କରିଥାନ୍ତି । ଦୀପାବଳି ଦିନ ତାନ୍ତ୍ରିକ କ୍ରିୟା ଓ ସାଧନା ସଫଳ ହୋଇଥାଏ ବୋଲି ଏହାର ବିଶେଷ ପ୍ରଚଳନ ଦେଖିବାକୁ ମିଳେ ।

ଗୁପ୍ତବଂଶର ସମ୍ରାଟ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ ନାମରେ ସୁପରିଚିତ ଥିଲେ । ଦୀପାବଳି ଦିନ ସେ ସିଂହାସନ ଆରୋହଣ କରିଥିବାରୁ ସେହିଦିନଠାରୁ ଗୁପ୍ତାବ୍ଦ ପ୍ରଚଳିତ ହୋଇଆସୁଛି । ଏହି ବିକ୍ରମାଦିତ୍ୟ ଜଣେ ବିଶିଷ୍ଟ ତନ୍ତ୍ରସାଧକ ଥିଲେ । 'ଆଇନ-ଇ-ଆକବରୀ'ର ଲେଖକ ଆବୁଲ ଫାଜଲ ତାଙ୍କ ରଚନାରେ ଦୀପାବଳି ଉତ୍ସବ ପ୍ରସଙ୍ଗରେ ଆଲୋକପାତ କରିଛନ୍ତି । ଆରବ ପରିବ୍ରାଜକ ଆଲବରୁଣୀଙ୍କ ଭ୍ରମଣ ବୃତ୍ତାନ୍ତରେ ଦୀପାବଳିର ଗୁରୁତ୍ୱ ସମ୍ପର୍କରେ ଉଲ୍ଲେଖ କରାଯାଇଛି । ସମ୍ରାଟ୍ ହର୍ଷବର୍ଦ୍ଧନଙ୍କ ରଚିତ 'ନାଗାନନ୍ଦ' ନାଟକର 'ଦୀପ ପ୍ରତିବହୁତ୍ସବ' ହେଉଛି ଦୀପାବଳିର ଅନ୍ୟନାମ ।

ଆନ୍ଧ୍ରପ୍ରଦେଶରେ କେତେକ ସ୍ଥାନରେ ଦୀପାବଳି ଦିନ ସର୍ପପୂଜା କରାଯାଇଥାଏ । ମହିଳାମାନେ ଗୀତଗାଇ ସାପକୁ ଦୁଧ ପିଇବାକୁ ଦିଅନ୍ତି ଓ ସାପଗାତକୁ ମଧ୍ୟ ପୂଜା କରନ୍ତି । କେରଳୀମାନେ ମଧ୍ୟ ପ୍ରଦୀପ ପ୍ରଜ୍ୱଳନ କରି ଏହି ଦିନଟିକୁ ସ୍ମରଣ କରିଥାନ୍ତି । ରାଜସ୍ଥାନର ଭିଲ ସଂପ୍ରଦାୟର ଲୋକେ ଦୀପାବଳି ତିଥିରେ ସାରାରାତି ପ୍ରଦୀପ ଜଳାଇ ଉଜାଗର ରହନ୍ତି । ପ୍ରଦୀପର ଆଲୋକରେ ଅଶୁଭ ଶକ୍ତିର ବିନାଶ ଘଟେ ବୋଲି ସେମାନଙ୍କର ବିଶ୍ୱାସ । ରାଜସ୍ଥାନର ମହିଳାମାନେ ନୂତନ ପୋଷାକ ପରିଧାନ କରି ଧାନ୍ୟ-ଉତ୍ସବ ପାଳନ କରନ୍ତି । ମହାରାଷ୍ଟ୍ରର ଲୋକମାନେ ଦୀପାବଳି ଦିନ 'ଶିବାଜୀ ଉତ୍ସବ' ପାଳିଥାନ୍ତି । କାରଣ ଏହିଦିନ ଶିବାଜୀ ଦୁର୍ଗଜୟ ଅଭିଯାନରେ ବାହାରିଥାନ୍ତି । ମରାଠୀମାନେ ଆଲୋକମାଳାରେ ଘର ଅଗଣା ସଜାଇ ସୁମିଷ୍ଟ ଅନ୍ନବ୍ୟଞ୍ଜନ ଖାଇ ଆତ୍ମୀୟ ସ୍ୱଜନ ଓ ବନ୍ଧୁବାନ୍ଧବଙ୍କ ସଙ୍ଗରେ ଆନନ୍ଦରେ ମାତିଥାନ୍ତି ।

ପଞ୍ଜାବର ସ୍ୱାମୀ ରାମତୀର୍ଥ ଦୀପାବଳି ଦିନ ଜନ୍ମଗ୍ରହଣ କରିଥିଲେ । ଅଦ୍ଭୁତ ସମୟ ସଂଯୋଗ ବଶତଃ ଏହିଦିନ ସେ ସନ୍ନ୍ୟାସ ଧର୍ମ ଗ୍ରହଣ କରିଥିଲେ ଓ ଏହି ଦିନ ତାଙ୍କର ମହାପ୍ରୟାଣ ଘଟିଥିଲା । ସେଥିପାଇଁ ତାଙ୍କର ଅନୁଗାମୀମାନେ ଏହି ଦୀପାବଳି ଦିନ ଆଶ୍ରମକୁ ଆଲୋକମାଳାରେ ସଜାଇଥାନ୍ତି । ପଞ୍ଜାବୀମାନେ ଏହି ପବିତ୍ର ଦିବସରେ ଲକ୍ଷ୍ମୀ ଓ ଗଣେଶଙ୍କୁ ମଧ୍ୟ ପୂଜା କରିଥାନ୍ତି । କିନ୍ତୁ ସ୍ୱର୍ଣ୍ଣମନ୍ଦିର ନିକଟସ୍ଥ ଅଞ୍ଚଳରେ ଦୀପାବଳି ମାସରେ ଆଲୋକସଜା ସବୁଠାରୁ ଆକର୍ଷଣୀୟ । ଶିଖ୍‌ମାନଙ୍କ ପଞ୍ଚମଗୁରୁ ଅର୍ଜୁନ ସିଂହଙ୍କ ସମୟରେ ଏହି ସ୍ମରଣୀୟ ତିଥିରେ ଅମୃତସର ଦରବାର ସାହେବ ଗୁରୁଦ୍ୱାରର ଭିତ୍ତିପ୍ରସ୍ତର ସ୍ଥାପନ ହୋଇଥିବାରୁ ଶିଖ୍‌ମାନେ ଦୀପାବଳି ଉତ୍ସବରେ ଦୀପଜଳାଇଥାନ୍ତି । ଶିଖ୍‌ମାନଙ୍କ ଷଷ୍ଠ ଗୁରୁ ହରଗୋବିନ୍ଦ ସିଂହ ଓ ତାଙ୍କ ଅନୁଚର ବର୍ଗଙ୍କୁ ଗୋୟାଲିୟର ଦୁର୍ଗରେ ବନ୍ଦୀ କରି ରଖାଯାଉଥିଲା । ଏହି ଐତିହାସିକ ଦୀପାବଳୀ ଦିନ ଦିଲ୍ଲୀର ସମ୍ରାଟ ଜାହାଙ୍ଗୀର ସେମାନଙ୍କୁ ମୁକ୍ତ କରିଥିଲେ । ସେମାନଙ୍କ ସମ୍ବର୍ଦ୍ଧନା ସ୍ୱରୂପ ବିପୁଳ ଆଲୋକ ସଜ୍ଜାର ଆୟୋଜନ କରାଯାଇଥିଲା । ଆଜି ମଧ୍ୟ ଏହି ଧାରା ଅବ୍ୟାହତ ରହିଛି ।

ଉତ୍ତର ଭାରତ ଓ ବିହାରରେ ଦୀପାବଳିର ଆନନ୍ଦ କହିଲେ ନସରେ । ନୂତନ ପୋଷାକ ପରିଧାନ, ସୁମିଷ୍ଟ ଭୋଜନ, ଖାଦ୍ୟ ପଦାର୍ଥ ବିତରଣ, ଉପହାର ପ୍ରଦାନ, ଆଲୋକ ପ୍ରଜ୍ୱଳନ, ନୂତନ ବର୍ଷକୁ ଆହ୍ୱାନ, ଲକ୍ଷ୍ମୀଙ୍କ ପୂଜା ଆରାଧନା, ଗୋମାତାଙ୍କୁ ସ୍ନାନ, ପୂଜା ଓ ସେବା ଆଦି ପୁଣ୍ୟକାମ ଶୁଭ ଦୀପାବଳି ଦିନ ଅନୁଷ୍ଠିତ ହୋଇଥାଏ ।

ଦୀପାବଳି ଦିନ ବୁଦ୍ଧଦେବ ଗୃହତ୍ୟାଗ କରିଥିଲେ । ତେଣୁ ବୌଦ୍ଧଧର୍ମାବଲମ୍ବୀମାନେ ଏହି ଉତ୍ସବ ପାଳନ କରିଥାନ୍ତି । ମହାରାଜା ଯୁଧିଷ୍ଠିର ଏହିଦିନ ରାଜସୂୟ ଯଜ୍ଞ ଅନୁଷ୍ଠାନ କରିଥିଲେ । ଏହି ଅବସରରେ ରାଜ୍ୟବାସୀ ରାତିରେ ଦୀପ ଜାଳି ମଉଜ କରିଥିଲେ । ଥରେ ମହର୍ଷି ଦୁର୍ବାସା ଇନ୍ଦ୍ରଙ୍କୁ ଗୋଟିଏ ମାଳ ଦେଇଥିଲେ । କିନ୍ତୁ ଇନ୍ଦ୍ରମାଳାଟିକୁ ସେ ହେୟଜ୍ଞାନ କରିଥିଲେ । ଏଥିରେ ମୁନି କ୍ରୋଧାନ୍ୱିତ ହୋଇ ଅଭିଶାପ ଦେଲେ- ତୁମେ ଲକ୍ଷ୍ମୀଙ୍କ ଗର୍ବରେ ଉଦ୍ଧତ ହୋଇ ମୋର ଦେବା ବସ୍ତୁକୁ ଅନାଦର କଲ । ଏଣୁ ଆଜିଠୁ ତିନିଲୋକରେ ଲକ୍ଷ୍ମୀଙ୍କ ବିନାଶ ହେବ । ସେ ଏତିକି କହିବା କ୍ଷଣି ଇନ୍ଦ୍ରଙ୍କର ସମସ୍ତ ଧନ, ସୁନା, ହୀରା ଆଦି ସମୁଦ୍ରରେ ମିଶିଗଲା । ତାକୁ ବାହାର କରିବା ପାଇଁ ଦେବତାମାନେ ଦୈତ୍ୟମାନଙ୍କ ସହିତ ମିଶି ସମୁଦ୍ର ମନ୍ଥନ କଲେ । ସେଥିରୁ ଚଉଦଟି ରତ୍ନସହିତ ଲକ୍ଷ୍ମୀଙ୍କୁ ବାହାର କରାଗଲା । ସେହି ଦିନଟି ଥିଲା ପୌରାଣିକ କାର୍ତ୍ତିକ ଅମାବାସ୍ୟା । ସେହି ଦିନଟିକୁ ଲକ୍ଷ୍ମୀଙ୍କର ପୁନର୍ଜନ୍ମ ହେବା ଖୁସିରେ ଲୋକେ ଦୀପଜାଳି ତାଙ୍କୁ ସ୍ୱାଗତ କରିଥାନ୍ତି ।

ଓଡ଼ିଶା ପାଇଁ ଦୀପାବଳିର ମହତ୍ତ୍ୱମଧ କମ୍ ନୁହେଁ । ପ୍ରାଚୀନ ଉତ୍କଳର ବଣିକମାନେ ବିଦେଶରୁ ବାଣିଜ୍ୟ ସାରି ଧନରତ୍ନଭରା ବୋଇତ ନେଇ ବର୍ଷାଋତୁ ପୂର୍ବରୁ ଫେରି ଆସୁଥିଲେ । କାର୍ତ୍ତିକ ଅମାବାସ୍ୟାଠାରୁ ପୁଣି ସେମାନଙ୍କର ବିଦେଶଯାତ୍ରା ଆରମ୍ଭ ହେଉଥିଲା ।

ଦୀପାବଳି ପର୍ବର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଓ ଆକର୍ଷଣୀୟ ପରମ୍ପରା ହେଉଛି କାଳୀପୂଜା । ଅନ୍ୟ ରାଜ୍ୟ ପରି ଓଡ଼ିଶାର ବିଭିନ୍ନ ସ୍ଥାନରେ ବୈଷ୍ଣବୀ ମା' କାଳୀଙ୍କର ଉତ୍ପତ୍ତି ଓ ପୂଜା ସମ୍ପର୍କରେ ପୁରାଣରେ ଉଲ୍ଲେଖ ଏହିପରି ରହିଛି– ଜଗତଜନନୀ ବିଶ୍ୱରୂପା ଦୁର୍ଗା ମହିଷାସୁର ଆଦି ରାକ୍ଷସମାନଙ୍କୁ ନିଧନ କରି ଦେବତାକୁଳଙ୍କୁ ସୁରକ୍ଷା ଦେଇଥିଲେ । କିନ୍ତୁ ତାଙ୍କର କ୍ରୋଧ ଶାନ୍ତ ହୋଇନଥିଲା । ସେ ଅଧିକାରୁ ଅଧିକ ଉଗ୍ରରୂପ ଧାରଣ କରି ପାପୀ ଓ ଦୁରାଚାରୀମାନଙ୍କୁ ନିର୍ମୂଳ କରିବା ନିମନ୍ତେ ରକ୍ତମୁଖା ହୋଇଉଠିଲେ । ତାଙ୍କର ଏହି ଭୟଙ୍କର କରାଳରୂପ ଦେଖି ଦେବମାନବ ସମସ୍ତ ବିଶ୍ୱବାସୀ ପ୍ରମାଦ ଗଣିଲେ । ଭୟଭୀତ ହୋଇ ମହାକାଳୀଙ୍କୁ ଶାନ୍ତ କରିବା ପାଇଁ ବ୍ୟସ୍ତ ହୋଇପଡିଲେ । ଯେ ଚିର ସନ୍ତାନ ବତ୍ସଳା ମା, ସେ ସନ୍ତାନର କଲ୍ୟାଣ ପାଇଁ ଭୟଙ୍କର ହେଲେ ବିଶ୍ୱ ରସାତଳଗାମୀ ହୋଇଥାଏ । ତେଣୁ ମୁକ୍ତିର ଅନ୍ୟବାଟନପାଇ ଦେବତାମାନେ ମଙ୍ଗଳମୟ ଦେବଦେବ ମହାଦେବଙ୍କର ଶରଣ ପଶିଲେ । ଶିବଙ୍କୁ ସ୍ତୁତି କରି ମହାଶକ୍ତିଙ୍କର ପଥରୋଧ କରିବା ପାଇଁ ବିନମ୍ର ପ୍ରାର୍ଥନା କଲେ । ଦେବତାଙ୍କ ଅନୁରୋଧ ରକ୍ଷା କରି ଆଶୁତୋଷ ଭଗବାନ ଶିବ ଦେବୀଙ୍କ ଅଜାଣତରେ ତାଙ୍କ ସଂହାରଯାତ୍ରା ପଥରେ ଶୋଇ ରହିଲେ । ଦେବୀ ସଂହାର କାର୍ଯ୍ୟରେ ଉନ୍ମତ୍ତ ଥିବାରୁ ଅଜ୍ଞାତରେ ଶିବଙ୍କ ବକ୍ଷକୁ ପଦାଘାତ କରନ୍ତେ ସହସା ହିତାହିତ ଜ୍ଞାନ ଫେରି ପାଇଲେ । ଏ ପ୍ରକାର ଭୁଲ୍ କରିଥିବାରୁ ଜିଭ କାମୁଡି ପକାଇଲେ । କ୍ରୋଧରେ କୃଷ୍ଣବର୍ଣ୍ଣ ଧାରଣ କରିଥିବା ଦେବୀଙ୍କୁ କାଳୀ, ମହାକାଳୀ ଓ ଶ୍ୟାମାକାଳୀ ବୋଲି କୁହାଯାଉଥାଏ । ଶିବଙ୍କ ବକ୍ଷରେ ପଦକ୍ଷେପ କରିବା ପାଇଁ ଯାଉଥିବା ଉତ୍ତୋଳିତ ପଦଯୁକ୍ତା ଦେବୀଙ୍କୁ ମହାକାଳୀ ରୂପେ ବର୍ଣ୍ଣନା କରାଯାଇଛି । ଦେବତାମାନେ ଭକ୍ତିରେ ମା'ଙ୍କୁ ଚଣ୍ଡୀ ଭୁବନେଶ୍ୱରୀ ଗିରୀଶଙ୍କ ସଂଯମ ଜିତିଥିବା ଗୌରବର୍ଣ୍ଣା ଗୌରୀ ରୂପେ ପୂଜା ଆରାଧନା କରିବାକୁ ଲାଗିଲେ । ଏହି ଘଟଣାଟି କାର୍ତ୍ତିକ ଅମାବାସ୍ୟା ଦିନ ଘଟିଥିବାରୁ ଉକ୍ତ ଦିନର ସ୍ମୃତିଚାରଣ ନିମନ୍ତେ ଦୀପାବଳି ଦିନ କାଳୀପୂଜା କରିଥାନ୍ତି ।



ତାଙ୍କର ରୂପ ଅତ୍ୟନ୍ତ ଭୟଙ୍କର ହେଲେ ମଧ ସାଧକମାନଙ୍କର ମନୋକାମନା ପୂର୍ଣ୍ଣ କରିବାରେ ଦେବୀଙ୍କର ପ୍ରସିଦ୍ଧି ରହିଛି । ଭାରତୀୟ ପରମ୍ପରାରେ ମା' କାଳୀଙ୍କର ବିଭିନ୍ନ ରୂପ ରହିଛି । ସେଗୁଡିକ ହେଲା– ଦକ୍ଷିଣକାଳୀ, ସିଦ୍ଧକାଳୀ, ଗୁହ୍ୟକାଳୀ, ଶ୍ରୀକାଳୀ, ଭଦ୍ରକାଳୀ, ଚାମୁଣ୍ଡାକାଳୀ, ଶ୍ମଶାନକାଳୀ ଓ ମହାକାଳୀ ।

ପଶ୍ଚିମବଙ୍ଗର ଭିନ୍ନ ଭିନ୍ନ ସ୍ତରରେ ମାତୃଭକ୍ତ ସାଧକମାନେ କାଳୀଙ୍କୁ ଭିନ୍ନ ଭିନ୍ନ ରୂପରେ ପୂଜା କରିଥାନ୍ତି । କୋଲକତାର କାଳୀଘାଟ ଓ ଦକ୍ଷିଣେଶ୍ୱର କାଳୀମନ୍ଦିର କାଳୀଙ୍କ ପୂଜା ଅର୍ଚ୍ଚନା ପାଇଁ ଲୋକପ୍ରସିଦ୍ଧ ଅଟେ । କାଳୀପୂଜା ଦିନ ସେହିସ୍ଥାନମାନଙ୍କରେ ପ୍ରବଳ ଭିଡ ହୋଇଥାଏ । ସୁଉଚ୍ଚ ପ୍ରତିମା, ବର୍ଣ୍ଣାଢ୍ୟ ମେଢ, ତୋରଣ ଓ ଅଭିନବ ଆଲୋକସଜାରେ ଦୀପାବଳୀ ଉତ୍ସବ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିଥାଏ । ମାର୍ଗମ୍ୟାନ ଲେଖିଛନ୍ତି ଯେ ଇଷ୍ଟ ଇଣ୍ଡିଆ କମ୍ପାନୀର ସାହେବମାନେ ଯୁଦ୍ଧରେ ଜୟକଲା ପରେ କାଳୀଘାଟରେ ପୂଜା କରୁଥିଲେ । ୱାରେନ୍ ହେଷ୍ଟିଂସ୍, କର୍ଣ୍ଣୱାଲିସ ପ୍ରମୁଖ ସାହେବମାନେ କାଳୀଘାଟକୁ କରମୁକ୍ତି କରିଥିଲେ । ଇଂରେଜମାନେ ମଧ ଦୀପାବଳୀରେ ବଙ୍ଗଲୋକମାନଙ୍କ ସହ କାଳୀଘାଟ ପୂଜାରେ ଅଂଶ ଗ୍ରହଣ କରୁଥିଲେ । ପଶ୍ଚିମବଙ୍ଗର ଲୋକେ ଏହି ଦୀପାବଳିରେ ଚଉଦ

ଦୀପଜଳାଇ ଚଉଦ ପ୍ରକାର ଶାଗ ଭକ୍ଷଣ କରିଥାନ୍ତି । ଚଉଦ ପୁରୁଷର ମୁକ୍ତି କାମନା କରି ସେମାନେ ଏପରି କରିଥାନ୍ତି ବୋଲି ପରମ୍ପରା ରହିଛି ।

ଓଡ଼ିଶାରେ ପିତୃଗଣଙ୍କ ଉଦ୍ଦେଶ୍ୟରେ ଦୀପାବଳି ଉତ୍ସବ ବିଶେଷ ଭାବରେ ପାଳନ କରାଯାଏ । ହିନ୍ଦୁମାନଙ୍କର ଧାରଣା ଯେ ସେମାନଙ୍କ ପୂର୍ବ ପୁରୁଷ ନାନା ପାପକାର୍ଯ୍ୟ କରିବା ଫଳରେ ମୃତ୍ୟୁପରେ ଅନ୍ଧକାରମୟ ଯମଲୋକରେ ଖୁବ୍ ଯନ୍ତ୍ରଣା ଭୋଗ କରୁଥାନ୍ତି । ବର୍ଷକରେ ଥରେ ସେହି ଅନ୍ଧକାର ଆଚ୍ଛନ୍ନ ରାଜ୍ୟରୁ ଆଲୋକର ରାଜ୍ୟ ମର୍ତ୍ତ୍ୟଲୋକକୁ ଫେରାଇ ଆଣିବା ପାଇଁ ଜୀବିତ ବଂଶଧରମାନେ ନାନା ଧରଣର ଆଲୋକ ପ୍ରଜ୍ଜ୍ୱଳନର ବ୍ୟବସ୍ଥା କରିଥାନ୍ତି । ଦେବଲୋକ ସହିତ ସୌହାର୍ଦ୍ଦ୍ୟ ସମ୍ପର୍କ ସୃଷ୍ଟି ପାଇଁ ଗୃହ, ମନ୍ଦିର ପ୍ରାଙ୍ଗଣରେ ଦୀପସବୁ ଜଳିଉଠେ । ଖାଲି ଦୀପଦାନ ନୁହେଁ । ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧଅର୍ପଣ କରିବାର ବିଧିରହିଛି । ଏହାକୁ ପ୍ରୟାଶ୍ରାଦ୍ଧ କୁହାଯାଏ । ଏହିଦିନ ଗଙ୍ଗା, ଗୟା ଶ୍ରୀକ୍ଷେତ୍ର ଆଦି ପୁଣ୍ୟଧାମରେ ପିଣ୍ଡଦାନ ତିଳତର୍ପଣ କରିବାକୁ ଲୋକଙ୍କର ଭିଡ ଜମିଥାଏ । ହରିଦ୍ୱାର ଓ ପ୍ରୟୋଗରେ ଧାଡ଼ିଧାଡ଼ି ଦୀପ ଭସାଇବାର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଅଟେ । ଏହି ସମୟରେ ପିତୃପୁରୁଷଗଣ ପିତୃଲୋକରୁ କନ୍ୟାରାଶିରେ ମର୍ତ୍ତ୍ୟଲୋକକୁ ଅବତରଣ କରିଥାନ୍ତି । କାର୍ତ୍ତିକ ଅମାବାସ୍ୟାରେ ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଓଡ଼ିଆମାନଙ୍କର ବିଶ୍ୱାସ ଯେ ପିତୃପୁରୁଷମାନେ କୁମାର ପୂର୍ଣ୍ଣିମାଠାରୁ କାର୍ତ୍ତିକ ଅମାବାସ୍ୟା ପର୍ଯ୍ୟନ୍ତ ମର୍ତ୍ତ୍ୟଲୋକରେ ବାସ କରି ନିଜ ଦାୟଦମାନଙ୍କ ସୁଖସ୍ୱାଚ୍ଛନ୍ଦ୍ୟ ଅବଲୋକନ କରିଥାନ୍ତି । ପୟାଶ୍ରାଦ୍ଧ ଦିନ ଘରେ ପିତୃପୁରୁଷଙ୍କ ନିମନ୍ତେ ସ୍ୱତନ୍ତ୍ର ଖାଦ୍ୟ ପ୍ରସ୍ତୁତ ହୁଏ । ଶ୍ରାଦ୍ଧ ପାଇଁ କଦଳୀ, ନଡ଼ିଆ ଅଟାରେ ନୈବେଦ୍ୟ ପ୍ରସ୍ତୁତ ହୁଏ । କାଉଁରିଆ କାଠି ବିଡ଼ାରେ ନିଆଁ ଧରାଇ ଗାଁ ବାହାରେ ଗୋବରରେ ଲିପା ହୋଇଥିବା ଉଚ୍ଚସ୍ଥାନରେ ପଣସ ପତ୍ରରେ ପିଣ୍ଡ ବଢ଼ାଯାଏ । ପିତୃପୁରୁଷଙ୍କୁ ଅତି ଶ୍ରଦ୍ଧାର ସହିତ ଛୋଟ ଠାରୁ ବଡ ପର୍ଯ୍ୟନ୍ତ ସମସ୍ତେ ନୂଆବସ୍ତ୍ର ପିନ୍ଧି ବିଦାୟ ସମ୍ବର୍ଦ୍ଧନା ଜଣାଇଥାନ୍ତି ।

ବଡ ବଡୁଆ ହୋ
ଅନ୍ଧାରରେ ଆସ ଆଲୁଅରେ ଯାଅ
ଗଙ୍ଗା ଯାଅ, ଗୟା ଯାଅ, କାଶୀ ଯାଅ
ପୁରୁଷୋତ୍ତମରେ ମହାପ୍ରସାଦ ଖାଇ
ବାଇଶି ପାହାଚରେ ଗଡଗଡଉ ଥାଅ ।

ଏହିଭଳି ଲୋକମାନେ ପିତୃପୁରୁଷଙ୍କ ସନ୍ତୋଷ ବିଧାନ କରାଇ ସେମାନଙ୍କଠାରୁ ଆଶିଷ ପ୍ରାପ୍ତ ହୋଇଥାନ୍ତି ।

ଦୀପାବଳିର ତାତ୍ପର୍ଯ୍ୟ ହେଉଛି ଆଲୋକର ଆବାହନ ଓ ବନ୍ଦନା । ସମସ୍ତ କାଳିମାର ଧ୍ୱଂସ ସାଧନ ଓ ଅନ୍ଧକାରର ଅପସାରଣ ହେଉଛି ଏହାର ମୌଳିକ ଉଦ୍ଦେଶ୍ୟ । ଦୃଷ୍ଟ ଶକ୍ତି ଉପରେ ଶିଷ୍ଟ ଶକ୍ତିର ବିଜୟ ହିଁ ଦୀପାବଳିର ବିଶେଷତ୍ୱ । ଘୃଣା, ଦ୍ୱେଷ, ଅହଂକାର, ପାଶବିକତା ଓ ଅଜ୍ଞାନତାର ଘନ ତମସାକୁ ଅପସାରଣ କରି ହୃଦୟରେ ବିବେକର ପ୍ରଦୀପ ପ୍ରଜ୍ଜ୍ୱଳିତ କରିବାକୁ ଏହି ଉତ୍ସବ ଆହ୍ୱାନ ଦେଇଥାଏ । ସେଥିପାଇଁ କ୍ରାନ୍ତିଦର୍ଶୀ ଆର୍ଯ୍ୟଋଷିଗଣ ବୃହଦାରଣ୍ୟକ ଉପନିଷଦରେ ଆଲୋକର ଆଶୀର୍ବାଦ କାମନା କରି ଗାଇ ଉଠିଛନ୍ତି:

ଅସତୋ ମା ସଦ୍‌ଗମୟ
ତମସୋ ମା ଜ୍ୟୋତିର୍ଗମୟ
ମୃତ୍ୟୋ ର୍ମା ଅମୃତଂ ଗମୟ ।

ଅର୍ଥାତ୍ ହେ ପ୍ରକାଶରୂପୀ ପରମାତ୍ମା । ତୁମେ ତମସାରୁ ପ୍ରଦୀପ୍ତ ଆଲୋକ ବର୍ତ୍ତିକା ରୂପେ ମାର୍ଗ ପ୍ରଦର୍ଶନ କରାଅ । ଅସତ ଅନାତ୍ମ ବସ୍ତୁଠାରୁ ହଟାଇ ମୋତେ ସତ୍ ଚିତ ଆନନ୍ଦମୟ ବସ୍ତୁରେ ପ୍ରେରିତ କର । ଅବିଦ୍ୟା ଅଜ୍ଞାନତା ଅବିବେକିତା ରୂପୀ ଅନ୍ଧକାରରୁ ଦୂରେଇ ମୋତେ ପ୍ରକାଶାତ୍ମକ ଜ୍ଞାନମାର୍ଗରେ ପରିଚାଳିତ କର । ସଂକୀର୍ଣ୍ଣତା, ହୀନମନ୍ୟତା ପଶୁତ୍ୱ ଭଳି ମୃତ୍ୟୁମୁଖରୁ ମୋତେ ବଞ୍ଚାଇ ଅମୃତର ରସ ପାନ କରାଅ । ଦୀପଂ ଜ୍ୟୋତିଃ ପରଂବ୍ରହ୍ମ । ପରଂବ୍ରହ୍ମ ହେଉଛି ନିତ୍ୟ, ସତ୍ୟ ଓ ସନାତନ । ମହାନିର୍ବାଣ ତନ୍ତ୍ର ଅନୁଯାୟୀ କାଳୀ ମହାଦେବୀ । ମାୟାତୀତା । ଜ୍ୟୋତିର୍ମୟୀ ମହାକାଳୀଙ୍କ ଉପାସନା ଶୁଭଦାୟୀ ଓ ଭୋଗଦାୟୀ । କାଳୀତୁଲ୍ୟ ବିଦ୍ୟାନାହିଁ । ଫଳନାହିଁ । ଜ୍ଞାନନାହିଁ, ତପସ୍ୟା ବି ନାହିଁ, କାଳୀଙ୍କ ପୂଜାର୍ଚ୍ଚନା ବଳରେ ଆୟୁ, ଆରୋଗ୍ୟ, ଐଶ୍ୱର୍ଯ୍ୟ, ପୁଷ୍ଟି କୀର୍ତ୍ତି, ବୈଭବଶକ୍ତି ଓ ମୋକ୍ଷ ପ୍ରାପ୍ତ ହୁଏ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଦୀପାବଳି ସଦ୍‌ଭାବ, ସମ୍ପ୍ରୀତି ଓ ସଂହତିର ଭାବକୁ ମଜବୁତ୍ କରେ । ଦୀପାବଳି ଦୁଃଖ ଶୋକ ନୈରାଶ୍ୟ ଦୂର କରି ନୂତନ ଆଶା ଓ ଆନନ୍ଦର ବାର୍ତ୍ତା ଆଣିଦିଏ । ଦୀପାବଳି ପର୍ବ ସହିତ ସଂଯୋଜିତ ପ୍ରତ୍ୟେକ ଘଟଣା ବିଶ୍ଳେଷଣ କଲେ ସେଥିରୁ ଏହି ସଙ୍କେତ ମିଳିଥାଏ । ଏହି ଶାରଦୀୟ ଗଣୋତ୍ସବ ନୈତିକତା ଉପରେ ଯେତିକି ଆଧାରିତ ମାନବିକତାର ଆଦର୍ଶ ମଧ୍ୟ ଛତ୍ରେ ଛତ୍ରେ ପ୍ରତିବିମ୍ବିତ ହୋଇଥାଏ ।

ଦୀପାବଳି ହେଉଛି ଅନ୍ୟର ଶୁଭମନାସିବାର ପର୍ବ । ଏହିପର୍ବ ପ୍ରତ୍ୟେକ ମଣିଷ ମନରେ ଆତ୍ମବଳ, ମାନବିକତା

ପ୍ରତି ପ୍ରେମ, ଶାନ୍ତି ସୌହାର୍ଦ୍ଦ୍ୟ ସର୍ବୋପରି ଅମୃତ ଚେତନାକୁ ଜାଗ୍ରତ କରିଥାଏ ।

ଦୀପୋତ୍ସବର ଆଧ୍ୟାତ୍ମିକ ସଙ୍କେତ ଅତି ଚମତ୍କାର ଅଟେ । ଏହି ଉତ୍ସବରେ ଆମେ ଗୋଟିଏ ଦୀପରୁ ଅନେକ ଦୀପ ପ୍ରଜ୍ଜ୍ୱଳିତ କରିଥାଉ । ମୂଳ ଦୀପଟି ପରମଜ୍ୟୋତି । ପରମାତ୍ମା ଏହାର କ୍ଷୟ ନାହିଁ । ସର୍ବଦା ପରିପୂର୍ଣ୍ଣ । ଅସଂଖ୍ୟ ଦୀପ ଲଗାଇଲେ ମଧ୍ୟ ମୂଳଦୀପର ଜ୍ୟୋତି ହ୍ରାସ ପାଏନା । ନିଷ୍ପତ୍ତି ହୁଏନା । ଅନ୍ୟ ଦୀପଗୁଡିକ ଜୀବନଜ୍ୟୋତି । ଜୀବାତ୍ମା ସଦୃଶ । ଗୋଟିଏ ସତ୍ ହଜାରେ ସତର ଉଦ୍‌ବର୍ଦ୍ଧନ କରାଇପାରେ । ଆଲୋକର ଉତ୍ସଟିଏ ହେଉଛି ସତ । ଦୀପର ଶିଖା ସବୁବେଳେ ଉର୍ଦ୍ଧ୍ୱଗାମୀ । ଏହିପରି ମଣିଷ ଭିତରେ ସୁପ୍ତ ଅବସ୍ଥାରେ ଥିବା ଚେତନା ଉର୍ଦ୍ଧ୍ୱଗାମୀ ହେଲେ ସୁସ୍ଥ ସାମାଜିକ ପରମ୍ପରା ଗଢି ଉଠନ୍ତା ।

ଦୀପ ଦାନୋତ୍ସବର ଅନ୍ୟ ଏକ ବିଶେଷ ବୈଜ୍ଞାନିକ କାରଣ ରହିଛି । ବିଜ୍ଞାନ ଓ ସ୍ୱାସ୍ଥ୍ୟଗତ କାରଣରୁ ଦୀପାବଳି ପାଳନର ଉପାଦେୟତା ରହିଛି । ଦୀପାବଳି ବେଳକୁ କିଛି ଲଘୁଧାନ ଅମଳ ସରିଥିଲେ ମଧ୍ୟ ଅଧିକାଂଶ ଶାରଦ ଧାନ ଫୁଲ ଉଡାଇଥାଏ । ବର୍ଷା ଓ ଶରତ ଋତୁରେ ବହୁ ଅନିଷ୍ଟକାରୀ କୀଟପତଙ୍ଗ ଜନ୍ମ ହୋଇ ଧାନ ଓ ରବିଫସଲର କ୍ଷତି ସାଧନ କରନ୍ତି । ପୁରାତନ ଯୁଗରେ ଆଜିଭଳି ରାସାୟନିକ କୀଟନାଶକ ଔଷଧର ପ୍ରଚଳନ ନଥିଲା । ଦୀପାବଳୀର ଆଲୋକ ପୋକ ନିବାରଣର ଏକ ସହଜ ପନ୍ଥା ଥିଲା । ଦୀପର ଅଗ୍ନିଶିଖା ଓ ଆତସବାଜିର ବିସ୍ଫୋରଣ ପ୍ରତି ଆକୃଷ୍ଟ ହୋଇ କୀଟ ପତଙ୍ଗମାନେ ପରିଶେଷରେ ମୃତ୍ୟୁବରଣ କରନ୍ତି । ପୁଣି ଆତସବାଜି ଓ ବାଣଫୁଟା ଯୋଗୁଁ ପରିବେଶରେ ଗନ୍ଧକର ଧୂଆଁ ଖେଳିଯାଏ । ତାହା ଲୋକମାନଙ୍କର ଦେହରେ ବାଜି ଏକ ରାସାୟନିକ ପ୍ରକ୍ରିୟା ସୃଷ୍ଟି କରେ । ଏହା ଚର୍ମରୋଗର ବାଧକ ରୂପେ କାର୍ଯ୍ୟ କରିଥାଏ ।

ଦୀପାବଳି କେବଳ ସ୍ଥଳ ଦୀପ ପ୍ରଜ୍ଜ୍ୱଳନ ନୁହେଁ, ନିଜ ଭିତରକୁ ଆଲୋକିତ କରିବାର ଏହା ଏକ ମହାର୍ଘ ଅବସର ସୃଷ୍ଟି କରିଥାଏ । ସମସ୍ତ ପ୍ରକାର ଦୌରାତ୍ମ୍ୟ, ଉପଦ୍ରବ, ଅନୀତି, ଅନ୍ୟାୟ ଅତ୍ୟାଚାର, ବଳାତ୍କାର, ଈର୍ଷା, ଅସୂୟା, ଦ୍ୱେଷ, ପରଶ୍ରୀକାତରତା, ଅବିବେକିତା, ବିଚାରହୀନତା ଓ କ୍ରୂରତାକୁ ଜାଳିଦେଇ ଜ୍ଞାନର ଆଲୋକରେ ଚମକିବା ହେଉଛି ଦୀପାବଳିର ଆହ୍ୱାନ । ସଂକୀର୍ଣ୍ଣତାକୁ ପରିହାର କରି ବିରାଟତାର ଶରଣ ନେବା ହିଁ ଦୀପାବଳିର ବାର୍ତ୍ତା । ଚତୁର୍ଦ୍ଦିଗରେ ଦୀପାଳି ଜାଳି ପରସ୍ପର ମଧ୍ୟରେ ଆତ୍ମୀୟତା ସହଯୋଗ ଓ ସଦ୍‌ଭାବ ବୃଦ୍ଧି କରିପାରିଲେ ଦୀପାବଳି ଉତ୍ସବର ସାଂସ୍କୃତିକ ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇପାରିବ । ବାହ୍ୟ ଆଡମ୍ବରର ପାଚେରିକୁ ଭେଦ କରି ଅନ୍ତର୍ନିହିତ ମହତ୍ ଉଦ୍ଦେଶ୍ୟକୁ ଚରିତାର୍ଥ କରି ପାରିଲେ ଏହି ସାର୍ବଜନୀନ ପର୍ବପାଳନ ସାର୍ଥକ ହେବ । ମା' କାଳୀ ଓ ମା'ଲକ୍ଷ୍ମୀଙ୍କ ପୂଜାର୍ଚ୍ଚନା କରିବା ଅର୍ଥ ସମସ୍ତ ପ୍ରକାର ହୀନତା, ଶଠତା, ପାପ ଓ ଅଶୁଭ ଭାବନାକୁ ଦୂରେଇ ଦେଇ ସୁନ୍ଦର ଭାବରେ ଉଦ୍‌ବୁଦ୍ଧ ହେବା ଦୀପାବଳିର ଆଧ୍ୟାତ୍ମିକ ଚେତନା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସମସ୍ତ ଜ୍ୟୋତିର ଯିଏ ଜ୍ୟୋତି ପରମଜ୍ୟୋତି, ପରମାତ୍ମାଙ୍କ ଆଲୋକ ଆମ ଭିତରେ ଜୀବାତ୍ମା ରୂପରେ ବିଦ୍ୟମାନ । ଏହି ସତ୍ୟକୁ ଉପଲବ୍ଧି କରିବା ହେଉଛି ଦୀପାବଳି ପାଳନର ସଙ୍କେତ । ଏହି ଅମୂର୍ତ୍ତଚେତନା ସମସ୍ତଙ୍କ ହୃଦୟରେ ସଂପ୍ରସାରିତ ହେଉ ।

ହଁ, ସବୁକ୍ଷେତ୍ରରେ ସତର୍କତା ଅବଲମ୍ବନ କଲାପରି ଦୀପାବଳି ଦିନ ମଧ୍ୟ ଆମ୍ଭମାନଙ୍କୁ ସାବଧାନ ରହିବାକୁ ପଡିବ । ଦୀପାବଳିର ଆନନ୍ଦ ଉଲ୍ଲାସ ମନାଇଲା ବେଳେ ଅଚାନକ କାହା ଉପରେ ବିପଦ ଆପଦ ନପଡୁ । ବାଣ ଫୁଟାଇଲା ବେଳେ କିଛି ଅଘଟଣ ନଘଟୁ । କାହା ଆଖିରୁ ଲୁହ ନବୋହୁ । କାହାର ଧନଜୀବନକୁ କ୍ଷତି ନପହଞ୍ଚୁ ।

ପୁଣିଥରେ ମା' କାଳୀଙ୍କ ପାଖରେ ଆମର ବିନମ୍ର ପ୍ରାର୍ଥନା– ହେ ମା' ତୋର ଅବୋଧ ସନ୍ତାନଗଣକୁ ଆଶିଷ ଦେ । ଆମ୍ଭମାନଙ୍କର ଆତ୍ମବଳ ଜାଗ୍ରତ ହେଉ । ଆମ୍ଭେମାନେ ମାନବବାଦର ମହାମନ୍ତ୍ରରେ ଅଭିମନ୍ତ୍ରିତ ହେଉ । ସମସ୍ତ ମାନବଜାତି ପାଇଁ ଆଜି ଦୀପାବଳିର ଏହା ହିଁ ଆମର ଶୁଭକାମନା ।

କ୍ୱାଟର ନଂ. ସି–୨୨/୧,
ନାଲ୍‌କୋ– ଦାମନଯୋଡି,
କୋରାପୁଟ– ୭୬୩୦୦୮



# ଓଡ଼ିଶା ନୌବାଣିଜ୍ୟର କର୍ଣ୍ଣଧାର ପାରାଦ୍ୱୀପ ବନ୍ଦର-୨୦୨୦

ପ୍ରଭାତ କୁମାର ନନ୍ଦ

ଚଳିତ ଶତାବ୍ଦୀର ପ୍ରଥମ ଦଶକ ଓ ବିଗତ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଓଡ଼ିଶା ପ୍ରଦେଶର ବିକାଶ କ୍ଷେତ୍ରରେ ସହଯୋଗୀ ହୋଇଥିବା ବିଭିନ୍ନ ପ୍ରତିଷ୍ଠାନ ସମ୍ପର୍କରେ ଆଲୋଚନା କଲେ ତନ୍ମଧ୍ୟରୁ ପାରାଦ୍ୱୀପ ବନ୍ଦରର ଭୂମିକା ଗୁରୁତ୍ୱପୂର୍ଣ୍ଣ ବୋଲି ଜଣାଯାଏ । ଆମର ପ୍ରାଚୀନ ଗରିମା ମଧ୍ୟରୁ କଳିଙ୍ଗର ନୌବାଣିଜ୍ୟିକ ପ୍ରସିଦ୍ଧି ସମଗ୍ର ବିଶ୍ୱରେ ଉଲ୍ଲେଖନୀୟ ଥିଲା । ସାଗର ବୁକୁରେ ନୌଯାତ୍ରା କରି ପୃଥିବୀର ବିଭିନ୍ନ ଦେଶ ସହିତ ନୌବାଣିଜ୍ୟିକ ସମ୍ବନ୍ଧ ସ୍ଥାପନ କରିବା ନିମିତ୍ତ ସମଗ୍ର ଭାରତର ଇତିହାସରେ ପ୍ରଥମେ କଳିଙ୍ଗର ସାଧବମାନେ ସାହସ କରିଥିଲେ । ସେଥିନିମିତ୍ତ ଇତିହାସରେ କଳିଙ୍ଗର ଅଧିବାସୀମାନଙ୍କୁ 'କଳିଙ୍ଗାଃ ସାହସିକାଃ'ରୂପେ ମର୍ଯ୍ୟାଦା ପ୍ରଦାନ କରାଯାଇଛି ।

ଖ୍ରୀଷ୍ଟପୂର୍ବ ସମୟର ଏହି ନୌବାଣିଜ୍ୟିକ ପ୍ରସିଦ୍ଧି ଊନବିଂଶ ଶତାବ୍ଦୀ ବେଳକୁ ରାଜନୈତିକ, ସାମାଜିକ ଓ ଅର୍ଥନୈତିକ କାରଣରୁ ନିଷ୍ପ୍ରଭ ହୋଇଯାଇଥିଲା । ସମଗ୍ର ପୃଥିବୀର ଐତିହାସିକମାନେ କଳିଙ୍ଗର ନୌବାଣିଜ୍ୟିକ ପ୍ରସିଦ୍ଧି ରୂପକ କର୍ପୂର ଉଡିଯାଇ କେବଳ ଶୁଷ୍କ ବେଳାଭୂମି ରୂପକ କନା ପଡିରହିଛି ବୋଲି ମତବ୍ୟକ୍ତ କଲେ । ବିଂଶ ଶତାବ୍ଦୀର ମଧ୍ୟଭାଗରୁ ଦ୍ରୁତ ବାଣିଜ୍ୟିକ ପ୍ରସିଦ୍ଧି କ୍ରମଶଃ ନବକଳିଙ୍ଗ ତଥା ଓଡ଼ିଶା ରାଜ୍ୟ ଭାଗ୍ୟ ଆକାଶରେ ଉଦୟ ହେଲା । ପାରାଦ୍ୱୀପ ବନ୍ଦରର ପରିକଳ୍ପନା ମହାନଦୀ ଓ ବଙ୍ଗୋପସାଗରର ସଙ୍ଗମସ୍ଥଳ ନିକଟରେ କରାଗଲା । ଭାରତର ସ୍ୱାଧୀନତା ଲାଭ ପରେ ପୂର୍ବ ଉପକୂଳରେ ପାରାଦ୍ୱୀପ ବନ୍ଦର ପ୍ରଥମ ସ୍ୱାଧୀନୋତ୍ତର ବୃହତ୍ ବନ୍ଦର ଭାବରେ ପ୍ରତିଷ୍ଠା ଲାଭ କଲା । ୧୯୬୬ ମସିହା ଏପ୍ରିଲ ୧୮ ତାରିଖରେ ଭାରତର ଅଷ୍ଟମ ବୃହତ୍ ବନ୍ଦର ଭାବରେ ସ୍ୱୀକୃତି ଲାଭ କରିଥିବା ପାରାଦ୍ୱୀପରେ କେବଳ ଗୋଟିଏ ମାତ୍ର ଲୁହାପଥର ବୋଝେଇ ବର୍ଥ ଥିଲା । ଇତିମଧ୍ୟରେ (୨୦୧୧ ମସିହା ଶେଷ ସୁଦ୍ଧା) ପାରାଦ୍ୱୀପ ବନ୍ଦରରେ ୧୪ଟି ଉନ୍ନତ ବର୍ଥ ବା ଜାହାଜ ରହଣି ସ୍ଥଳ ରହିଛି । ଏହା ବ୍ୟତୀତ ପାରାଦ୍ୱୀପ ବନ୍ଦରଠାରୁ ୨୦କିମି ଦୂରରେ ସମୁଦ୍ର ମଧ୍ୟରେ ଏକ ଗଭୀର ଭାସମାନ ବର୍ଥ ନିର୍ମାଣ କରାଯାଇ ସେଠାରେ ବୃହତ ତୈଳବାହୀ ଜାହଜଗୁଡିକରୁ ଅଶୋଧିତ ତୈଳ ବିଶୋଧନାଗାରଗୁଡିକୁ ପ୍ରେରଣ କରାଯାଇପାରୁଛି । ୨୦୦୮-୨୦୦୯ ଆର୍ଥିକ ବର୍ଷରେ ୪୬.୪୧ ନିୟୁତ ଟନ୍ ପଣ୍ୟଦ୍ରବ୍ୟ କାରବାର କରାଯାଇ ବନ୍ଦର ଇତିହାସରେ କୀର୍ତ୍ତି ଅର୍ଜନ କରାଯାଇପାରିଛି । ବିଗତ ଏକ ଦଶନ୍ଧିରେ ବନ୍ଦରରୁ କାରବାର ହୋଇଥିବା ବିଭିନ୍ନ ଆମଦାନୀ ଓ ରପ୍ତାନୀ ପଣ୍ୟଦ୍ରବ୍ୟର ପରିମାଣକୁ ପର୍ଯ୍ୟାଲୋଚନା କଲେ ପାରାଦ୍ୱୀପ ବନ୍ଦରର କ୍ରମ ବର୍ଦ୍ଧିଷ୍ଣୁ ଧାରାକୁ ଲକ୍ଷ୍ୟ କରାଯାଇପାରିବ । ୨୦୦୨-୨୦୦୩ ଆର୍ଥିକ ବର୍ଷରେ ୨୩.୯ ନିୟୁତ ମେଟ୍ରିକ ଟନ୍ ପଣ୍ୟଦ୍ରବ୍ୟ କାରବାର ହୋଇଥିବାବେଳେ, ୨୦୦୮-୦୯ ଆର୍ଥିକ ବର୍ଷରେ ତାହା ଦ୍ୱିଗୁଣିତ ହୋଇ ୪୬.୪୧ ନିୟୁତ ମେଟ୍ରିକ ଟନ୍ ହୋଇପାରିଛି । ୨୦୦୯-୨୦୧୦ ଆର୍ଥିକ ବର୍ଷରେ ଏହି ପଣ୍ୟଦ୍ରବ୍ୟ ପରିମାଣ ୫୦ ନିୟୁତ ଟନକୁ ଅତିକ୍ରମ କରି ୫୭.୦୧ ନିୟୁତ ଟନ୍‌ରେ ପହଞ୍ଚିଛି । ସମଗ୍ର ବିଶ୍ୱରେ ଆର୍ଥିକ ମାନ୍ଦା ଅବସ୍ଥା ଯୋଗୁ ପଣ୍ୟଦ୍ରବ୍ୟ କାରବାରରେ ଶିଥିଳତା ଦେଖାଯାଉଥିବା ବେଳେ, ୨୦୦୮-୨୦୦୯ ଆର୍ଥିକ ବର୍ଷରେ ପୂର୍ବବର୍ଷ ତୁଳନାରେ ୯.୩୬% ଅଭିବୃଦ୍ଧି କରାଯାଇ ସମଗ୍ର ଭାରତର ଅନ୍ୟ ୧୩ଟି ବୃହତ୍ ବନ୍ଦରର ସାଫଲ୍ୟକୁ ଅତିକ୍ରମ କରିପାରିଛି । ଉପରୋକ୍ତ ତଥ୍ୟାବଳୀରୁ ଏକଥା ସ୍ପଷ୍ଟ ଯେ, କଳିଙ୍ଗ ବା ଉତ୍କଳର ହୃତ

ନୌବାଣିଜ୍ୟିକ ପ୍ରସିଦ୍ଧି ପାରାଦ୍ୱୀପ ବନ୍ଦର ମାଧ୍ୟମରେ ଓଡ଼ିଆମାନେ ଫେରିପାଇଛନ୍ତି । ଏହାର ପ୍ରମାଣ ସ୍ୱରୁପ ଭାରତର ପ୍ରସିଦ୍ଧ ଅର୍ଥନୈତିକ ଅନୁସନ୍ଧାନ ଓ ଗବେଷଣା ସଂସ୍ଥା ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇକୋନୋମିକ୍ ଷ୍ଟଡିଜ୍(ଆଇ.ଇ.ଏସ୍) ନୂଆଦିଲ୍ଲୀଠାରେ ୨୦୦୯ ମସିହା ମେ' ୪ତାରିଖରେ ପାରାଦ୍ୱୀପ ବନ୍ଦରକୁ 'ଭାରତୀୟ ଶିରୋମଣି ପୁରସ୍କାର' ସମଗ୍ର ଦେଶର ବାଣିଜ୍ୟିକ ବିକାଶରେ ବନ୍ଦରର ପ୍ରଶଂସନୀୟ ଭୂମିକା ଯୋଗୁଁ ପ୍ରଦାନ କରାଯାଇଥିଲା ।

ଯେକୌଣସି ବାଣିଜ୍ୟିକ ସଂସ୍ଥାର ଭବିଷ୍ୟତର ରୂପରେଖ କଳନା କରାଯାଇ ତାହା ଦ୍ୱାରା ଦେଶର ଅର୍ଥନୈତିକ ଅଭିବୃଦ୍ଧି ବିଷୟରେ ଯୋଜନା କରାଯାଏ । ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧି ତଥା ୨୦୨୦ ମସିହା ବେଳକୁ ପାରାଦ୍ୱୀପ ବନ୍ଦର ଭାରତର ଶ୍ରେଷ୍ଠ ବନ୍ଦର ହେବ ବୋଲି କେବଳ ଭାରତର ନୁହେଁ ବିଦେଶର ଅର୍ଥନୀତି ବିଶାରଦମାନେ ମତପ୍ରଦାନ କରିସାରିଲେଣି । ୨୦୨୦ ମସିହା ବେଳକୁ ପାରାଦ୍ୱୀପ ବନ୍ଦରରୁ ୧୫୦ ନିୟୁତ ମେଟ୍ରିକ ଟନ୍ ପଣ୍ୟଦ୍ରବ୍ୟ କାରବାର ହେବା ନିଶ୍ଚିତ ବୋଲି ବିଭିନ୍ନ ପରୀକ୍ଷାନିରୀକ୍ଷାରୁ ଜଣାପଡୁଛି । ବର୍ତ୍ତମାନ ସମଗ୍ର ଭାରତର ବିଭିନ୍ନ ବୃହତ୍ ବନ୍ଦରରୁ ୫୩୦.୩୫ ନିୟୁତ ମେଟ୍ରିକ୍ ଟନ୍ ପଣ୍ୟଦ୍ରବ୍ୟ କାରବାର ହେଉଥିବା ବେଳେ ପାରାଦ୍ୱୀପ ବନ୍ଦରରେ ତାହାର ୮.୭୫% ପରିମାଣ ପଣ୍ୟଦ୍ରବ୍ୟ କାରବାର କରାଯାଇଛି । ଏହି ପରିମାଣ ୨୦୨୦ ମସିହା ବେଳକୁ ୨୦% ପରିମାଣକୁ ବୃଦ୍ଧି ପାଇବ ବୋଲି ଆକଳନ କରାଯାଇଛି । ଚଳିତ ଶତାବ୍ଦୀର ୨୦୧୬-୨୦୧୭ ଆର୍ଥିକ ବର୍ଷ ସୁଦ୍ଧା ପାରାଦ୍ୱୀପ ବନ୍ଦରରୁ ୧୦୦ ନିୟୁତ ମେଟ୍ରିକ ଟନ୍ କାରବାର ହେବ ବୋଲି ନିମ୍ନମତେ ପରିକଳ୍ପନା କରାଯାଇଛି ।

୨୦୧୭ ମସିହା ପରେ ପାରାଦ୍ୱୀପ ବନ୍ଦରର ପଣ୍ୟଦ୍ରବ୍ୟ କାରବାର ଦୁଇତିନି ବର୍ଷ ମଧ୍ୟରେ ଦ୍ୱିଗୁଣିତ ହେବ ଏହାର କାରଣକୁ ନିମ୍ନମତେ ବର୍ଣ୍ଣନା କରାଯାଇପାରେ ।

୧) ପାରାଦ୍ୱୀପ ବନ୍ଦରର ଅଭ୍ୟନ୍ତରୀଣ ବର୍ଥ ସଂଖ୍ୟା ୨୦କୁ ଅତିକ୍ରମ କରିବ ।

୨) ସମସ୍ତ ବର୍ଥ ନିକଟରେ ପଣ୍ୟଦ୍ରବ୍ୟ ବୋଝେଇ ଓ ଖଲାସ ନିମିତ୍ତ ଅତ୍ୟାଧୁନିକ ଯନ୍ତ୍ର ବ୍ୟବସ୍ଥା କରାଯାଇ ବର୍ତ୍ତମାନର କ୍ଷମତାକୁ ବହୁଗୁଣିତ କରାଯିବ ।

୩) ସାଗର ମଧ୍ୟରେ ଆଉ ଦୁଇଟି ଏକକ ଭାସମାନ ଜାହାଜ ରହଣି ସ୍ଥଳ (ସିଙ୍ଗିଲ ମୁରିଙ୍ଗ ପଏଣ୍ଟ) ପ୍ରତିଷ୍ଠା କରାଯାଇ ତିନି ଲକ୍ଷରୁ ଅଧିକ ପରିମାଣର ପଣ୍ୟଦ୍ରବ୍ୟ ପରିବହନ କରୁଥିବା ବୃହତ୍ ଜାହାଜ ବା 'ଭେରି ଲାର୍ଜ କୃଡ୍ ଅଏଲ୍ କ୍ୟାରିୟରରୁ ତୈଳ ଅପସାରଣ କରାଯାଇପାରିବ ।

୪) ପାରାଦ୍ୱୀପ ବନ୍ଦରର ମଧୁବନ, ନୂଆବଜାର ଅଞ୍ଚଳରୁ ପ୍ରଶାସନିକ ଭବନ ଓ ଆବାସ ଗୃହଗୁଡିକୁ ଭଙ୍ଗାଯାଇ ପ୍ରାୟ ଚାରିହଜାର ଏକର ଖାଲି ଜମି ପଣ୍ୟଦ୍ରବ୍ୟ ଗଚ୍ଛିତ କରିବା ନିମିତ୍ତ ବ୍ୟବସ୍ଥା ହେବ ।

୫) ପଣ୍ୟଦ୍ରବ୍ୟ ପରିବହନକୁ କ୍ଷୀପ୍ର କରିବା ପାଇଁ ପାରାଦ୍ୱୀପକୁ ଖଣିଜ ଅଞ୍ଚଳ ତଥା କଟକ ଏବଂ ଭୁବନେଶ୍ୱରରୁ ପାଞ୍ଚଟି ରେଳପଥର ସୁବିଧା ହୋଇଥିବ ।

୬) ସଡକ ପରିବହନ କ୍ଷେତ୍ରରେ ଶୀଘ୍ରତା ନିମିତ୍ତ ଭୁବନେଶ୍ୱରଠାରୁ ପାରାଦ୍ୱୀପ ପର୍ଯ୍ୟନ୍ତ ଏକ ପ୍ରଶସ୍ତ ରାଜପଥ ନିର୍ମାଣ କରାଯିବ ।

୭) କଟକ ପାରାଦ୍ୱୀପ ରାସ୍ତାର ବିଭିନ୍ନ ଅଞ୍ଚଳରେ ଉଡନ୍ତାପୋଲ ବା ଫ୍ଲାଇ ଓଭର ନିର୍ମାଣ କରାଯାଇ ଅଧିକ ବେଗରେ ଯାନ ଚଳାଚଳ ନିମିତ୍ତ ବ୍ୟବସ୍ଥା ହେବ ।

| ବର୍ଷ | ଖଣିଜତୈଳ | ଲୁହାପଥର | କୋଇଲା | ଲୌହବାକ୍ସ ବା କଣ୍ଟେନରରେ ପଣ୍ୟଦ୍ରବ୍ୟ | ଅନ୍ୟାନ୍ୟ ପଣ୍ୟଦ୍ରବ୍ୟ | ସର୍ବମୋଟ |
|---|---|---|---|---|---|---|
| ୨୦୦୮-୦୯ | ୩.୨୪ | ୧୪.୨୭ | ୨୦.୧୬ | ୦.୦୩ | ୮.୭୧ | ୪୬.୪୧ |
| ୨୦୦୯-୧୦ | ୧୧.୮୦ | ୧୫.୦୦ | ୨୧.୦୦ | ୦.୨୦ | ୯.୦୦ | ୫୭.୦୧ |
| ୨୦୧୬-୧୭ | ୩୦.୦୦ | ୨୫.୦୦ | ୩୦.୦୦ | ୧.୦୦ | ୧୪.୦୦ | ୧୦୦.୦୦ |

୮) କଟକ ଚଣ୍ଡିଖୋଲ ଓ ଚଣ୍ଡିଖୋଲରୁ ବିଭିନ୍ନ ଖଣି ଅଞ୍ଚଳକୁ ଯାଉଥିବା ରାସ୍ତାର ପ୍ରଶସ୍ତିକରଣ କରାଯାଇ ପଣ୍ୟଦ୍ରବ୍ୟ ପରିବହନ ନିମିତ୍ତ ସ୍ୱତନ୍ତ୍ର ରାସ୍ତା ବା କ୍ୟାପିଟିଭ୍ ରୋଡ୍ ଘୋଷିତ ହେବ ।

୯) ପାରାଦ୍ୱୀପ ବନ୍ଦରର ଗଭୀରତାକୁ ବୃଦ୍ଧି କରାଯାଇ ବର୍ତ୍ତମାନର ୧୪ ମିଟରରୁ ୨୫ମିଟର କରାଯିବ । ଯାହାଫଳରେ କି ୨ଲକ୍ଷ ଟନ୍ ପଣ୍ୟଦ୍ରବ୍ୟ ପରିବହନ କରୁଥିବା ଜାହାଜ ବନ୍ଦର ମଧ୍ୟକୁ ଅନାୟାସରେ ପ୍ରବେଶ କରିପାରିବ ।

୧୦) ଭାରତୀୟ ତୈଳ ନିଗମ, ଏସାର ଇସ୍ପାତ ସଂସ୍ଥା, ପୋସ୍କୋ ଇସ୍ପାତ ସଂସ୍ଥା ଭଳି ବୃହତ୍ ଶିଳ୍ପ ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିରେ ସମ୍ପୂର୍ଣ୍ଣ କ୍ରୀୟାଶୀଳ ହୋଇ ବନ୍ଦରର ବହୁଳ ବ୍ୟବହାର କରୁଥିବେ ।

୧୧) ଭାରତ ସରକାରଙ୍କର ବର୍ତ୍ତମାନ ନିଷ୍ପତ୍ତି ଅନୁଯାୟୀ ବହୁ ବେସରକାରୀ ସଂସ୍ଥା ସହିତ ରାଜିନାମା କରାଯାଇ ବହୁ ନୂତନ ବର୍ଥ ପଣ୍ୟଦ୍ରବ୍ୟ ନିର୍ମାଣ ବୋଝେଇ ଓ ଖଲାସ ବ୍ୟବସ୍ଥାର ସମ୍ପୂର୍ଣ୍ଣ ଦାୟିତ୍ୱ ଓ ପରିଚାଳନା ଭାର ପ୍ରଦାନ କରାଯାଇଥିବ ।

ଉପରୋକ୍ତ ସମସ୍ତ କାରଣ ଯୋଗୁଁ ପାରାଦ୍ୱୀପ ବନ୍ଦର ୨୦୨୦ ମସିହା ବେଳକୁ ଭାରତର ଶ୍ରେଷ୍ଠ ବନ୍ଦର ଭାବରେ ପ୍ରତିଷ୍ଠିତ ହୋଇ ବିଶ୍ୱର ପ୍ରଥମ ଦଶଟି ବନ୍ଦର ମଧ୍ୟରେ ନିଜର ସ୍ଥିତିକୁ ସୁଦୃଢ କରିଥିବ । ଏହି ମତକୁ ଗ୍ରହଣ କରିବା ପାଇଁ କେହି କେହି ଆଶଙ୍କା ପ୍ରକାଶ କରିପାରନ୍ତି । ସେହି ଆଶଙ୍କାଗୁଡିକୁ ନିମ୍ନମତେ ପ୍ରକାଶ କରାଯାଇପାରେ-

୧) ଭାରତରେ ବହୁ ନୂତନ ବନ୍ଦର ସୃଷ୍ଟି ଦ୍ୱାରା ପାରାଦ୍ୱୀପ ବନ୍ଦର ଉପରେ ପଣ୍ୟଦ୍ରବ୍ୟ ପରିବହନ ଚାପ ହ୍ରାସ ପାଇପାରେ ।

୨) ବେସରକାରୀ ବନ୍ଦରଗୁଡିକ ସରକାରଙ୍କର ନିୟନ୍ତ୍ରଣରେ ଥିବା ବନ୍ଦରଠାରୁ ଅଧିକ କ୍ରିୟାଶୀଳ ହୋଇପାରନ୍ତି । କାରଣ ବନ୍ଦରର ବିଭିନ୍ନ ଦେୟକୁ ସେମାନେ ଶୀଘ୍ର ଘୋଷଣା ଓ ପରିବର୍ତ୍ତନ କରିବାକୁ ସମର୍ଥ ହେଉଥିବା ବେଳେ ସରକାରୀ ବନ୍ଦରରେ ସେହି ଦେୟ ନିର୍ଦ୍ଧାରଣ ବା ପରିବର୍ତ୍ତନ ନିମିତ୍ତ ବିଭିନ୍ନ ସ୍ତରରେ ଅନୁମୋଦନ ଯୋଗୁଁ ବହୁ ସମୟ ଲାଗିବ ।

ଉପରୋକ୍ତ ଦୁଇଟି ମତ ଏବେ ମଧ୍ୟ ବହୁବ୍ୟକ୍ତି ପ୍ରକାଶ କରୁଛନ୍ତି । ଏହି ପ୍ରାବନ୍ଧିକଙ୍କ ଦୃଷ୍ଟିରେ କୌଣସି ଏକ ନୂତନ ବୃହତ୍ ବନ୍ଦର ସୃଷ୍ଟି କରି ତାହାକୁ ପ୍ରତିଯୋଗିତାମୂଳକ ଭାବରେ ଚଳାଇବା ନିମିତ୍ତ ବହୁ ଅର୍ଥ ଓ ସମୟର ଆବଶ୍ୟକତା ରହିଛି । ୧୯୬୨ ମସିହାରେ ପାରାଦ୍ୱୀପ ବନ୍ଦର ନିର୍ମାଣ କାର୍ଯ୍ୟ ଆରମ୍ଭ ହେବା ବେଳେ କେହି ଆଶା କରିନଥିଲେ ଯେ, ବନ୍ଦରର ଉତ୍ତରଦିଗରେ ପ୍ରାୟ ଛଅଶହ ଏକର ଜମି ସମୁଦ୍ର ଦ୍ୱାରା କ୍ଷୟ ହେବ ଏବଂ ଏହି କ୍ଷୟକୁ ପ୍ରତିହତ କରିବାକୁ ପ୍ରାଥମିକ ସ୍ତରରେ କୋଟି କୋଟି ଟଙ୍କା ବ୍ୟୟ କରାଯାଇ ପରବର୍ତ୍ତୀ ସମୟରେ ସମୁଦ୍ର ପ୍ରାଚୀର ନିର୍ମାଣ କରାଯାଇ ପ୍ରତିବର୍ଷ ରକ୍ଷଣାବେକ୍ଷଣ ନିମିତ୍ତ ସେହି ବ୍ୟୟ ହୋଇଚାଲିଥିବ । ତେଣୁ ବନ୍ଦର ନିର୍ମାଣ ହେବାପରେ ବହୁ ଅଦୃଶ୍ୟ ସାମୁଦ୍ରିକ ବାଧା ଓ ସମସ୍ୟା ସୃଷ୍ଟିହେବାର ସମ୍ଭାବନା ନୂତନ ବନ୍ଦରଗୁଡିକ ପାଇଁ ରହିବ । ସମଗ୍ର ବିଶ୍ୱରେ ପରିବେଶ ସୁରକ୍ଷା କରିବା ପାଇଁ ବହୁ ଆଇନ୍ ପ୍ରଣୟନ ହୋଇ ସାରିଲାଣି । ସେହି ଆଇନ୍ ଦୃଷ୍ଟିରୁ ବର୍ତ୍ତମାନ ନୂତନ ବନ୍ଦର ନିମିତ୍ତ ସମୁଦ୍ର ବା ନଦୀର ଉପକୂଳ, ତତ୍‌ନିକଟ ଜଙ୍ଗଲ ଓ ଜଳଚର ଜୀବକୁ ନଷ୍ଟ କରିବା ପାଇଁ ଅନୁମତି ମିଳିବ ନାହିଁ । ସମସ୍ତ ବୃହତ୍ ବନ୍ଦରକୁ ଅଧିକ ଗଭୀର କରିବା ପାଇଁ ସୁଯୋଗ ମିଳିବ ନାହିଁ । କାରଣ ଅନେକ ପ୍ରତିଷ୍ଠିତ ବନ୍ଦରକୁ ଜାହାଜ ପ୍ରବେଶ ନିମିତ୍ତ ଦୀର୍ଘ ପଥରେ ଜଳଯାତ୍ରା କରିବାକୁ ପଡୁଛି ଓ ସେ ସମସ୍ତ ଦୀର୍ଘ ଜଳକ୍ଷେତ୍ରକୁ ଗଭୀର କରି ତାହାର ରକ୍ଷଣାବେକ୍ଷଣ ନିମିତ୍ତ ଯେଉଁ ବିପୁଳ ଅର୍ଥ ଆବଶ୍ୟକ, ତାହା ବନ୍ଦରର ଅର୍ଥନୈତିକ ସ୍ଥିତି ଦୃଷ୍ଟିରୁ ସମ୍ଭବପର ହୋଇପାରିବ ନାହିଁ । ବହୁ ବନ୍ଦରର ନିମ୍ନଭାଗ ପଥର ହୋଇଥିବାରୁ ତାହାକୁ ଅଧିକ ଗଭୀର କରିବା ନିମିତ୍ତ ବହୁ ଅର୍ଥର ଆବଶ୍ୟକତା ରହିବ ଓ ତାହା ବ୍ୟବସାୟିକ ଦୃଷ୍ଟିକୋଣରୁ ଗ୍ରହଣୀୟ ହେବନାହିଁ ।

ପାରାଦ୍ୱୀପ ବନ୍ଦରର ନିମ୍ନଭାଗ ହାଲୁକା ବାଲୁକାମୟ ହୋଇଥିବାରୁ ଏହାକୁ ଆବଶ୍ୟକ ଅନୁଯାୟୀ ଅଳ୍ପ ଖର୍ଚ୍ଚରେ ଅଧିକ ଗଭୀର କରାଯାଇପାରିବ ଓ ଅନ୍ୟ ବନ୍ଦର ତୁଳନାରେ କମ୍ ଖର୍ଚ୍ଚରେ ବର୍ଷସାରା ତାହାର ରକ୍ଷଣାବେକ୍ଷଣ କରାଯାଇପାରିବ । ପାରାଦ୍ୱୀପ ବନ୍ଦରର ପ୍ରବେଶ ପଥଠାରୁ ୨୦ କିଲୋମିଟର ପର୍ଯ୍ୟନ୍ତ ସମୁଦ୍ରରେ ପ୍ରାକୃତିକ ୨୫ମିଟରରୁ ଅଧିକ ଗଭୀରତା ରହିଛି । ତେଣୁ ପାରାଦ୍ୱୀପ ବନ୍ଦରର ନିକଟରେ ଜାହାଜର ଜଳପଥକୁ ଅଧିକ ଗଭୀର କରିବା ନିମିତ୍ତ ଅର୍ଥ ଖର୍ଚ୍ଚ ହେବାର ଆବଶ୍ୟକତା ନାହିଁ । ଭାରତର ବିଭିନ୍ନ ବୃହତ୍ ବନ୍ଦର ନିକଟରେ ଖାଲି ଜମି ନାହିଁ । ଭାରତର ଅଧିକାଂଶ ବୃହତ୍ ବନ୍ଦର ବଡ ସହରର ଏକ ଅଂଶ । ତେଣୁ ସେହି ବନ୍ଦରଗୁଡିକ ନିକଟରେ ନୂତନ ବନ୍ଦରଭିତ୍ତିକ ଶିଳ୍ପ ପ୍ରତିଷ୍ଠା କରିବା ନିମିତ୍ତ ଜମିର ଅଭାବ ରହିଛି । ମାତ୍ର ପାରାଦ୍ୱୀପ ବନ୍ଦର ନିକଟରେ ଅପର୍ଯ୍ୟାପ୍ତ ଖାଲି ଜମି ରହିଛି ଯାହାକୁ କି ବନ୍ଦର ଭିତ୍ତିକ ନୂତନ ଶିଳ୍ପ ନିମିତ୍ତ ବ୍ୟବହାର କରାଯାଇପାରିବ । ବନ୍ଦର

ନିକଟରେ ମୂଷାଡିଆ ଜଙ୍ଗଲ, କାଉଡିଆ, ସାରଳୀକୁଦ, ଯୋଗିଧନ କନ୍ଧା, ବୋଇତରୁହା କୁଦ, ଖରନାସି ପ୍ରଭୃତି ବହୁ ଦ୍ୱୀପପୁଞ୍ଜମାନ ରହିଛି । କେବଳ କ୍ଷୁଦ୍ର ସେତୁ ନିର୍ମାଣ କରାଯାଇ ସେହିସବୁ ଜମିକୁ ପାରାଦ୍ୱୀପ ବନ୍ଦର ସହିତ ଗମନାଗମନ ନିମିତ୍ତ ବ୍ୟବହାର କରାଯାଇପାରିବ ବା ନାବ ବ୍ୟବହାର ଓ ଊର୍ଦ୍ଧ୍ୱରେ ପଣ୍ୟଦ୍ରବ୍ୟ ପରିବହନ ପଟି (ଓଭର ହେଡ୍ କନ୍‌ଭେୟର ବେଲଟ୍) ଦ୍ୱାରା ମଧ୍ୟ ସେହି ଜମିକୁ ଶିଳ୍ପ ପ୍ରତିଷ୍ଠା ଉପଯୋଗୀ କରାଯାଇ ପାରିବ । ଆଧୁନିକ ବୈଜ୍ଞାନିକ ପ୍ରକ୍ରିୟାରେ ମାଲ ପରିବହନରେ ଶୀଘ୍ରତା ନିମିତ୍ତ ଯାନ୍ତ୍ରିକ ଅଭ୍ୟୁଦୟ ଅଣାଯାଇପାରେ ମାତ୍ର ଏକ ଇଂଚ ନୂଆ ଜମି ସୃଷ୍ଟି କରିବା ସମ୍ଭବପର ନୁହେଁ । ତେଣୁ ଆଧୁନିକ ଯୁଗରେ ସ୍ଥଳଭାଗ ବା ଖାଲି ଜମିର ମୂଲ୍ୟକୁ ଅମୂଲ୍ୟ କହିଲେ ଅତ୍ୟୁକ୍ତି ହେବନାହିଁ । କୋଟିଏ ଟଙ୍କା ମୂଲ୍ୟର ଅତ୍ୟାଧୁନିକ ଯନ୍ତ୍ରପାତି ପ୍ରସ୍ତୁତ କରିହେବ, ମାତ୍ର ଏକ ଟଙ୍କାର ନୂଆ ଜମି ତିଆରି କରିବା ସମ୍ଭବପର ନୁହେଁ । ପ୍ରାକୃତିକ ଜଳଭାଗକୁ ପୋତି ନୂଆ ଜମି ତିଆରି କରିବାକୁ ଚେଷ୍ଟା କରାଗଲେ ତାହାର ପ୍ରତିକୂଳ ପ୍ରଭାବ ନିକଟବର୍ତ୍ତୀ ଉପକୂଳ ଓ ସାମଗ୍ରିକ ଭାବରେ ପରିବେଶ ଉପରେ ପଡିବ । ଫଳରେ ମହର୍ଗରୁ ଯାଇ କାନ୍ତାରରେ ପଡିବାଭଳି ଅବସ୍ଥା ସୃଷ୍ଟି ହେବ । ତେଣୁ ନିକଟରେ ବହୁ ଆୟତନର ଖାଲିଜମି ରହିଥିବା ହେତୁ ୨୦୨୦ ମସିହାବେଳକୁ ବିଭିନ୍ନ ଉନ୍ନତ ବନ୍ଦରଭିତ୍ତିକ ଶିଳ୍ପାନୁଷ୍ଠାନ ପାରାଦ୍ୱୀପ ବନ୍ଦର ନିକଟରେ ସୃଷ୍ଟି ହୋଇ ଆମଦାନୀ ଓ ରପ୍ତାନୀ ଦ୍ରବ୍ୟର ପରିମାଣ ବଢାଇବାକୁ ସମର୍ଥ ହେବେ । ସମଗ୍ର ବିଶ୍ୱରେ ବାଣିଜ୍ୟ କ୍ଷେତ୍ରରେ ଜଗତୀକରଣର ପ୍ରଭାବ ଯୋଗୁଁ ବେସରକାରୀ ସଂସ୍ଥାଗୁଡିକୁ ସରକାରୀ ନିୟନ୍ତ୍ରଣରୁ ଯଥା ସମ୍ଭବ ମୁକ୍ତ କରି ସ୍ୱାଧୀନ ଭାବେ ପରିଚାଳିତ ହେବା ପାଇଁ ଆବଶ୍ୟକ ଆଇନ୍ ବିଭିନ୍ନ ଦେଶ ପ୍ରଣୟନ କରି ସାରିଲେଣି । ତଦନୁସାରେ ସରକାରୀ ଜମିରେ ଘରୋଇ ସଂସ୍ଥାକୁ ନିଜ ଖର୍ଚ୍ଚରେ ବିଭିନ୍ନ ଶିଳ୍ପ ପ୍ରତିଷ୍ଠା ଏବଂ ପରିଚାଳନା ନିମିତ୍ତ ନିର୍ଦ୍ଦିଷ୍ଟ ସମୟ ପାଇଁ ଅନୁମତି ଦିଆଯାଉଛି । ଏଭଳି ପ୍ରକଳ୍ପକୁ ସରକାରୀ ଓ ଘରୋଇ ସହଯୋଗ 'ବା' ପବ୍ଲିକ ପ୍ରାଇଭେଟ୍ ପାର୍ଟନରସିପ୍ ବୋଲି କୁହାଯାଇଛି । ସମଗ୍ର ଭାରତବର୍ଷରେ ୧୩ଟି ବୃହତ୍ ବନ୍ଦର ମଧ୍ୟରୁ ପ୍ରଥମେ ପାରାଦ୍ୱୀପ ବନ୍ଦରରେ ଦୁଇଟି ବେସରକାରୀ ସଂସ୍ଥା ପାରାଦ୍ୱୀପ ବନ୍ଦର ସହିତ ଉପରୋକ୍ତ ଚୁକ୍ତି ସ୍ୱାକ୍ଷର କରିଛନ୍ତି । ୨୦୦୯ ମସିହା ଜୁଲାଇ ମାସ ୧ ତାରିଖରେ ଘରୋଇ ସଂସ୍ଥା ବ୍ଲୁ ଓ୍ୱାଟର ଆଇରନ ଓର ଟର୍ମିନାଲ ପ୍ରାଇଭେଟ୍ ଲିମିଟେଡ୍ ସହିତ ବାର୍ଷିକ ୧୦ନିୟୁତ ଟନ୍ ଲୁହାପଥର ରପ୍ତାନୀ ନିମିତ୍ତ କ୍ଷମତା ବିଶିଷ୍ଟ ଅତ୍ୟାଧୁନିକ ବର୍ଥ ଓ ଆନୁଷଙ୍ଗିକ ବ୍ୟବସ୍ଥା ନିଜ ଖର୍ଚ୍ଚରେ କରିବା ପାଇଁ ଚୁକ୍ତି ବଦ୍ଧ ହୋଇଛନ୍ତି । ସେହିପରି ୨୦୦୯ ମସିହା ନଭେମ୍ବର ମାସ ୧୦ ତାରିଖରେ ଏସ୍‌ଆର୍ ପାରାଦ୍ୱୀପ ଟର୍ମିନାଲ ଲିମିଟେଡ୍ ଘରୋଇ ସଂସ୍ଥା ସହିତ ନିଜ ଖର୍ଚ୍ଚରେ ବାର୍ଷିକ ୧୦ନିୟୁତ ଟନ୍ କ୍ଷମତା ବିଶିଷ୍ଟ କୋଇଲା ବର୍ଥ ଓ ଆନୁଷଙ୍ଗିକ ଯନ୍ତ୍ରପାତି ପ୍ରତିଷ୍ଠା ପାଇଁ ଚୁକ୍ତିବଦ୍ଧ ହୋଇଛନ୍ତି । ସମଗ୍ର ଭାରତରେ ବୃହତ ବନ୍ଦର ଇତିହାସରେ ପ୍ରଥମ ଥର ପାଇଁ ପାରାଦ୍ୱୀପ ବନ୍ଦର ଘରୋଇ ସଂସ୍ଥା ସହ ଏଭଳି ଚୁକ୍ତି କରିବା ପାଇଁ ସମର୍ଥ ହୋଇଛି । ଏଥିରୁ ସ୍ପଷ୍ଟ ଅନୁମିତ ଯେ ଭାରତର ଅନ୍ୟାନ୍ୟ ବୃହତ୍ ବନ୍ଦର ଅପେକ୍ଷା ପାରାଦ୍ୱୀପ ବନ୍ଦରରେ ନୌବାଣିଜ୍ୟ ଭିତ୍ତିକ ଘରୋଇ ସଂସ୍ଥାମାନେ ନିଜ ସମ୍ବଳ ଉପଯୋଗ କରି ବ୍ୟବସାୟ ନିମିତ୍ତ ଅଧିକ ଆଗ୍ରହ ପ୍ରକାଶ କରୁଛନ୍ତି ।

ବିଗତ ୧୦ ବର୍ଷର କ୍ରମବର୍ଦ୍ଧିଷ୍ଣୁ ପଣ୍ୟଦ୍ରବ୍ୟ କାରବାର, ବନ୍ଦରର ପ୍ରାକୃତିକ ଗଭୀରତାର ବୈଭବ, ବନ୍ଦର ନିକଟରେ ଉପଲବ୍ଧ ବହୁ ଖାଲି ଜମି ଓ ଉନ୍ନତମାନର ଗମନାଗମନ ସୁବିଧା ଯୋଗୁଁ ୨୦୨୦ ମସିହାରେ ପାରାଦ୍ୱୀପ ବନ୍ଦର ଯେ ଭାରତର ଶ୍ରେଷ୍ଠ ବୃହତ୍ ବନ୍ଦର ହୋଇଥିବ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଆତିଥ୍ୟ, ଏମ୍.ଆଇ.ଜି-୧-୨୨୭
ସତ୍ୟସାଇ ଏନ୍‌କ୍ଲେଭ, ଲେନ୍-୨୨,
କୋଲଥିଆ, ଖଣ୍ଡଗିରି, ଭୁବନେଶ୍ୱର-୭୫୧୦୩୦



# ଉତ୍କଳୀୟ ସଂସ୍କୃତିରେ ଲକ୍ଷ୍ମୀପୂଜାର ବୈଶିଷ୍ଟ୍ୟ

ଡକ୍ଟର ନାରାୟଣ ପଣ୍ଡା

ଉତ୍କୃଷ୍ଟ କଳାର ଦେଶ ଉତ୍କଳ । କଳା ଓ ଲୀଳାର ପବିତ୍ରଭୂମି ଉତ୍କଳ । ଉତ୍କଳର ଉତ୍କର୍ଷ ସମ୍ପର୍କରେ କପିଳ ସଂହିତାରେ ବିସ୍ତୃତ ଭାବରେ ବର୍ଣ୍ଣିତ । ଦେଶ ମଧ୍ୟରେ ଭାରତ ଓ ପ୍ରଦେଶ ମଧ୍ୟରେ ଉତ୍କଳ ହିଁ ଶ୍ରେଷ୍ଠ । ଯେଉଁ ଦେଶର କଳା, ସଂଗୀତ, ସାହିତ୍ୟ ଉତ୍କୃଷ୍ଟ ତାହାହିଁ ଉତ୍କଳ ନାମରେ ଖ୍ୟାତ । ଉତ୍କଳର ପରମ ପରାକ୍ରମଶାଳୀ ଅଶୋକ ଚଣ୍ଡା ଶୋକରୁ ଧର୍ମାଶୋକରେ ପରିଣତ ହୋଇଥିଲେ । ଉତ୍କଳର ମହାନ୍ ସଂସ୍କୃତିର ଆଦର୍ଶରେ ଉଦ୍‌ବୁଦ୍ଧ ହୋଇ ସମ୍ରାଟ ଅଶୋକ ବୌଦ୍ଧ ଧର୍ମରେ ଦୀକ୍ଷିତ ହୋଇ ସମଗ୍ର ବିଶ୍ୱରେ ବିଶ୍ୱ ପ୍ରେମର ଜାଗରଣ ପାଇଁ କାୟମନ ବାକ୍ୟରେ ଜୀବନ ଉତ୍ସର୍ଗ କରିଥିଲେ । ଉପନିଷଦର ଆଦର୍ଶ ଓ ବେଦର ଆଦର୍ଶରେ ଯୁଗଯୁଗ ଧରି ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ ଉତ୍କଳୀୟ ସଂସ୍କୃତି ।



ଉତ୍କଳର ସୌନ୍ଦର୍ଯ୍ୟ ଓ ବୈଚିତ୍ର୍ୟକୁ ହୃଦୟଙ୍ଗମ କରି ଭଗବାନ ବୁଦ୍ଧ ପ୍ରକାଶ କରିଥିଲେ–'ଚିତ୍ରଂ ଜମ୍ବୁଦ୍ୱୀପଂ ମନୋରମଂ ଜୀବିତଂ ମନୁଷ୍ୟାଣାମ୍' । ବାସ୍ତବରେ ବିଶାଳ ଭୂଖଣ୍ଡର ଐତିହ୍ୟ ଓ ପରମ୍ପରା ବିଶ୍ୱମାନସକୁ ଚକିତ ଓ ବିସ୍ମିତ କରିଛି । ମନୁଙ୍କ ମତ ଅନୁସାରେ ଏହି ଦେଶରେ ଜନ୍ମଲାଭ କରିଥିବା ଅଗ୍ରଜନ୍ମାମାନେ ସମଗ୍ର ପୃଥିବୀକୁ ନୈତିକ ଓ ଆଧ୍ୟାତ୍ମିକ ଶିକ୍ଷାପ୍ରଦାନ କରିଛନ୍ତି । ଭାରତବର୍ଷକୁ ବିଶ୍ୱର ଆଧ୍ୟାତ୍ମିକ ଜ୍ଞାନଗୁରୁ କହିଲେ ବାର୍ତ୍ତାର ଅପଳାପ ହେବ ନାହିଁ । ଦେବତାମାନେ ଏହି ପୁଣ୍ୟ କ୍ଷେତ୍ରରେ ମନୁଷ୍ୟ ଭାବରେ ଜନ୍ମଗ୍ରହଣର ସୌଭାଗ୍ୟ ଅର୍ଜନ କରିବା ନିମନ୍ତେ ସର୍ବଦା ଆଶାୟୀ ଥିବା କଥା ଶ୍ରୀମଦ୍ ଭାଗବତ ମହାପୁରାଣରେ ଉଲ୍ଲେଖ ଅଛି ।

ପ୍ରାକୃତିକ ବୈଭବ ଓ ସାଂସ୍କୃତିକ ସୌରଭ ଭାରତବର୍ଷକୁ କରିଛି ସମୃଦ୍ଧ । ସଂସ୍କୃତ ଭାରତବର୍ଷର ପ୍ରାଚୀନତମ ଭାଷା । ପ୍ରାଚୀନଭାଷା, ଭାରତବର୍ଷର ପ୍ରାକୃତିକ ବୈଚତ୍ର୍ୟ ଓ ସାଂସ୍କୃତିକ ଐତିହ୍ୟର ସ୍ପଷ୍ଟ ସ୍ୱାକ୍ଷର ବହନ କରି ପୁଣ୍ୟତୋୟା ଜାହ୍ନବୀ ଦେବ ଭୂମିରେ ଚଳଚଞ୍ଚଳ ଓ ଗତିଶୀଳ ।

ବହୁଘାତ ପ୍ରତିଘାତର ସମ୍ମୁଖୀନ ହୋଇମଧ୍ୟ ଏହି ପବିତ୍ର ମନ୍ଦାକିନୀ ଆଜିବି ଜନ୍ମଭୂମି ଜନନୀର ପଦପ୍ରକ୍ଷାଳନ କରିବା ନିମନ୍ତେ ସର୍ବଦା ତତ୍ପର । ଉତ୍କଳୀୟ ସଂସ୍କୃତି ଜଗନ୍ନାଥ ସଂସ୍କୃତି । ସଂସ୍କୃତିର ମୂଳ ମନ୍ତ୍ର ହେଉଛି– ସାମ୍ୟ, ମୈତ୍ରୀ, ବିଶ୍ୱପ୍ରେମ, ଗଭୀର ଉଦାର

ଦୃଷ୍ଟି ଭଙ୍ଗୀ, ବସ୍ତୁବାଦ ଓ ଆଧ୍ୟାତ୍ମବାଦ ମଧ୍ୟରେ ସମନ୍ୱୟର ସୃଷ୍ଟି । ବିଶ୍ୱରେ ଏକ ମହାନ୍ ଐଶ୍ୱରିକ ଶକ୍ତି ରହିଛି, ଯାହାକୁ ଶ୍ରୀଅରବିନ୍ଦ ଅତି ମାନସ ଶକ୍ତି ଭାବରେ ପ୍ରକାଶ କରିଛନ୍ତି । ଜୀବନର ପ୍ରତିଛନ୍ଦରେ ଏହା ପ୍ରକାଶିତ ଓ ଅନୁରଣିତ । ମଣିଷ ମାତ୍ରେ ହିଁ ସେହି ଅତି ମାନସ ଶକ୍ତିର ଏକ ଅଂଶ । ଜାତି-ଧର୍ମ-ବର୍ଣ୍ଣ-ନିର୍ବିଶେଷରେ ପୃଥିବୀର ସବୁ ମଣିଷ ସମାଜ ଏକ-ଉକ୍ତ ସାମ୍ୟଭାବ ଜଗନ୍ନାଥ ସଂସ୍କୃତିର ହେଉଛି ମୂଳମନ୍ତ୍ର । ବୈଦିକ ଯୁଗର ମୁନି-ଋଷିମାନେ ଉଦାତ୍ତ କଣ୍ଠରେ ପ୍ରକାଶ କରିଥିଲେ -

ସମାନୋ ମନ୍ତ୍ର ସମିତି
ସମାନମ୍ ସମନାଂ ମନଃ ସହଚିତ୍ତମେଷାମ ।
ସମାନଂ ମନ୍ତ୍ରମଭି ମନ୍ତ୍ରୟେ
ବଃ ସମାନେନ୍ ବୋ ଭବିଷ୍ୟ ଜୁହୋମି
ସମାନୀ ବ ଆକୂତୀ
ସମାନା ହୃଦୟାନିବଃ
ସମାନ ମସ୍ତୁ ବୋମନୋ
ଯଥାବଃ, ସୁସହାସତି ।

(ଋକ୍‌ବେଦ ୧୦ ମଣ୍ଡଳ ୧୯୧-୪)

ଅର୍ଥାତ୍- 'ତୁମ୍ଭମାନଙ୍କ ସ୍ତୁତି ଏକ ପ୍ରକାର- ଅନୁକରଣ ମଧ୍ୟ ଏକପ୍ରକାର ହେଉ- ମୁଁ ମଧ୍ୟ ତୁମ୍ଭମାନଙ୍କ ପରି ମନ୍ତ୍ରକୁ ଐକ୍ୟବିଧାନ ପାଇଁ ସଂସ୍କାର କରେ। ହେ ଦେବଗଣ ! ତୁମ୍ଭ ସମସ୍ତଙ୍କର ସାଧାରଣ ହବିଦ୍ୱାରା ମୁଁ ଆହୂତି ପ୍ରଦାନ କରୁଅଛି । ତୁମ୍ଭମାନଙ୍କର ସଂକଳ୍ପ ସମାନ ହେଉ । ତୁମ୍ଭମାନଙ୍କର ହୃଦୟ ସମୂହ ଓ ତୁମ୍ଭମାନଙ୍କର ଅନ୍ତଃକରଣ ସମାନ ହେଉ । ତୁମ୍ଭମାନଙ୍କ ମଧ୍ୟରେ ପରମ ଐକ୍ୟ ସୁପ୍ରତିଷ୍ଠିତ ହେଉ । ସମସ୍ତେ ସୁଖରେ ସୁସଂହତ ଜୀବନ ଯାପନ କରନ୍ତୁ' ଏହାହିଁ ଋକ୍‌ବେଦର ସାମ୍ୟ ଓ ମୈତ୍ରୀଭାବର ମୂଳମନ୍ତ୍ର । ବୈଦିକ ସଂସ୍କୃତି ହିଁ ଉତ୍କଳୀୟ ଜଗନ୍ନାଥ ସଂସ୍କୃତିର ପ୍ରାଣକେନ୍ଦ୍ର । ଉତ୍କଳୀୟ ସଂସ୍କୃତିର ଆଧାର ଆଧ୍ୟାତ୍ମିକତା ।

ଶ୍ରୀକ୍ଷେତ୍ରରେ ଆଦିବାସୀ, ହରିଜନ, ରାଜା, ପ୍ରଜା, ମନ୍ତ୍ରୀ ସମସ୍ତେ ସମାନ । ଜଗନ୍ନାଥ ଧାମରେ ସର୍ବଧର୍ମର ସମନ୍ୱୟ ଘଟିଛି ।

ହିନ୍ଦୁ, ବୈଷ୍ଣବ, ବୌଦ୍ଧ ଓ ଜୈନ, ଜାତି-ବର୍ଣ୍ଣ-ଧର୍ମ-ନିର୍ବିଶେଷରେ ସମସ୍ତେ ଜଗନ୍ନାଥଙ୍କୁ କାୟ-ମନ-ବାକ୍ୟରେ ଦେବତା ରୂପରେ ଗ୍ରହଣ କରିଛନ୍ତି । ଉତ୍କଳର ଶ୍ରୀକ୍ଷେତ୍ର ଭାରତର ଶ୍ରେଷ୍ଠ ଧର୍ମକ୍ଷେତ୍ର ରୂପେ ପରିଗଣିତ । ମନୀଷୀ ଶଙ୍କରାଚାର୍ଯ୍ୟ, ଚୈତନ୍ୟ, ସାଲବେଗ, ଜଗନ୍ନାଥ ଦାସ ଦୀନକୃଷ୍ଣ ପ୍ରଭୃତି କବି ସାଧୁସନ୍ଥ ଶ୍ରୀକ୍ଷେତ୍ରରେ ଭାବଭକ୍ତିର ସଂଗୀତ ଗାନ କରିଛନ୍ତି । ଜଗନ୍ନାଥ ସଂସ୍କୃତି ମଧ୍ୟରେ ଦ୍ରାବିଡ ଓ ଆର୍ଯ୍ୟ ସଭ୍ୟତା ବସ୍ତୁବାଦ ଓ ଆଧ୍ୟାତ୍ମବାଦ ମଧ୍ୟରେ ଯେଉଁ ସମନ୍ୱୟ ପରିଦୃଷ୍ଟ ହୁଏ, ତାହାର ମୂଳମନ୍ତ୍ର କଠୋପନିଷଦରେ ସ୍ଥାନୀତ ।

'ଯଦା ସର୍ବେ ପ୍ରମୁଚ୍ୟନ୍ତେ କାମା ଯେତ୍‌ସ୍ୟ ହୃଦିଶ୍ରିତାଃ
ଅଥ ମର୍ତ୍ତ୍ୟୋମୃଣେ ଭବତ୍ୟତ୍ର ବ୍ରହ୍ମ ସମଶ୍ନୁତେ ॥

ମରଣଶୀଳ ମଣିଷ ତା'ର ସ୍ୱଭାବର ପରିଶୁଦ୍ଧି ବଳରେ ଅମୃତ ଲାଭକରେ ଏବଂ ଏହି ଦେହ ମାଧ୍ୟମରେ ବ୍ରହ୍ମବାଦୀ ବ୍ରହ୍ମ ଉପଲବ୍ଧି କରେ । ଉପନିଷଦର ଲକ୍ଷ୍ୟ କୌଣସି ଅପାର୍ଥିବ ଅତିମାନବିକ ଆଦର୍ଶ ପ୍ରତି ଉଦ୍ଦିଷ୍ଟ ନୁହେଁ- ଏହି ଜରାଜର୍ଜ୍ଜରିତ ଯୁଗ ଯନ୍ତ୍ରଣା ବିକ୍ଷୋଭିତ ପୃଥିବୀର ମଣିଷ ଜୀବନର ସାର୍ଥକ ଉପାୟନ ହିଁ ଏହାର ଏକମାତ୍ର ଲକ୍ଷ୍ୟ । ଏହି ପ୍ରକାର ଜୀବନଚେତନା ହିଁ ଉତ୍କଳୀୟ ସଂସ୍କୃତି ଓ ସାହିତ୍ୟରେ ପ୍ରକାଶିତ । ଜୀବନଚେତନାରେ ଉଦ୍‌ବୁଦ୍ଧ ହୋଇ ଉତ୍କଳର ସାରସ୍ୱତ ସ୍ରଷ୍ଟା, ସାହିତ୍ୟ ସଂସ୍କୃତିକୁ ସମୃଦ୍ଧ କରିଛନ୍ତି । ଦତ୍ତ, ଦମୟତ ଓ ଦୟଧ୍ୱମ ଏହି ତ୍ରିଧାରା ଉତ୍କଳୀୟ ସଂସ୍କୃତିର ପରମ ଆଦର୍ଶ । ଦତ୍ତ ଅର୍ଥ ତ୍ୟାଗ, ଦମୟତ ଅର୍ଥ ସଂଯମ ଓ ଦୟଧ୍ୱମର ଅର୍ଥ କରୁଣା, ଏହାହିଁ ଉତ୍କଳୀୟ ଜନମାନସକୁ ପ୍ରଭାବିତ କରିଆସିଛି । ଭଗବତ ବିଶ୍ୱାସ, ପାପପୁଣ୍ୟର ବିଚାର, ଦାନ, ଧର୍ମ ଅହିଂସା-ଉତ୍କଳୀୟ ସଂସ୍କୃତିର ବୈଶିଷ୍ଟ୍ୟ ।

ଉତ୍କଳର କଳା ଭାସ୍କର୍ଯ୍ୟ ଅବଲୋକନ କଲେ ଲାଗେ ଆଶ୍ଚର୍ଯ୍ୟ । ଉତ୍କଳର ସ୍ଥପତି ଶିଳାରେ ଛାଡିଯାଇଛି ତା'ର ସ୍ଥାପତ୍ୟ । ପଥରରେ ଅଙ୍କନ କରିଛି ନିହାଣ ମୁନରେ ଶିଳ୍ପୀ ସରସ ସୁନ୍ଦର କବିତା । କୋଣାର୍କ ଶୀର୍ଷରେ ସବିତା, ବର୍ଣ୍ଣାଢ୍ୟ ବୈଚିତ୍ର୍ୟ କଳ୍ପନାର କାରୁକାର୍ଯ୍ୟ ଯେକୌଣସି ପର୍ଯ୍ୟଟକକୁ ବିମୋହିତ କରେ, ମୁଗ୍‌ଧ କରେ । ଚାର୍ଲସ ଫେବ୍ରି କୋଣାର୍କର ଭାସ୍କର୍ଯ୍ୟ ସମ୍ବନ୍ଧରେ ତାଙ୍କର ଅନବଦ୍ୟ କୃତି (The History of the arts of Odisha) ଗ୍ରନ୍ଥରେ ପ୍ରକାଶ କରିଛନ୍ତି । The sun-Temple of konark would be a matter for wonder anywhere; but in its fantastic Loneliness on the sands of the seashore, the impact of this vast and splendid structure is breath-taking and the visitors first reaction as well his last-is that there are few monuments in the world comparable to it.

◆◆◆

ସାଧାରଣତଃ ସଂସ୍କୃତି ଶବ୍ଦ ଦୁଇଟି ଅର୍ଥରେ ବ୍ୟବହୃତ ହୁଏ – ଗୋଟିଏ ବ୍ୟାପକ ଓ ଅନ୍ୟଟି ସୀମିତ । ବ୍ୟାପକ ଅର୍ଥରେ ମାନବଦ୍ୱାରା ନିର୍ମିତ ଆତ୍ମିକ ତଥା ଆଧି–ଭୌତିକ ବିଶ୍ୱକୁ ସଂସ୍କୃତି ମଧ୍ୟରେ ସମାହିତ କରାଯାଏ । ଦ୍ୱିତୀୟ ଅର୍ଥରେ କେବଳ ମାନବର ମାନସିକ ଉନ୍ନତିକୁ ସଂସ୍କୃତିର ମାନଦଣ୍ଡ ରୂପେ ଗ୍ରହଣ କରାଯାଏ । ସଂସ୍କୃତି ସମାଜର ଅନ୍ତର୍ନିହିତ ସୁପ୍ତଶକ୍ତି ଓ ବିକାଶ ଧାରାର ପରିସ୍ଫୁରଣ ବିକାଶ ଧାରା ଯେତେ ଉନ୍ମୁକ୍ତ ଓ ଅପରିସୀମ ହୁଏ, ସଭ୍ୟତା ସେତିକି ଗତିବାନ ଓ ଶକ୍ତିଶାଳୀ ହୁଏ । ସଂସ୍କୃତି ସମାଜର ଶକ୍ତି । ଶକ୍ତିବଳରେ ସମାଜ ବିଶୃଙ୍ଖଳିତକୁ ଶୃଙ୍ଖଳିତ କରେ, ଅଜ୍ଞକୁ ବିଜ୍ଞ କରେ, ପାପୀକୁ ଧାର୍ମିକ କରେ । ମାନବତାର ବିକାଶ ହିଁ ସଂସ୍କୃତି । ଏହା ମନୁଷ୍ୟର ପାଶବିକ ପ୍ରବୃତ୍ତିକୁ ମାନବିକ ପ୍ରବୃତ୍ତିରେ ପରିଣତ କରିଥାଏ । ରୀତି, ନୀତି, ନିୟମ, ଶୃଙ୍ଖଳାର ଏକ ଜଟିଳ ଶକ୍ତି ରୂପରେ ଏହା ମନୁଷ୍ୟ ଜୀବନରେ କାର୍ଯ୍ୟ କରିଥାଏ ।

ଉତ୍କଳୀୟ ସଂସ୍କୃତି ଓ ପରମ୍ପରାର ଲକ୍ଷ୍ମୀପୂଜା ଏକ ସାରସ୍ୱତ ସାମାଜିକ ପର୍ବ । ମହାଲକ୍ଷ୍ମୀଙ୍କର ଉପାସନା ଓ ଐତିହ୍ୟ ସମ୍ପର୍କରେ ଶ୍ରୀସୂକ୍ତରେ ସୁନ୍ଦରଭାବରେ ଉପସ୍ଥାପନ କରାଯାଇଛି । ଯଥାର୍ଥରେ ଶ୍ରୀସୂକ୍ତରେ ବର୍ଣ୍ଣିତ–

ଯା ସା ପଦ୍ମାସନାସ୍ଥା ବିପୁଳ କଟୀତଟା ପଦ୍ମପତ୍ରାୟତାକ୍ଷା ଗମ୍ଭୀରାବର୍ତ୍ତ ନାଭିସ୍ତନ ଭରଣଯୁତା ଶୁକ୍ଳବସ୍ତ୍ରୋତ୍ତରୀୟୋ ଦେବୀ ଦିର୍ବ୍ୟୈର୍ଗଜେନ୍ଦ୍ରୈଃ ମଣିମୟଖଚିତୈଃ ସ୍ଥାପିତା ନିତ୍ୟା ସା ପଦ୍ମହସ୍ତା ବସତୁ ମମଗୃହେ ସର୍ବ ସୌଭାଗ୍ୟକାମା

ଶ୍ରୀଲକ୍ଷ୍ମୀ ଓ ଅଲକ୍ଷ୍ମୀ ଏପରି ଦୁଇଜଣ ଦେବୀଙ୍କ ସମ୍ପର୍କରେ ବେଦରେ ବର୍ଣ୍ଣନା କରାଯାଇଛି । ଜନନୀ, ଭଗିନୀ, ଜାୟା ରୂପରେ ଉତ୍କଳୀୟ ସଂସ୍କୃତିରେ ନାରୀ ଅବତୀର୍ଣ୍ଣା । ସୃଷ୍ଟିକ୍ରମରେ ନାରୀର ଭୂମିକା ଗୁରୁତ୍ୱପୂର୍ଣ୍ଣ । ନାରୀ ପ୍ରକୃତି, ପୁରୁଷ–ବିକୃତି । ପ୍ରକୃତି ଓ ବିକୃତିର ମଧୁମୟ ମିଳନରେ ବାଜି ଉଠେ ସୃଜନର ବେଣୁ । ନାରୀର ତ୍ରିବିଧ ରୂପର ସମସ୍ତ ଗୁଣର ଅଧିଷ୍ଠାତ୍ରୀ ଦେବୀ ହେଉଛନ୍ତି ଶ୍ରୀଲକ୍ଷ୍ମୀ । ଅମର କୋଷରେ ଲକ୍ଷ୍ମୀଙ୍କର ପ୍ରତିଶବ୍ଦ ଭାବରେ ଶ୍ରୀ, ପଦ୍ମା, ଲକ୍ଷ୍ମୀ, ପଦ୍ମାଳୟା, ହରିପ୍ରିୟା, ଇନ୍ଦିରା, ମା, ଲୋକମାତା, କ୍ଷୀରାବ୍ଧି ତନୟା ।

ରମା ପ୍ରଭୃତି ଶବ୍ଦ ବ୍ୟବହୃତ । ଅନେକ ପ୍ରତିଶବ୍ଦ ମଧ୍ୟରୁ ଶ୍ରୀ ଓ ଲକ୍ଷ୍ମୀ ଲୋକମୁଖରେ ସମାଜରେ ବହୁଳ ଭାବରେ ପ୍ରଚଳିତ ।

ଋକ୍‌ବେଦରେ 'ଶ୍ରୀ' ଶବ୍ଦର ଏବଂ 'ଲକ୍ଷ୍ମୀ' ଶବ୍ଦର ପ୍ରୟୋଗ ଅଛି, କିନ୍ତୁ ଏ ଦୁଇଟି ଶବ୍ଦ କେଉଁଠି ହେଲେ 'ସୌଭାଗ୍ୟ ଦେବୀ' ଅର୍ଥରେ ବ୍ୟବହାର ହୋଇନି । ଋକ୍‌ବେଦରେ ଅନ୍ତତଃ ୮୧ଥର 'ଶ୍ରୀ' ଶବ୍ଦର ପ୍ରୟୋଗ ଦେଖିବାକୁ ମିଳେ, କିନ୍ତୁ ସବୁ 'ଶ୍ରୀ'ର ଅର୍ଥ ସୌନ୍ଦର୍ଯ୍ୟ ବା ଶୋଭାବିନା ଅନ୍ୟକିଛି ନୁହେଁ । କେଉଁଠି 'ଶ୍ରୀ' ବିଶେଷ୍ୟ ରୂପରେ ଆଉ କେଉଠି ବିଶେଷଣ ରୂପରେ ବ୍ୟବହୃତ । କ୍ରିୟା ରୂପରେ 'ଶ୍ରୀତିହି' 'ଶ୍ରୀତାନ୍ତି' ପ୍ରଭୃତିର ପ୍ରୟୋଗ ସଙ୍ଗେ ସଙ୍ଗେ 'ଶ୍ରୀ' ଧାତୁ ନିଷ୍ପନ୍ନ 'ଶ୍ରୀତଃ' 'ଶ୍ରୀତାଃ' ମଧ୍ୟ ଦେଖିବାକୁ ମିଳେ । ଏସବୁ ସ୍ଥଳରେ 'ଶ୍ରୀ' ଧାତୁର ଅର୍ଥ ସୋମ ସହିତ ଦୁଧ ମିଶାଇବା ଅର୍ଥାତ 'ଅଭିଷାବର୍ତ୍ତ' କରିବା ବିନା ଅନ୍ୟ କିଛି ନୁହଁ ।

'ଶ୍ରୀ' ଶବ୍ଦ ନଥାଇ ଲକ୍ଷ୍ମୀ ଶବ୍ଦର ପ୍ରୟୋଗ ଋକ୍ ବେଦରେ ଥରେ ମାତ୍ର ପରିଦୃଷ୍ଟ ହୁଏ । କିନ୍ତୁ ତାହା 'ସୌଭାଗ୍ୟ ଦେବୀ' ଅର୍ଥରେ ନୁହେଁ, ଭଦ୍ରୈଷାଂ ଲକ୍ଷ୍ମୀ ନିହିତାଧିବାଚି'– ଏହାର ଅର୍ଥ ସେମାନଙ୍କ କଥାରେ ଅତି ଚମତ୍କାର ଲକ୍ଷ୍ମୀ ନିହିତ ଥାଏ । ଏଠାରେ ଲକ୍ଷ୍ମୀ ଶବ୍ଦର ଅର୍ଥ ଦେବୀ ନୁହେଁ, ଅନ୍ୟକିଛି ।

ଅଥର୍ବ ବେଦରେ ଦୁର୍ଭାଗ୍ୟବତୀ ରମଣୀକୁ ମଧ୍ୟ ଲକ୍ଷ୍ମୀ ବୋଲି କୁହାଯାଇଛି । ଲକ୍ଷ୍ମୀ କେବେ ଭଲ କେବେ ମନ୍ଦ । ମନ୍ଦବେଳର ଲକ୍ଷ୍ମୀଙ୍କୁ 'ପାପୀଲକ୍ଷ୍ମୀ' ବୋଲି ସମ୍ବୋଧନ କରାଯାଇଛି । 'ପ୍ରପତେତଃ ପାପିଲକ୍ଷ୍ମୀ ନଶ୍ୟେତଃ ପ୍ରାମୁତଃ ପତି' ଅଥର୍ବବେଦରେ 'ପୁଣ୍ୟଲକ୍ଷ୍ମୀ' ଶବ୍ଦ ଦେଖିବାକୁ ମିଳେ ।

'ଗମନ୍ତାଂ ପୁଣ୍ୟାଲକ୍ଷ୍ମୀର୍ଯ୍ୟାଃ ପାପୀସ୍ତା ଅନୀନସନ'

–ଅଥର୍ବବେଦ

ଶତପଥ ବ୍ରାହ୍ମଣରେ ଲକ୍ଷ୍ମୀଙ୍କୁ ପୁଣ୍ୟଲକ୍ଷ୍ମୀ ବୋଲି କୁହାଯାଇଛି । ମାତ୍ର ବ୍ରାହ୍ମଣ ଗ୍ରନ୍ଥରେ ସର୍ବ ପ୍ରଥମେ 'ଶ୍ରୀ'ଙ୍କୁ ଶରୀରିଣୀ ବୋଲି ବର୍ଣ୍ଣନା କରାଯାଇଛି । ଶତପଥ ବ୍ରାହ୍ମଣରେ 'ଶ୍ରୀ' ପ୍ରଜାପତିଙ୍କଠାରୁ ଜାତବୋଲି ବର୍ଣ୍ଣିତ ।

'ପ୍ରଜାପତି ବୈପ୍ରଜାଃ ସୃଜମନୋଅପ୍ୟତି, ତସ୍ମାଛ୍ରାନ୍ତାତ୍ତେ ପାନାଚ୍ଛୀ ରୁଦତ୍ରାମସ୍ତା''– ଶତପଥବ୍ରାହ୍ମଣ । ଅର୍ଥାତ, ପ୍ରଜାପତି ପ୍ରଜାସୃଷ୍ଟି କରିବାକୁ କଠୋର ତପସ୍ୟା ଆରମ୍ଭ କଲେ, ସେ ତତଃ ଶାନ୍ତ ହେଲାପରେ 'ଶ୍ରୀ' ଜାତ ହେଲେ ।

ଲକ୍ଷ୍ମୀଙ୍କର ସ୍ୱରୂପ ପୁରାଣମାନଙ୍କରେ ଭିନ୍ନଭିନ୍ନ ଭାବରେ ପୁରାଣକାର କାହାଣୀ ମାଧ୍ୟମରେ ଉପସ୍ଥାପନ କରିଛନ୍ତି । ଶତପଥ ବ୍ରାହ୍ମଣରେ ସୌନ୍ଦର୍ଯ୍ୟ ଓ ସମୃଦ୍ଧିର ଦେବତା, ପଦ୍ମପୁରାଣରେ ବିଷ୍ଣୁଙ୍କର ଦ୍ୱିତୀୟା ସ୍ତ୍ରୀ, ବ୍ରହ୍ମବୈବର୍ତ୍ତ ପୁରାଣରେ ପ୍ରକୃତି ରୂପା, ପଦ୍ମ ସଂହିତାରେ ଜଗତ କାରଣ ରୂପ ନାରାୟଣଙ୍କ ଶକ୍ତି ବିଶେଷ,

ମହାନିର୍ବାଣ ତନ୍ତ୍ରରେ ଶିବଙ୍କ ସହଧର୍ମିଣୀ ପାର୍ବତୀ ଭାବରେ ବର୍ଣ୍ଣନା କରାଯାଇଛି । ବୈଷ୍ଣବମାନେ ଲକ୍ଷ୍ମୀଙ୍କୁ ଜଗନ୍ମାତା ରୂପେ ଅର୍ଚ୍ଚନା କରନ୍ତି । ସେମାନେ ତାଙ୍କୁ ଆଦିମାତା 'ଆଦିମାୟା' ବୋଲି ଅଭିହିତ କରିଛନ୍ତି । ଯେଉଁମାନେ ବୈଷ୍ଣବ ତନ୍ତ୍ରରେ ରହି ସୁଦ୍ଧା ଶକ୍ତି ଉପାସନା କରନ୍ତି, ସେମାନେ ଲକ୍ଷ୍ମୀଙ୍କୁ ବିଶ୍ୱର ପ୍ରତିମୂର୍ତ୍ତି ଭାବରେ କଳ୍ପନା କରି ପୃଥକ ଭାବରେ ଆରାଧନା କରିଛନ୍ତି ।

ଶ୍ରୀମଦ୍ ଭାଗବତ ଅନୁସାରେ ସାଗର ମନ୍ଥନରେ ଅପ୍ସରାମାନଙ୍କର ଉଦ୍ଭବ ହେବାପରେ ଚତୁର୍ଦ୍ଦିଗ ଆଲୋକିତ କରି ବିଦ୍ୟୁତ୍‌ମାଳା ସଦୃଶ ଦେବୀ କମଳା ସମୁଦ୍ର ଗର୍ଭରୁ ଉତ୍‌ଥିତା ହେଲେ । ଇନ୍ଦ୍ର ତାହାଙ୍କୁ ଅଭ୍ୟର୍ଥନା କରି ଉତ୍କୃଷ୍ଟ ଆସନରେ ଆସୀନା କରାଇଲେ । ପୃଥିବୀ ତାଙ୍କୁ ଅଭିଷେକୋପଯୋଗୀ ସର୍ବପ୍ରକାର ଔଷଧ ଦାନ କଲେ । ଏହାପରେ ଋଷିଗଣ ଅଭିଷେକ ସମ୍ପାଦନ କଲେ ଏବଂ ଦେବୀକମଳା, ଗନ୍ଧର୍ବ ସିଦ୍ଧ, ଅସୁର, ଯକ୍ଷ ଓ ଅନ୍ୟାନ୍ୟ ପ୍ରାଣୀ ମଧ୍ୟରେ ନିଜର ଅନୁରୂପ ଆଶ୍ରୟ ନପାଇ ଦେବ ଶ୍ରେଷ୍ଠ ନାରାୟଣଙ୍କୁ ହିଁ ବରଣ କଲେ ।

ଶିବଶକ୍ତିଙ୍କ ସଦୃଶ ଲକ୍ଷ୍ମୀନାରାୟଣଙ୍କ ସମ୍ପର୍କ ଅବିଚ୍ଛେଦ୍ୟ । ଯେଉଁଠାରେ ନାରାୟଣ, ସେଠାରେ ଲକ୍ଷ୍ମୀ ଅବସ୍ଥାନ କରନ୍ତି ଏବଂ ଯେଉଁଠାରେ ଲକ୍ଷ୍ମୀ ସେଠାରେ ନାରାୟଣ ବିରାଜମାନ କରନ୍ତି । ଧରାପୃଷ୍ଠକୁ ଜଣେ ଅବତରଣ କରି ଆସିବା ମାତ୍ରେ ଅନ୍ୟ ଜଣେ ଅବତରଣ କରି ଆସନ୍ତି । ଶ୍ରୀମଦ୍‌ଭାଗବତ ଗ୍ରନ୍ଥର ଦଶମ ସ୍କନ୍ଧର ୩୧ଶ ଅଧ୍ୟାୟରେ ବର୍ଣ୍ଣନା କରାଯାଇଛି–

ଜୟତି ତେଅଧିକଂ ଜନ୍ମନା ବ୍ରଜଃ ଶ୍ରୟତ ଇନ୍ଦିରା ଶଶ୍ୱଦତ୍ରହି
ଦୟିତ ଦୃଶ୍ୟତାଂ ଦିକ୍ଷୁ ତାବକାସ୍ତ୍ୱୟି ଧୃତାସବସ୍ତ୍ୱାଂ ବିଚିନ୍ୱତେ

(୧ମ ଶ୍ଳୋକ)

ଭକ୍ତକବି ଜଗନ୍ନାଥ ଦାସ ଏହାର ସାବଲୀଳ ନବାକ୍ଷରୀ ଅନୁବାଦ କରିଛନ୍ତି ତାଙ୍କ 'ଭାଗବତ'ରେ–

ଗୋପୀଏ ବସି ବାଲିକୁଦେ କାନ୍ଦନ୍ତି ଶୋକ ଗଦଗଦେ ।
ଭୋ ନାଥ ! ଯଶୋଦା–କୁମର ତୋ ଜନ୍ମକାଳୁ ଗୋପପୁର ।
ଦରିଦ୍ର ଦୁଃଖିତ ନଜାଣି ଆରମ୍ଭ ଘରେ କମଳିନୀ ।
ଅନେକ ହୋଇଲା ସମ୍ପଦ କେ କହୁଁ ଆରମ୍ଭ ଆନନ୍ଦ ।
ଆମ୍ଭ ଜୀବନ ଅଟୁ ତୁହି ତୋବିନୁ ଅନ୍ୟଗତି ନାହିଁ ।
ତୋର ସମ୍ପଦ ଭୋଗ କରି ତୋ ମୁଖ ଚାହିଁ ଦିନ ହରି ।
ମୁରଲୀ ନାଦେ ଅଣାଇଲୁ ମୁଖୁଁ ଅମିୟରସ ଦେଲୁ ।
ଘୋର ଗହନ ବନେ ଥୋଇ ଅନାଥ କରିଗଲୁ କାହିଁ ।
ଏବେ ଦେଖାଅ ପଦ୍ମମୁଖ ବାରେ ଜୀବନ ଆମ୍ଭରଖ ।

ସ୍କନ୍ଦ ପୁରାଣରେ ଉଲ୍ଲେଖ ଅଛି ପୁରୁଷୋତ୍ତମ ଯେଉଁଠାରେ ଅବସ୍ଥାନ କରନ୍ତି, ଲକ୍ଷ୍ମୀ ସର୍ବତ୍ର ଓ ସର୍ବଦା ତାଙ୍କ ସହ ଅବସ୍ଥାନ କରନ୍ତି ।

ପୁଂରୂଷେଣ ସ୍ତ୍ରୀ ସ୍ୱରୂପେଣ ଲକ୍ଷ୍ମୀଃ ସର୍ବତ୍ର ତିଷ୍ଠତି

(୧୯ ଅଧ୍ୟାୟ–୧୪ ଶ୍ଳୋକ)

ସ୍କନ୍ଦ ପୁରାଣରେ ପ୍ରକାଶ ଅଛି ଭଗବାନ ବିଷ୍ଣୁ ପୁରୁଷ ଓ ମା' ଲକ୍ଷ୍ମୀ ସ୍ତ୍ରୀ । ଲକ୍ଷ୍ମୀ ସର୍ବତ୍ର ବିଦ୍ୟମାନ ।

ପୁଂନାମ୍ନା ଭଗବାନ ବିଷ୍ଣୁଃ ସ୍ତ୍ରୀନାମ୍ନା କମଳାଳୟା
ଦେବତୈର୍ଯ୍ୟଙ୍ ମନୁଷ୍ୟା ଦୌ ବିଦ୍ୟତେ ନୈତୟୋଃପରମ

(୧୯ ଅଧ୍ୟାୟ–୧୫–ଶ୍ଳୋକ)

ଇନ୍ଦ୍ରକୃତ 'ମହାଲକ୍ଷ୍ମୀଷ୍ଟକ' ଗ୍ରନ୍ଥରୁ ଜଣାପଡେ ଯେ ଲକ୍ଷ୍ମୀ ଶ୍ରୀପୀଠସ୍ଥିତା ଏବଂ ଦେବପୂଜିତା ଅଟନ୍ତି । ତାଙ୍କ ହାତରେ ଶଙ୍ଖ, ଚକ୍ର, ଗଦା ଧାରଣ କରିଛନ୍ତି । ସେ ଗରୁଡାରୂଢା ଏବଂ କୋଳାସୁର–ଭୟ, ଦାୟିନୀ ତଥା ସର୍ବପାପହାରିଣୀ ଭାବରେ ଆର୍ବିଭୂତା । ଲକ୍ଷ୍ମୀ ସର୍ବଜ୍ଞାତ, ସମସ୍ତ ବର ପ୍ରଦାୟିନୀ, ଅଭୟ ପ୍ରଦାୟିନୀ ଏବଂ ସମସ୍ତଙ୍କର ଦୁଃଖଦୂରକାରିଣୀ । ସେ ସିଦ୍ଧି, ବୁଦ୍ଧି, ଭୋଗ ଏବଂ ମୋକ୍ଷଦାୟିନୀ ମନ୍ତ୍ରପୂତ ଭଗବତୀ । ମହାଲକ୍ଷ୍ମୀ ହେଉଛନ୍ତି ଆଦି ଅନ୍ତରହିତ ଆଦିଶକ୍ତି, ମାହେଶ୍ୱରୀ, ଯୋଗ–ପ୍ରକଟିତା, ସ୍ଥୂଳସୂକ୍ଷ୍ମ, ମହାରୌଦ୍ର ସ୍ୱରୂପିଣୀ । ମହାଶକ୍ତି ମହୋଦରା ତଥା ମହାପାତକହାରିଣୀ । ସେ କମଳାସନା, ପରମବ୍ରହ୍ମ ସ୍ୱରୂପିଣୀ, ପରମେଶ୍ୱରୀ, ଜଗଦମ୍ବା ହୋଇଥିବା ହେତୁ ନିଖିଳ ଜଗତର ପ୍ରଣମ୍ୟ ।

ଲକ୍ଷ୍ମୀ ଶ୍ୱେତାମ୍ବର ଧାରିଣୀ, ନାନାଳଙ୍କାର ଭୂଷିତା, ସମଗ୍ର ଜଗତ୍‌ବ୍ୟାପ୍ତ ଏବଂ ନିଖିଳ ଜଗତର ଜନ୍ମଦାତ୍ରୀ ଭାବରେ ପୂଜନୀୟା ବନ୍ଦନୀୟା । ଦେବରାଜ ଇନ୍ଦ୍ରଙ୍କ ମୁଖରେ ମହାଲକ୍ଷ୍ମୀଙ୍କର ମହିମା ସୁନ୍ଦର ଭାବରେ କୀର୍ତ୍ତିତ ଓ ପ୍ରଶଂସିତ ।

ଓଡ଼ିଆ ସାହିତ୍ୟର ପଞ୍ଚସଖାଙ୍କ ମଧ୍ୟରେ ଜ୍ୟେଷ୍ଠ ଓ ଶ୍ରେଷ୍ଠ ଭକ୍ତ ବଳରାମ ଦାସ 'ଲକ୍ଷ୍ମୀପୁରାଣ'ରେ ଲକ୍ଷ୍ମୀଙ୍କର ସ୍ତବ ସରଳ ସାବଲୀଳ ଭାଷାରେ ପ୍ରକାଶ କରିଛନ୍ତି । ଯଥାର୍ଥରେ କବିଙ୍କ ଭାଷାରେ–

ନମସ୍ତେ କମଳା ମାଗୋ ସାଗର ଦୁଲଣୀ
ନମସ୍ତେ ନମସ୍ତେ ଲକ୍ଷ୍ମୀ ବିଷ୍ଣୁଙ୍କ ଘରଣୀ ।
ନମସ୍ତେ କମଳା ମାଗୋ ଅତି ଦୟାବତୀ,
ସ୍ଥାବର ଜଙ୍ଗମ କୀଟ ଆଦିପାଳୁ ନିତି ।

ତୋର ଦୟାବଳେ ମାଗୋ ଦରିଦ୍ର ଜନର
ହୁଅଇ ଅଚଳ ବିତ୍ତ ଜିଣଇ କୁବେର ।

ଶରତକାଳରେ ଦୁର୍ଗାପୂଜା ପରେ ପୂର୍ଣ୍ଣିମାରେ ଲକ୍ଷ୍ମୀ ପୂଜାର ଆରମ୍ଭ ହୁଏ, ତାହାକୁ କୋଜାଗରୀ ପୂର୍ଣ୍ଣିମା କୁହାଯାଏ । କୋ ଜାଗର୍ତି ଅର୍ଥାତ 'କିଏ ଜାଗିଛ'ରୁ ଏହାର ଉତ୍ପତ୍ତି । ପୁରାଣ ମତରେ ରାତିରେ ମହାଲକ୍ଷ୍ମୀ ଘର ଘର ବୁଲି କହନ୍ତି କିଏ ଜାଗିଛ ? ଆଜି ମୁଁ ତୁମକୁ ବର ଦେବି ।' 'କୋଜାଗରୀ' ପୂର୍ଣ୍ଣିମା ରାତିରେ ଜାଗରଣର ପ୍ରଥା ରହି ଆସିଛି । ପୁରାଣର ଆଉ ଏକ ବର୍ଣ୍ଣନାରେ ମା'ଲକ୍ଷ୍ମୀଙ୍କୁ ଏକାନ୍ତ ଶିବଭକ୍ତି ପରାୟଣା ଭାବରେ ବର୍ଣ୍ଣନା କରାଯାଇଛି । ବିଷ୍ଣୁଙ୍କ ପରାମର୍ଶକ୍ରମେ ଲକ୍ଷ୍ମୀ ଏକଶତ ପଦ୍ମ ଏକତ୍ର କରି ଶିବଙ୍କ ପୂଜା ଯଥାବିଧି ଆରମ୍ଭ କଲେ । ମହାଦେବ ମା' ଲକ୍ଷ୍ମୀଙ୍କର ଭକ୍ତି ପରୀକ୍ଷା କରିବା ନିମନ୍ତେ ସେହି ଫୁଲରୁ ଦୁଇଟିଫୁଲ ଦେବୀଙ୍କ ଅଜ୍ଞାତରେ ଅପହରଣ କରି ନେଇଗଲେ । ଲକ୍ଷ୍ମୀ ପଦ୍ମଫୁଲ ଶିବଙ୍କୁ ଅର୍ପଣ କରିବା ସମୟରେ ଦେଖିଲେ ଦୁଇଟିଫୁଲ ଅଭାବ ଅଛି । ସେ ଅନ୍ୟ ଉପାୟ ନଦେଖି ନିଜର ସ୍ତନଦ୍ୱୟ କର୍ତ୍ତନ କରି ଦୁଇଟି ପଦ୍ମଫୁଲ ପରିବର୍ତ୍ତେ ତାହା ସଦା ଶିବଙ୍କୁ ଅର୍ପଣ କରିବାରୁ ଶିବ ପରମ ସନ୍ତୁଷ୍ଟ ହୋଇ ଲକ୍ଷ୍ମୀଙ୍କୁ ଈପ୍ସିତ ବର ପ୍ରଦାନ କରିଥିଲେ ଏବଂ କର୍ତ୍ତିତ ସ୍ତନଦ୍ୱୟ ବର ପ୍ରଭାବରେ ଯଥାସ୍ଥାନ ଲାଭ କରିଥିଲା ।

'ଲକ୍ଷ୍ମୀପୁରାଣ' ହିଁ ଏକମାତ୍ର ପଞ୍ଚସଖା ଯୁଗୀୟ କୃତି, ଯେଉଁଠାରେ ଜଗନ୍ନାଥ ସଂସ୍କୃତିର ବିଶ୍ୱମୈତ୍ରୀ ବୋଧ ସହ, ନାରୀ ସ୍ୱାଧୀକାର ବୋଧ ଯୁଗପତ ପ୍ରମୂର୍ତ୍ତ ।

'ଲକ୍ଷ୍ମୀପୁରାଣ' କୃଷି ଭିତ୍ତିକ ଉତ୍କଳୀୟ ସଂସ୍କୃତିର ଏକ ଅପରିହାର୍ଯ୍ୟ ଅଙ୍ଗ । ପାଞ୍ଚଶହ ବର୍ଷ ତଳେ ସୃଷ୍ଟି ହୋଇଥିବା ଏହି ଗ୍ରନ୍ଥର ଏକ ବୈପ୍ଳବିକ ଆଭିମୁଖ୍ୟ ହେଉଛି ସାମାଜିକ ସଂସ୍କାରବୋଧ । ବ୍ରାହ୍ମଣ୍ୟ ଧର୍ମର ସଂକୀର୍ଣ୍ଣ ଭେଦଭାବ ଓ ଅହେତୁକ ସ୍ପୃଶ୍ୟ-ଅସ୍ପୃଶ୍ୟ ବିଚାର ତଥା ପୁରୁଷ ଅଧ୍ୟୁଷିତ ସମାଜରେ ନାରୀ ନିର୍ଯ୍ୟାତନା ବିରୁଦ୍ଧରେ ଏହା ଏକ ପ୍ରଚଣ୍ଡ ପ୍ରତିବାଦ ।

ଲକ୍ଷ୍ମୀଙ୍କର'ଗୁରୁବାର ବ୍ରତ' ବା 'ସୁଦଶାବ୍ରତ'ରେ ସଂକୀର୍ଣ୍ଣ ସାମ୍ପ୍ରଦାୟିକ ଦୃଷ୍ଟିଭଙ୍ଗୀ ନାହିଁ । ଜାତିବର୍ଣ୍ଣ ତଥା ସଂପ୍ରଦାୟ ନିର୍ବିଶେଷରେ ଏହା ସମଗ୍ର ମାନବ ଜାତି ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ତଥା ଉତ୍ସର୍ଗୀ କୃତ । ମାଣଓଷା ଗୁରୁବାର ଦିନ ଲକ୍ଷ୍ମୀ ଜଗନ୍ନାଥଙ୍କ ଅନୁମତି ନେଇ ନଗର ପରିକ୍ରମାରେ ବାହାରିଛନ୍ତି ଓ ମାଣଓଷା ପାଇଁ ତଥାକଥିତ କୌଣସି ଅଭିଜାତ ବଂଶରେ ନିଷ୍ଠା ବା ଏକାଗ୍ରତା ନଦେଖି ଚଣ୍ଡାଳ ସାହିରେ ପ୍ରବେଶ କରିଛନ୍ତି । ସେଠାରେ ଶ୍ରୀୟା ଚଣ୍ଡାଲୁଣୀର ନିଷ୍କପଟ ଭକ୍ତି ତାଙ୍କୁ ଅଭିଭୂତ କରିଛି ଓ ଚଣ୍ଡାଲୁଣୀ ଘରକୁ ଯାଇ ତାର ପୂଜା ଉପଚାର ସେ ଗ୍ରହଣ କରିଛନ୍ତି । ମୃଗୟାରତ ବଳରାମ ଯୋଗ ବଳରେ ଏହା ଜାଣିପାରି ଜଗନ୍ନାଥଙ୍କୁ ପ୍ରକାଶ କରିଛନ୍ତି–

'ଦେଖ ଦେଖ କହ୍ନାଇ ତୋ ଭାରିଜା ଆଚାର
ଉଭା ହୋଇ ଅଛଇ ଯେ ଚଣ୍ଡାଲୁଣୀ ଘର
ଆମ୍ଭ ବାକ୍ୟମାନି ତାକୁ ଦିଅ ଘଉଡାଇ
ଏପରି ଘରଣୀ ଥିଲେ ଭଲଗତି ନାହିଁ ।'

ଜଗନ୍ନାଥଙ୍କ ଭର୍ତ୍ସନା ଶୁଣି ଲକ୍ଷ୍ମୀ ଶ୍ରୀମନ୍ଦିର ତ୍ୟାଗ କଲେ । ଲକ୍ଷ୍ମୀଙ୍କ ଅଭିଶାପରୁ ଜଗନ୍ନାଥ, ବଳଭଦ୍ରଙ୍କୁ ଅନ୍ନ ମୁଠାଏ ମିଳିଲା ନାହିଁ । ଲକ୍ଷ୍ମୀଛଡା ହୋଇ ଦୁଇଭାଇ ଦ୍ୱାରଦ୍ୱାର ବୁଲିଲେ ଏବଂ ଶେଷରେ ମା ବିକଳ ହୋଇ ଦୁଇଭାଇଙ୍କ ପ୍ରତି ଦୟା କରିବାରୁ ସେମାନେ ପେଟକୁ ଦିଟା ଦାନା ଖାଇବାକୁ ପାଇଲେ ।

ଶେଷରେ 'ଚଣ୍ଡାଲୁଣୀ' ବୋଲି ଆକ୍ଷେପ କରିଥିବା ଲକ୍ଷ୍ମୀଙ୍କ ହାତରୁ ଅନ୍ନଜଳ ଗ୍ରହଣ କରି ଶାପମୁକ୍ତ ହୋଇଛନ୍ତି । ଲକ୍ଷ୍ମୀଙ୍କୁ କ୍ଷମା ପ୍ରାର୍ଥନା କରି ଶ୍ରୀମନ୍ଦିରକୁ ଫେରାଇ ନେବା ପାଇଁ ବଳରାମ ଜଗନ୍ନାଥଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଲକ୍ଷ୍ମୀ କିନ୍ତୁ ଶ୍ରୀମନ୍ଦିରକୁ ଯିବା ପାଇଁ ବାରଣ କରିଛନ୍ତି । ସେ ଶ୍ରୀମନ୍ଦିରକୁ ଯିବେ ନାହିଁ, ଯଦି ଯିବେ, ଜାତିଧର୍ମ ନିର୍ବିଶେଷରେ ସମଗ୍ର ମାନବ ଜାତିର ସ୍ୱାଧୀକାର ବୋଧ ସେଠାରେ ସ୍ୱୀକୃତ ହେବ । ଅହେତୁକ ସ୍ପୃଶ୍ୟ-ଅସ୍ପୃଶ୍ୟ ଭେଦଭାବ ରହିବ ନାହିଁ । କବି 'ଲକ୍ଷ୍ମୀପୁରାଣ'ରେ ଯଥାର୍ଥରେ ପ୍ରକାଶ କରିଛନ୍ତି–

'ଜଗତମାତା ବୋଇଲେ ତୁମ୍ଭେ କର ସତ୍ୟ
X X X
ଚଣ୍ଡାଳୁ ବ୍ରାହ୍ମଣଯାଏ ଖୁଆଖୋଇ ହେବେ
ହାଡିର ହସ୍ତୁ ଛଡାଇ ବ୍ରାହ୍ମଣ ଖାଇବେ ।
ଅନ୍ନଖାଇ ସର୍ବେ ମୁଣ୍ଡେ ପୋଛୁଥିବେ ହସ୍ତ
ତେବେ ବଡ ଦେଉଳକୁ ଯିବି ଜଗନ୍ନାଥ ।'

ଲକ୍ଷ୍ମୀଙ୍କର ପୂଜା ପାଇଁ ମନ୍ଦିର ଦେବାଳୟର ଆବଶ୍ୟକ ନାହିଁ, କାରଣ ଓଡିଆର ଘର ଲକ୍ଷ୍ମୀଙ୍କର ଘର, ଘରର ମଝିକୋଠା ଲକ୍ଷ୍ମୀଙ୍କ ମନ୍ଦିର । ସେଠାରେ ସେ ଲକ୍ଷ୍ମୀଙ୍କର ଆରାଧନା କରେ । ସାତବାର ମଧ୍ୟରୁ ଗୋଟିଏ ବାର ଲକ୍ଷ୍ମୀଙ୍କ ପାଇଁ ଉତ୍ସୃଷ୍ଟ । ଗୁରୁବାରର ଅନ୍ୟନାମ 'ଲକ୍ଷ୍ମୀବାର' । ଧନରତ୍ନ କାରବାରକୁ ଓଡ଼ିଆ ସେଦିନ କୁଣ୍ଠାବୋଧ କରେ । ଧନଧାନ୍ୟ ଗୋପଲକ୍ଷ୍ମୀ

ପ୍ରାପ୍ତି ପ୍ରତ୍ୟେକ ଓଡ଼ିଆର ଅଭିଳାଷ । ଲକ୍ଷ୍ମୀଙ୍କ କରୁଣା ଓ ଆଶୀର୍ବାଦ ଲାଭ କରିବା ପାଇଁ ପ୍ରତି ଗୁରୁବାର ଦିନ ସେ ପୂଜାକରେ ଓ କରପତ୍ର ଯୋଡି ନିଜର ଦୁଃଖକୁ ଗୁହାରୀ କରେ । ଲକ୍ଷ୍ମୀ ସୌନ୍ଦର୍ଯ୍ୟ ଓ ସମ୍ପଦର ଅଧିକାରିଣୀ । ଧନଧାନ୍ୟର ଅଧିଷ୍ଠାତ୍ରୀ ଦେବୀ । ତାଙ୍କ କରୁଣାରେ ନିର୍ଦ୍ଧନ ହୋଇଯାଏ ଧନୀ, ଦାସ ବନିଯାଏ କୁବେର । ଛପନକୋଟି ଭଣ୍ଡାରର ଅଧିକାରିଣୀ, ଜଗନ୍ନାଥଙ୍କ ଘରର ସାଆନ୍ତାଣୀ ଓ ବୈକୁଣ୍ଠର ପାଟରାଣୀ ମା'ଲକ୍ଷ୍ମୀ । ଜଗନ୍ନାଥଙ୍କ ମନ୍ଦିର ପାଖ ମନ୍ଦିରରେ ତାଙ୍କର ପୂଜା । ଓଡ଼ିଆର ସ୍ୱାମୀ ପାଖରେ ସ୍ତ୍ରୀ ରହିବା ସ୍ୱଭାବିକ ବୋଲି ଜଗନ୍ନାଥଙ୍କ ପାଖରେ ଲକ୍ଷ୍ମୀଙ୍କୁ ସ୍ଥାପନା କରାଯାଇଛି । ଲକ୍ଷ୍ମୀଙ୍କର ସ୍ୱତନ୍ତ୍ର ମନ୍ଦିର ନାହିଁ । ଗୃହସ୍ଥର ଘର ହିଁ ଲକ୍ଷ୍ମୀଙ୍କର ମନ୍ଦିର ।

ଉତ୍କଳର ପୁରପଲ୍ଲୀରେ ମହାସମାରୋହରେ 'ସୁଦଶାବ୍ରତ' ପାଳନ କରାଯାଏ । ଜ୍ୟୋତିଷ ଶାସ୍ତ୍ରର ଗଣନା ଅନୁଯାୟୀ ଶୁକ୍ଳପକ୍ଷ ଗୁରୁବାରରେ ଦଶମୀ ତିଥି ପଡିଲେ ଏହି ବ୍ରତ ସେଦିନ ପାଳନ କରାଯାଏ । ହାତୀ/ଗଜ ଚିହ୍ନିତ ସିଂହାସନରେ ଲକ୍ଷ୍ମୀମୂର୍ତ୍ତି ବସାଇ ତହିଁରେ ଶୁକ୍ଳଧାନ ଢାଳି ନିଜର ଐଶ୍ୱର୍ଯ୍ୟ ଓ ସ୍ୱାମୀଙ୍କର ଦୀର୍ଘକାମନା ପୋଷଣ କରି ସଧବା ନାରୀମାନେ ଏହି ବ୍ରତଟିକୁ ପାଳନ କରିଥାନ୍ତି । ଏହା ବର୍ଷକ ମଧ୍ୟରେ ନିର୍ଦ୍ଦିଷ୍ଟ ତିଥିର ଆଗମନରେ ପାଳିତ ହୋଇଥାଏ । ଗଭୀର ବିଶ୍ୱାସ ଭିତରେ ଲକ୍ଷ୍ମୀପୂଜା ଓଡ଼ିଆମାନଙ୍କର ସାମାଜିକ ଜୀବନରେ ଓ ଧାର୍ମିକ ପରମ୍ପରାରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ପ୍ରତ୍ୟେକ ବ୍ୟକ୍ତି, ଏହି ଐଶ୍ୱର୍ଯ୍ୟ ପ୍ରଦାୟିନୀ ଦେବୀଙ୍କ କୃପାଭିକ୍ଷା ପାଇଁ, କାୟମନବାକ୍ୟରେ ସ୍ତୁତି କରିଥାନ୍ତି–

କମଳେ କମଳାରଢେ ଶକ୍ତି ପ୍ରଦାୟିନୀ
ତ୍ରୈଲୋକ୍ୟ ପାଳିନୀ ଦେବୀ ସତତଂ ତାଂନମାମ୍ୟହମ୍
ବିଦେହୀ ଦେବୀ କଲ୍ୟାଣ କଳୁଷଂ ଜନମଙ୍ଗଳମ୍
ମମଭୀଷ୍ଟ ପ୍ରଦଂ ଭୂତ୍ୱା ବାଞ୍ଛତାଥ୍ୟ ଚ ଦେହୀମେ
ଓଁ ଶ୍ରୀ ମହାଲକ୍ଷ୍ମୈ ନମସ୍ତୁତେଃ

ସ୍ନାତକୋତ୍ତର
ଓଡ଼ିଆଭାଷା ଓ ସାହିତ୍ୟ ବିଭାଗ
ଫକୀର ମୋହନ ବିଶ୍ୱବିଦ୍ୟାଳୟ

ସହାୟକ ଗ୍ରନ୍ଥସୂଚୀ

୧. ଡକ୍ଟର ହରେକୃଷ୍ଣ ଶତପଥୀ: ସଂସ୍କୃତ ସାହିତ୍ୟର ଇତିହାସ
୨. ରବୀନ୍ଦ୍ର ନାରାୟଣ ମିଶ୍ର: ମହାଲକ୍ଷ୍ମୀ ମହାପ୍ରସାଦ ମହାପ୍ରଭୁ
୩. ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି: ପଞ୍ଚସଖା ଓଡ଼ିଆ ସାହିତ୍ୟ
୪. ଡକ୍ଟର ବେଣୀମାଧବ ପାଢୀ: ଧୀ ଓ ଧୀଷଣା
୫. ଅଧ୍ୟାପକ ପଠାଣି ପଟ୍ଟନାୟକ: ସାହିତ୍ୟ, ଇତିହାସ, ସଂସ୍କୃତି ।
୬. ଡକ୍ଟର ଦୁର୍ଗାମାଧବ ପୃଷ୍ଟି: ସାହିତ୍ୟ-ସଂସ୍କୃତି-ସିଦ୍ଧାନ୍ତ
୭. ଡକ୍ଟର ଇନ୍ଦୁ ମିଶ୍ର: ସମୀକ୍ଷା ଓ ସନ୍ଦର୍ଭ ।
୮. ଶ୍ରୀ ଧୀରେନ୍ଦ୍ର ନାଥ ପଟ୍ଟନାୟକ: ସଂସ୍କୃତି ଓ ସମାଜ
୯. ଶ୍ରୀ କେଶବ ଚନ୍ଦ୍ର ମେହେର: ପ୍ରତିଭା ଓ ପ୍ରତିଭୂ
୧୦. ଡକ୍ଟର ଦୁର୍ଗାମାଧବ ପୃଷ୍ଟି: ଆମ ସାହିତ୍ୟ ଆମ ସଂସ୍କୃତି



# ଗଜଲକ୍ଷ୍ମୀ ପୂଜା

ମନୋରଞ୍ଜନ ନନ୍ଦ

''ଶ୍ୱେତାମ୍ବର ଧରେ ଦେବୀ ନାନାଳଙ୍କାର ଭୂଷିତେ
ଜଗତ୍‌ସ୍ଥିତେ ମହାମାୟା ମହାଲକ୍ଷ୍ମୀ ନମୋସ୍ତୁତେ ।''

ପବିତ୍ର ଗଜଲକ୍ଷ୍ମୀ ପୂଜା ଅବସରରେ ଢେଙ୍କାନାଳରେ ଲକ୍ଷ ଲକ୍ଷ ଭକ୍ତ ଏକତ୍ରିତ ହୋଇ ମହାମାୟୀଙ୍କ କରୁଣା ପାଇବାକୁ ବ୍ୟଗ୍ର । ମାତୃପୂଜା, ଦେବୀପୂଜା ଓ ଶକ୍ତିପୂଜାରେ ସହର ଉତ୍ସବମୁଖର ହୋଇଛି । ଜଗତର କଲ୍ୟାଣ ପାଇଁ ଓ ଭକ୍ତଙ୍କୁ ଦର୍ଶନ ଦେବା ପାଇଁ ଦୀର୍ଘ ୧୧ଦିନ ଧରି ଢେଙ୍କାନାଳରେ ପାଳିତ ହେଉଥିବା ଲକ୍ଷ୍ମୀପୂଜାରେ ସୁଶୋଭିତ ମୃଣ୍ମୟୀ ମୂର୍ତ୍ତି ଓ ଉଜ୍ଜ୍ୱଳ ଆଲୋକ ତୋରଣ ମୁଖ୍ୟ ଆକର୍ଷଣ ହୋଇଛି । ପ୍ରାୟ ୩୮ଟି ସ୍ଥାନରେ ଲକ୍ଷ୍ମୀପୂଜା ପାଳନ କରାଯିବା ସହ ଶାନ୍ତିଶୃଙ୍ଖଳାରେ ଜନସାଧାରଣ ନାଚ, ଗୀତ, ମେଲୋଡି ଓ ସର୍କସ ଇତ୍ୟାଦି ଉପଭୋଗ କରୁଛନ୍ତି । ସଂପ୍ରତି ଢେଙ୍କାନାଳ ସହର ସ୍ୱର୍ଗର ନନ୍ଦନକାନନରେ ପରିଣତ ହେବା ସହ ସହର ଲୋକାରଣ୍ୟ ହୋଇଛି । ପଲ୍ଲିଶ୍ରୀ ମେଳା ସହ ଚାରିଆଡେ ଲମ୍ବିଛି ବଜାର । ତତ୍ ସଙ୍ଗେ ସଙ୍ଗେ ଢେଙ୍କାନାଳ ମହୋତ୍ସବ ପୂଜାକୁ ଅଧିକ ସରସ ସୁନ୍ଦର କରିପାରିଛି ।

ଲକ୍ଷ୍ମୀପୂଜା ଓ ମାତୃପୂଜାକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ସୃଜନକାଳରେ ମା' ମହାସରସ୍ୱତୀ, ପାଳନକାଳରେ ମା' ମହାଲକ୍ଷ୍ମୀ ଓ ବିନାଶ କାଳରେ ମହାକାଳୀ ଭାବେ ଅବତୀର୍ଣ୍ଣ ହୋଇଥାନ୍ତି । ସତ୍ତ୍ୱ, ରଜ, ତମ ତ୍ରିଗୁଣ ଧାରିଣୀ ମା' ଏକାଧାରାରେ ସୃଷ୍ଟି, ସ୍ଥିତି ଓ ପ୍ରଳୟ ରୂପେ ଚିହ୍ନିତ । ତେଣୁ କୁହାଯାଇଛି–

'ସର୍ବ ମଙ୍ଗଳ ମାଙ୍ଗଲ୍ୟ ଶିବ ସର୍ବାର୍ଥ ସାଧିକେ
ଶରଣେ ତ୍ରମ୍ବକେ ଗୌରୀ ନାରାୟଣୀ ନମଃସ୍ତୁତେ ।''

ଶକ୍ତିପୂଜାରେ ଗୁରୁତ୍ୱ ଦେଇ ଶକ୍ତି ହିଁ ସକଳ କାର୍ଯ୍ୟର ମୂଳଶକ୍ତି ବୋଲି ବର୍ଣ୍ଣନା କରାଯାଇଛି । ଶ୍ରୀ ଶ୍ରୀ ଚଣ୍ଡୀରେ କୁହାଯାଇଛି–



'ଅଧାର ଭୂତା ଜଗତ ସ୍ତମେକା
ମହାସ୍ୱରୂପେଣ ଯତଃ ସ୍ଥିତାସି ।'

ଦୟା, କ୍ଷମା, ଶାନ୍ତି, ଲଜ୍ଜା, ବୁଦ୍ଧି ଓ ବିଦ୍ୟା ପ୍ରଦାୟିନୀ ଶକ୍ତି ସ୍ୱରୂପିଣୀ ମହାଲକ୍ଷ୍ମୀଙ୍କୁ ମାର୍ଗଶିର ମାସ ପ୍ରତି ଗୁରୁବାରରେ

ପୂଜା କରାଯାଏ । ଧାନମାଣି ସ୍ଥାପନ ପୂର୍ବକ ବିଧି ଅନୁସାରେ ପୂଜା କରିବା ଓ ବ୍ରତ ପାଳନ କରିବା ହେଉଛି ଓଡ଼ିଶାର ପ୍ରାଚୀନ ସଂସ୍କୃତି । ଯାହାକୁ ଧାନମାଣିକୀ ଓଷା ବା ମାଣବସା ଗୁରୁବାର କୁହାଯାଏ । ଅନେକ ଶ୍ରାବଣ, ଭାଦ୍ରବ, ଆଶ୍ୱିନ ଓ କାର୍ତ୍ତିକ ମାସ ପ୍ରତି ଗୁରୁବାରରେ ଲକ୍ଷ୍ମୀ ନାରାୟଣ ପୂଜା କରିଥାନ୍ତି । ଯାହାକୁ ଚର୍ତୁମାସ୍ୟା ଗୁରୁବାର ଓଷା ବୋଲି ଗୃହଲକ୍ଷ୍ମୀମାନେ କହିଥାନ୍ତି । ମାତ୍ର ଢେଙ୍କାନାଳରେ ପାଳନ କରାଯାଉଥିବା ମହାଲକ୍ଷ୍ମୀ ପୂଜା କୁମାର ପୂର୍ଣ୍ଣମୀ ତିଥିରୁ ଆରମ୍ଭ କରାଯାଇଥାଏ । 'ବାଣିଜ୍ୟେ ବସତି ଲକ୍ଷ୍ମୀ' ନ୍ୟାୟରେ ବୈଶ୍ୟମାନେ ଏହି ପର୍ବ ପାଳନ କରିଆସିଛନ୍ତି । ମା' ଲକ୍ଷ୍ମୀ ସ୍ୱର୍ଗରେ ସ୍ୱର୍ଗ ଲକ୍ଷ୍ମୀ, ପାତାଳ ଓ ମର୍ତ୍ତ୍ୟରେ ଗଜଲକ୍ଷ୍ମୀ ଓ ଗୃହରେ ଗୃହଲକ୍ଷ୍ମୀଭାବେ ପରିଚିତ । ଧନ, ଜନ, ଗୋପ, ଲକ୍ଷ୍ମୀ ଲାଭ ପାଇଁ ଭକ୍ତମାନେ ବ୍ୟାକୁଳିତ ହୋଇ ଲକ୍ଷ୍ମୀପୂଜା ଅବସରରେ ଭକ୍ତିଭରା କଂଠରେ ଗାଇ ଉଠନ୍ତି–

'ଲକ୍ଷ୍ମୀ ପଦ୍ମାଳୟା–ପଦ୍ମା କମଳା–ଶ୍ରୀ ହରିପ୍ରିୟା
ଇନ୍ଦିରା–ଲୋକମାତା– ମା କ୍ଷୀରଷ୍ଠା ତନୟା ରମା'

କଥିତ ଅଛି ଯେ କୁମାର ପୂର୍ଣ୍ଣମୀର ପ୍ରଥମ ତିଥିରେ ହୋଇଥିବା ସମୁଦ୍ର ମନ୍ଥନରୁ ଲକ୍ଷ୍ମୀଙ୍କ ସମେତ ୧୪ଟି ରତ୍ନ ମିଳିଥିଲା । ସେଗୁଡ଼ିକ ହେଲା– କୌସ୍ତୁଭ, ପାରିଜାତ, ମୁରା, ଧନ୍ୱନ୍ତରୀ, ଚନ୍ଦ୍ରମା, କାମଧେନୁ, ଐରାବତ, ରମ୍ଭାଦି ଅପ୍ସରା, ଉଚୈଶ୍ରବା, ବିଷ, ଶିବଧନୁ, ଶଙ୍ଖ, ଅମୃତ । ଲକ୍ଷ୍ମୀଙ୍କ ଅବିର୍ଭାବ ସମୟରେ ଗନ୍ଧର୍ବମାନେ ସଙ୍ଗୀତ ଗାନ କରିବା ସହ ଅପସରାମାନେ ନୃତ୍ୟ କରି ଜଗତକୁ ବିମୋହିତ କରିଥିଲେ । ନିଜେ ବିଶ୍ୱକର୍ମା ଆଭୂଷଣ ଓ ଗଙ୍ଗାଦେବୀ କ୍ଷୀର–ସାଗରର ଶତଦଳମାନଙ୍କୁ ଉପହାର ଦେଇଥିଲେ । ଏହି ତିଥିରେ ଢେଙ୍କାନାଳର ଗଜଲକ୍ଷ୍ମୀ ପୂଜା ଆରମ୍ଭ କରିବା ସହ ଭକ୍ତମାନେ ଗାଇ ଉଠନ୍ତି–

''ନମସ୍ତେ ନମସ୍ତେ ଲକ୍ଷ୍ମୀ ବିଷ୍ଣୁଙ୍କ ଘରଣୀ
ନମସ୍ତେ ନମସ୍ତେ ମାଗୋ ସାଗର ଦୁଲଣୀ ।''

ମାତୃପୂଜାର ଐତିହ୍ୟକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ଶକ୍ତିପୂଜା ବା ମାତୃପୂଜା ସତ୍ୟଯୁଗ, ବୈଦିକ ଯୁଗ, ଦ୍ୱାପର ଯୁଗ ଓ କଳିଯୁଗରେ ପାଳନ କରାଯାଇଛି । ସତ୍ୟଯୁଗରୁ ପୂଜା କରାଯାଉଥିବା ମହାଲକ୍ଷ୍ମୀଙ୍କୁ କୁମାର ପୂର୍ଣ୍ଣମା ରାତ୍ରିରୁ ଚୂଡା ଓ ନଡିଆ ନୈବେଦ୍ୟ ନେଇ ଆବାହାନ କରିଥାନ୍ତି । ତେଣୁ ବର୍ଣ୍ଣିତ ଅଛି–

''ନାରୀକେଳେଷ୍ଟ ପିଟକେଃ ପିତମ୍‌ଦେବାନ୍ ସମର୍ଚ୍ଚୟେତ
ବନ୍ଧୁଂଷ୍ଟ ପ୍ରୀନୟେତ୍ତେନ ସ୍ୱୟଂ ତଦଶନୋ ଭବେତ୍ ।''

ସମର୍ପିତ ମନୋଭାବରେ ମହାଲକ୍ଷ୍ମୀଙ୍କୁ ଭକ୍ତମାନେ ପୂଜା କରୁଥିବାରୁ ସେ ସଦୟା ହୋଇ ଗଜପୃଷ୍ଠରେ ଆବିର୍ଭାବ ହୋଇଛନ୍ତି । ଭକ୍ତ ଗୃହକୁ ସେ ଆସିବା ମୁଖ୍ୟ କାରଣ ହେଉଛି ଦୁଃଖୀର ଦୁଃଖ ହରିବା । ସାରା ରାତ୍ରି ଉଜାଗର ରହି ଢେଙ୍କାନାଳବାସୀ ଲକ୍ଷ୍ମୀଙ୍କୁ ପ୍ରାର୍ଥନା କରିବା ସହ ଉତ୍ସବ ମୁଖର ଢେଙ୍କାନାଳ ସହରରେ ଲକ୍ଷ ଲକ୍ଷ ଭକ୍ତ ରୁଣ୍ଡ ହୋଇଛନ୍ତି । ଜିଲ୍ଲା ପ୍ରଶାସନର ତତ୍ପରତା ଓ ଜନସାଧାରଣଙ୍କ ଆନ୍ତରିକତାରୁ ଲକ୍ଷ୍ମୀପୂଜା ଶାନ୍ତି ଶୃଙ୍ଖଳାରେ ପାଳିତ ହୋଇ ପୂର୍ବସୁନାମ ଐତିହ୍ୟକୁ ବଜାୟ ରଖିପାରିଛି ।

ସମ୍ପାଦକ–ବିଭାବନା
ଜୟ ଗୋପାଳ ସାହି
ଢେଙ୍କାନାଳ–୭୫୯୦୦୧



# ପ୍ରାଚୀନ ଗଞ୍ଜାମର ନୌବାଣିଜ୍ୟ ପରମ୍ପରା

ଅନଂତରାମ କର

ଆଜି ଯେଉଁ ଅଞ୍ଚଳକୁ ଗଞ୍ଜାମ କୁହାଯାଉଛି, ପ୍ରାଚୀନ କାଳରେ ଏହି ଅଞ୍ଚଳ କଳିଙ୍ଗ, କଙ୍ଗୋଦ ନାମରେ ପରିଚିତ ଥିଲା । ୧୮୦୬ ମସିହାରେ ଗଞ୍ଜାମ ଜିଲ୍ଲା ଗଠନ ବେଳେ ଏହାର ସୀମା ଥିଲା ପୂର୍ବରେ ମାଣିକ ପାଟଣାଠାରୁ ଦକ୍ଷିଣ ପଶ୍ଚିମରେ ମୋପଂଜା ବନ୍ଦର ଅର୍ଥାତ୍ ନାଗାବଳୀ ନଦୀ ମୁହାଣ, ଯାହା ବର୍ତ୍ତମାନ ଆନ୍ଧ୍ର ଶ୍ରୀକାକୁଲମ ସହର ନିକଟବର୍ତ୍ତୀ । ୧୯୩୬ ମସିହାରେ ସ୍ୱତନ୍ତ୍ର ଉତ୍କଳ ଗଠନ ବେଳେ ମୂଳ ତଥା ପ୍ରାକୃତିକ ଗଞ୍ଜାମକୁ କଳିଙ୍ଗଖଣ୍ଡ, ମାଳଖଣ୍ଡ ଏବଂ ପୂର୍ବଖଣ୍ଡ ନାମରେ ବିଭକ୍ତ କରାଯାଇଥିଲା । ସେଥିମଧ୍ୟରୁ କଳିଙ୍ଗଖଣ୍ଡ ଆନ୍ଧ୍ର ଶ୍ରୀକାକୁଲମ୍ ଅଞ୍ଚଳ ବିଚ୍ଛିନ୍ନ ହୋଇଗଲା । ମାଳଖଣ୍ଡ ଆସିକା ଭଞ୍ଜନଗର ଅଞ୍ଚଳ, ପୂର୍ବଖଣ୍ଡ ପୁରୁଷୋତ୍ତମପୁର କୋଦଳା ଅଞ୍ଚଳ ଗଞ୍ଜାମରେ ରହିଛି ।

ପ୍ରାଚୀନ ପ୍ରାକୃତିକ ତଥା ଭୌଗୋଳିକ ଗଞ୍ଜାମର ଆୟତନ ଥିଲା ୨୧ ହଜାର ୨୮୧ ବର୍ଗ କିଲୋମିଟର । ବହୁଧା ବିଭକ୍ତି ପରେ ସାମ୍ପ୍ରତିକ ଗଞ୍ଜାମର ଅବଶିଷ୍ଟ ଆୟତନ ମାତ୍ର ୮ହଜାର ୭୦୬ ବର୍ଗ କି.ମି. । ସମଗ୍ର ଓଡ଼ିଶାର ସାମୁଦ୍ରିକ ଉପକୂଳର ଦୈର୍ଘ୍ୟ ୪୭୬ କି.ମି । ସାମ୍ପ୍ରତିକ ଗଞ୍ଜାମର ଉପକୂଳ ଦୈର୍ଘ୍ୟ ୭୦ କି.ମି. । ମୂଳ ଗଞ୍ଜାମର ଉପକୂଳ ଥିଲା ୧୩୦ କି.ମି । ଏଭଳି ସାମୁଦ୍ରିକ ବେଳାରେ ଚିଲିକା ମୁହାଣ, ରମ୍ଭା, ସୁବଳୟା, ପଥରା, ପାଲୁରୁ, ଗଞ୍ଜା, ମନ୍‌ସୁର କୋଟା, ଗୋପାଳପୁର, ମନ୍ତ୍ରିଡିସୁନପୁର, ବାରୁଆ, ପୁଣ୍ଡି, ନୁଲ୍‌ରେଉ(ସୂତାହାଟ) ବିମିଳିପାଟଣା ମୋପଂଜାବନ୍ଦର ଆଦିସ୍ଥାନରେ ପ୍ରାକୃତିକ ପୋତାଶ୍ରୟମାନ ଥିଲା । ଦେଶ ସ୍ୱାଧୀନ ହେବା ପର୍ଯ୍ୟନ୍ତ ବ୍ରିଟିଶ ଇଣ୍ଡିଆ ନେଭିଗେସନ୍ କମ୍ପାନୀର ଜାହାଜମାନ ଏହିସବୁ ବନ୍ଦରରେ ବେପାର ବଣିଜ କରୁଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ୧୯୪୫ରେ ଜାପାନର ବୋମା ମାଡ ଯୋଗୁଁ ଗୋପାଳପୁର ବନ୍ଦର ବନ୍ଦ ହୋଇଯାଇଥିଲା ।

କଳିଙ୍ଗଯୁଦ୍ଧ ସାମ୍ପ୍ରତିକ ଗଞ୍ଜାମର ପୁରୁଷୋତ୍ତମପୁର ଅଞ୍ଚଳରେ ଶେଷ ହେବା ପରେ ତତ୍ ସନ୍ନିକଟରେ ସମ୍ରାଟ ଅଶୋକ ଏକ ଶିଳାଲେଖ ପ୍ରତିଷ୍ଠା କଲେ । ଅଶୋକଙ୍କ କଳିଙ୍ଗ ଆକ୍ରମଣର ବିଭିନ୍ନ କାରଣ ମଧ୍ୟରେ ଧନରତ୍ନ ଆଦି ସମ୍ପତ୍ତି ଲୁଣ୍ଠନ ଏକ କାରଣ । କଳିଙ୍ଗବାସୀ ବାଣିଜ୍ୟ କର ପୂର୍ବ ଭାରତୀୟ ଦ୍ୱୀପାଞ୍ଚଳରୁ ସଂଗ୍ରହ କରିଥିବା ସୁନାହୀରା ପ୍ରବାଳ ଆଦି ମୂଲ୍ୟବାନ ଦ୍ରବ୍ୟ ପ୍ରତି ଅଶୋକଙ୍କ ଲୋଭ ବଢିଥିଲା । ଏଠି ବୁଝିବାକୁ ହେବ ଯେ ଖ୍ରୀଷ୍ଟପୂର୍ବ ଅବଧିମାନଙ୍କରେ ସୁଦ୍ଧା କଳିଙ୍ଗବାସୀ ନୌବାଣିଜ୍ୟ କ୍ଷେତ୍ରରେ ସମୃଦ୍ଧି ଥିଲେ ।

ଖ୍ରୀ.ପୂ ସପ୍ତମ ଶତାବ୍ଦୀ ବେଳକୁ କଳିଙ୍ଗ ଓ ଚୀନ ମଧ୍ୟରେ ବାଣିଜ୍ୟିକ ସମ୍ପର୍କ ଥିବା ପ୍ରମାଣ ମିଳେ । ଅବଶ୍ୟ ସେକାଳରେ ସମଗ୍ର ଓଡ଼ିଶା ଉପକୂଳ କଳିଙ୍ଗ ନାମରେ ପରିଚିତ ଥିଲା । ବଙ୍ଗୋପ ସାଗରକୁ କଳିଙ୍ଗ ସାଗର କୁହାଯାଉଥିଲା । କଳିଙ୍ଗ ବଣିକମାନେ ଦରିଆ ପାରିର ସୁବର୍ଣ୍ଣଭୂମି (ମିଆମାର) ଶ୍ୟାମ (ଥାଇଲ୍ୟାଣ୍ଡ) ତାମ୍ରପର୍ଣ୍ଣି(ସିଂହଳ) ସୁବର୍ଣ୍ଣଦ୍ୱୀପ (ଜାଭା)କମ୍ବୋଜ (କାମ୍ବୋଡିଆ) ବାଲି, ସୁମାତ୍ରା ସହ ବାଣିଜ୍ୟ କରୁଥିଲେ । ବାଣିଜ୍ୟିକ ସମ୍ପର୍କ ସହ ସେହିସବୁ ଅଞ୍ଚଳରେ କଳିଙ୍ଗବାସୀ ବୌଦ୍ଧ, ହିନ୍ଦୁ ଏବଂ ଜଗନ୍ନାଥ ଧର୍ମ ପ୍ରତିଷ୍ଠା କରିଥିଲେ । ବର୍ତ୍ତମାନ ସୁଦ୍ଧା ମିଆମାରରେ ଚାରିଗୋଟି ଜଗନ୍ନାଥ ମନ୍ଦିର ଅଛି ।

ଭାରତର ପୂର୍ବ ଉପକୂଳବର୍ତ୍ତୀ ବନ୍ଦରମାନଙ୍କ ମଧ୍ୟରେ ଗଞ୍ଜାମର ପାଲୁରୁ ଥିଲା ସର୍ବୋତ୍କୃଷ୍ଟ ଏବଂ ବୃହତ୍ତମ । ଯାହାକୁ ଇତିହାସର ଦନ୍ତପୁର କୁହାଯାଏ । କିନ୍ତୁ ନବମ ଶତାବ୍ଦୀ ବେଳକୁ ଋଷିକୂଲ୍ୟା ମୁହାଣର ଗଞ୍ଜାବନ୍ଦର ଥିଲା ପୂର୍ବ ଉପକୂଳର ବୃହତ୍ତମ ବନ୍ଦର । ଗଞ୍ଜା ଓ ଗଞ୍ଜ ଶବ୍ଦର ଅର୍ଥ ପଣ୍ୟାଗାର, ବାଣିଜ୍ୟ କେନ୍ଦ୍ର, ବଜାର । ଏସବୁ ଅର୍ଥ ସୂଚନା ଦିଏ ପ୍ରାଚୀନ ଗଞ୍ଜାମର ବାଣିଜ୍ୟିକ ମହତ୍ତ୍ୱ । କାରଣ ଗଞ୍ଜ ଶବ୍ଦ କ୍ରମେ ଗଞ୍ଜାମ ହୋଇଛି ।

ଇତିହାସ ପ୍ରସଙ୍ଗ ବ୍ୟତୀତ ଗଞ୍ଜାମର ସାମାଜିକ, ସାଂସ୍କୃତିକ, ପରମ୍ପରା, ପୂଜାପାର୍ବଣ, ସାହିତ୍ୟ, ଦେଶ, କାଳ, ପାତ୍ର ଆଦିରେ ପ୍ରାଚୀନ ନୌବାଣିଜ୍ୟର ଯଥେଷ୍ଟ ସୂଚନା ରହିଛି । ଓଡ଼ିଶା ଉପକୂଳର ଅନ୍ୟାନ୍ୟ ବନ୍ଦର ବନ୍ଦ ହୋଇଯାଇଥିବା ବେଳେ ଦେଶ ସ୍ୱାଧୀନ ହେବା ପର୍ଯ୍ୟନ୍ତ କେବଳ ବାଲେଶ୍ୱର ଓ ଗଞ୍ଜାମର ଗୋପାଳପୁର ବନ୍ଦର କାର୍ଯ୍ୟକ୍ଷମ ଥିଲା । ଗଞ୍ଜାମ ଆଠଗଡ ରାଜଦରବାରର କବି ରଘୁନାଥ ସୋମଯାଜୀ କୃତ ଗଙ୍ଗବଂଶାନୁଚରିତ ସଂସ୍କୃତ କାବ୍ୟରେ ଗଞ୍ଜାମ ଉପକୂଳର ନୌବାଣିଜ୍ୟ ପ୍ରସଙ୍ଗ ଉଲ୍ଲେଖ ଅଛି । ଏହି କାବ୍ୟର ସପ୍ତମ ଅଧ୍ୟାୟରେ ଆଠଗଡ ଲଙ୍ଗଳବେଣୀ ଦୁର୍ଗର ନୌବାଣିଜ୍ୟ ସମୃଦ୍ଧି ପ୍ରସଙ୍ଗ ବର୍ଣ୍ଣିତ । ଏହି କାବ୍ୟ ଖ୍ରୀ.୧୭୬୫ ବେଳର ରଚନା । ସେହିପରି ଗଞ୍ଜାମ ଖଲିକୋଟରୁ ପ୍ରାପ୍ତ ନୀଳାମ୍ବର ବିଦ୍ୟାଧରଙ୍କ 'ପ୍ରସ୍ତାବଚିନ୍ତାମଣି' ଗଦ୍ୟ ପୁସ୍ତକରେ ନୌବାଣିଜ୍ୟ, ହାଟବଜାର, ପଣ୍ୟଦ୍ରବ୍ୟ ସାଧବ ପରମ୍ପରା ଆଦି ପ୍ରସଙ୍ଗ ଅତ୍ୟନ୍ତ ବର୍ଣ୍ଣାଢ୍ୟ ଶୈଳୀରେ ରଚିତ । ସମସାମୟିକ କବି ଉପେନ୍ଦ୍ର ଭଞ୍ଜଙ୍କ ଅନେକ ବର୍ଣ୍ଣନାରେ ସାଧବ ପରମ୍ପରା ଓ ନୌବାଣିଜ୍ୟ ପ୍ରସଙ୍ଗ ରହିଛି । ଭଞ୍ଜଙ୍କ ସମୟର ଗଞ୍ଜାମ ବନ୍ଦର ସହିତ ସିଂହଳର ବାଣିଜ୍ୟ ସମ୍ପର୍କ ଥିଲା । ପ୍ରସଙ୍ଗକ୍ରମେ ସେ ତାଙ୍କ ଲାବଣ୍ୟବତୀ କାବ୍ୟରେ– ''ବୋଇତ ଲାଗିଲା ଯାଇ ସିଂହଳ ଦ୍ୱୀପରେ... ।''

ଏସବୁ ରଚନା ପ୍ରମାଣିତ କରେ ପ୍ରାଚୀନ ଗଞ୍ଜାମର ନୌବାଣିଜ୍ୟ ପରମ୍ପରା କେତେ ମହାନ୍ । କେବଳ ମଧ୍ୟଯୁଗର ପ୍ରସଙ୍ଗ ନୁହଁ ପ୍ରାଚୀନ ଅର୍ଥାତ୍ ଦଶମ ଶତାବ୍ଦୀ ବେଳେ କଳିଙ୍ଗର ରାଜଧାନୀ ମୁଖଲିଙ୍ଗ ନିକଟ କଳିଙ୍ଗପାଟଣାରୁ ଅନନ୍ତବର୍ମା ଚୋଡଗଙ୍ଗ ଦେବଙ୍କ ରାଜତ୍ୱ କାଳର ବାରଗୋଟି କଳିଙ୍ଗମୁଦ୍ରା ମିଳିଛି । ସେଥିମଧ୍ୟରୁ ଗୋଟିଏ ମୁଦ୍ରାରେ ନୌକା ଚିହ୍ନ ଅଛି । ଜାଭା ଦ୍ୱୀପକୁ କଳିଙ୍ଗୀମାନେ ଯାଉଥିବା ସୂଚନା ଅଛି । ଗୋପାଳପୁର ନିକଟବର୍ତ୍ତୀ ବନ୍ଦର ଗାଁ ନିକଟରୁ ଚତୁର୍ଥ ଶତାବ୍ଦୀର କୁଶାଣ ବଂଶର ତମ୍ବା ଏବଂ ସିଜର ଯୁଗର ରୋମୀୟ ସ୍ୱର୍ଣ୍ଣମୁଦ୍ରା ମଧ୍ୟ ମିଳିଛି । ଅନ୍ୟ ପକ୍ଷରେ ଗତ ୧୯୯୯ ମସିହାରେ ଏହି ଲେଖକ ଗଞ୍ଜାମର ବାହୁଦା ନଦୀ ଉପତ୍ୟକାରୁ ପାଞ୍ଚଗୋଟି କୁଶାଣ ମୁଦ୍ରା ସଂଗ୍ରହ କରିଛି । ଯାହା ନୌବାଣିଜ୍ୟ କାଳୀନ ମୁଦ୍ରା ବୋଲି ଇତିହାସ କଂଗ୍ରେସ ଧାର୍ଯ୍ୟ କରିଛି । ଗଞ୍ଜାମ ପାଲୁରୁ ନିକଟ ଝାଟିପଦର ରଘୁନାଥପୁର ଗ୍ରାମର ପର୍ବତରେ ସ୍ତମ୍ଭ ସଦୃଶ ଏକ ପଥର ଅଛି । ଏହି ପଥର ଉପରେ ଆଲୁଅ ଜଳାଇ ସେକାଳରେ ବତୀଘର କାର୍ଯ୍ୟ କରାଯାଉଥିଲା । ଗଞ୍ଜା ବନ୍ଦର ନିକଟରେ ରହିଛି ଐତିହାସିକ ପୋତାଗଡ ଦୁର୍ଗ, ଏହା ପ୍ରାଚୀନ ନୌବାଣିଜ୍ୟ କାଳୀନ ଏକ ଦୁର୍ଗ ତଥା ବାଣିଜ୍ୟ ପେଣ୍ଠ । ପରବର୍ତ୍ତୀ କାଳରେ ବ୍ରିଟିଶମାନେ ଫରାସୀମାନଙ୍କଠାରୁ ଦୁର୍ଗ ଦଖଲ କରି ଗଞ୍ଜାମ ସଦର ମହକୁମା ପ୍ରତିଷ୍ଠା କଲେ । ପୋତାଗଡ ସନ୍ନିକଟ ପଡିଆକୁ ଗଣତିପଡିଆ କୁହାଯାଏ । ନୌବାଣିଜ୍ୟ କାଳରେ ଏଠାରେ ଆମଦାନୀ, ରପ୍ତାନୀ ଦ୍ରବ୍ୟ ଗଣତି କରି ନିଃଶୁଳ୍କ ଧାର୍ଯ୍ୟ କରାଯାଉଥିଲା ।

ଗଞ୍ଜାମ ଉପକୂଳରେ ଅବସ୍ଥିତ କେତେକ ଗ୍ରାମର ନାମକୁ ଅନୁଧ୍ୟାନ କଲେ ନୌବାଣିଜ୍ୟର ସୂଚନା ମିଳେ । ଯଥା– ତିଅର ପେଣ୍ଠ, ମାନ୍ଦ୍ରାଜପୁର, ଦୟାନିଧି ପେଣ୍ଠ ସୋନପୁର, ଅଲ୍ଲାଡିପୁର କଲ୍ଲୁରୁ, ପାଲୁରୁ, ଧାନଘର, ହାଣ୍ଡିଘର, ଷୋଳଭାଗ ପେଣ୍ଠ, ଆମିନ୍‌ସାହେବ ପେଟା, ଆଲିଆବାଦ, ଆଲ୍ଲିପୁର, ଆର୍ଯ୍ୟପଲ୍ଲୀ, କାଞ୍ଜିଆମ୍ମା, କୁମାର ବେଗ ପଲ୍ଲୀ, ନୁରମହମ୍ମଦ୍ ପଲ୍ଲୀ, ମୁନିସିପେଣ୍ଠ, ପାଲିଆମ୍ମା, ପାଲିଆ ଛତ୍ରପୁର, ମୁଗୁରାପେଣ୍ଠ, ଭାଗିରିପେଣ୍ଠ, ତରାଇପାଟରା । ସମୁଦ୍ର କୂଳର ଏତେ ସଂଖ୍ୟକ ପେଣ୍ଠ ଗ୍ରାମ ଓ ବୈଦେଶିକ ନାମ ପ୍ରାଚୀନ ନୌବାଣିଜ୍ୟକୁ ସୂଚାଏ । ଏପରିକି ଗଞ୍ଜ ବା ଗଞ୍ଜା ଶବ୍ଦ ଏକ ପାରସ୍ୟ ଶବ୍ଦ, ଯାହାର ଅର୍ଥ ଶସ୍ୟାଗାର, ପଣ୍ୟାଗାର, ଗୋଦାମ, ମନ୍ଦିରାଗୃହ ଇତ୍ୟାଦି । ଗଞ୍ଜା ଶବ୍ଦ କ୍ରମେ ଗଞ୍ଜାମ ହୋଇଛି ।

ଗଞ୍ଜାମରେ ପ୍ରଚଳିତ ଓଷାବ୍ରତ, ବିବାହ ଆଦି ସାମାଜିକ ଚଳଣିରେ ନୌବାଣିଜ୍ୟ ପ୍ରସଙ୍ଗ ରହିଛି । ସମୁଦ୍ର ଉପକୂଳବର୍ତ୍ତୀ ମନ୍ତ୍ରିଡି ଅଞ୍ଚଳରେ କୁମାରୀ କନ୍ୟାମାନେ ବର୍ତ୍ତମାନ ସୁଦ୍ଧା 'ନତ ଓଷା' ପାଳନ କରନ୍ତି । କେନ୍ଦ୍ର ଓଡ଼ିଶାର ଖୁଦୁରୁକୁଣୀ ଭଳି ଏହି ଓଷା ନତଓଷାରେ ନୌବାଣିଜ୍ୟ ସୂଚନା ରହିଛି । ଗଞ୍ଜାମର କନିସ, ମନ୍ତ୍ରିଡି ଅଞ୍ଚଳରେ ସାହୁ ବ୍ରାହ୍ମଣ ନାମକ ଜାତିଏ ବ୍ରାହ୍ମଣ ବାସ କରନ୍ତି । ପୂର୍ବେ ଏମାନଙ୍କୁ 'ପୋହଳାବିକା' ବ୍ରାହ୍ମଣ ବୋଲି କୁହାଯାଉଥିଲା । ସମ୍ଭବତଃ ଏହି ବ୍ରାହ୍ମଣମାନେ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରୁ ରହପୋହଳା ଆଦି ଆଣି ବିକ୍ରି କରୁଥିଲେ । ପରିବାରର ପରମ୍ପରା ରକ୍ଷା କରି ଆଜି ମଧ୍ୟ ଏହି ଜାତିର ଲୋକମାନେ ବର୍ଷର ଅନ୍ତତଃ ଗୋଟିଏ ଦିନ ବ୍ୟବସାୟ କରିଥାନ୍ତି । ଘର ଅଗଣାକୁ କୁଆ ଆସିଲେ ଚାଉଳ ପୁଞ୍ଜି ଦେବା ଏବଂ ପନିକିରେ ପରିବା ନକାଟିବା ବିଧି ସାହୁ ବ୍ରାହ୍ମଣ ପରିବାରରେ ପ୍ରଚଳିତ । ନୌବାଣିଜ୍ୟ କ୍ରମରେ ସମୁଦ୍ର ଯାତ୍ରା କରିବା ବ୍ରାହ୍ମଣ ଜାତି ପକ୍ଷରେ ନିଷେଧ ଥିଲା । ସାହୁ, ସାବତ, ମହାନ୍ତି ସଂଜ୍ଞାଧାରୀ ବ୍ରାହ୍ମଣମାନେ ପ୍ରଥମେ ନୌବାଣିଜ୍ୟ କଲେ । ଏଣୁ ଗଞ୍ଜାମରେ ପ୍ରବାଦ ସୃଷ୍ଟି ହେଲା–

ସାହୁ, ସାବତ, ମହାନ୍ତି,
ଏମାନେ ବ୍ରାହ୍ମଣ ନୁହଁନ୍ତି ।

ଗଞ୍ଜାମରେ କୁମୁଟି ନାମକ ଏକ ବେପାରୀ ଜାତିର ଲୋକ ବାସ କରନ୍ତି । ମୂଳତଃ ଏମାନେ ତେଲୁଗୁ । ବ୍ୟବସାୟ ସୂତ୍ରରେ ଏମାନେ ଓଡ଼ିଶାରେ ବାସ କରି କଳିଙ୍ଗ ବୈଶ୍ୟ ବୋଲାନ୍ତି । ଏହି ଜାତିର ବିବାହ କାରିକାରେ ବୋଇତ ଭସା ନାମକ ବିଧି ପ୍ରଚଳିତ। ବ୍ରହ୍ମପୁର ନିକଟ କନିସି ବ୍ଲକରେ ଛେଳିଆ ବୋଲି ଏକ ଗ୍ରାମ ଅଛି । ସମୁଦ୍ରକୂଳିଆ ଏହି ଗ୍ରାମରେ ପ୍ରଚଳିତ କିମ୍ବଦନ୍ତୀ ପ୍ରକାରେ– ''ସାଧବ ଝିଅ ଏଠି ଛେଳି ଚରାଉଥିଲା, ଏଣୁ ଗାଁର ନାମ ଛେଳିଆ ହେଲା । ଯେଉଁ କିମ୍ବଦନ୍ତୀ 'ତଅପୋଇ' ପ୍ରସଙ୍ଗ ନିଶ୍ଚୟ । କାରଣ ଛେଳିଆ ଗାଁ ନିକଟରେ ସୁନପୁର ଯାହା ପ୍ରାଚୀନ ସୁବର୍ଣ୍ଣପୁର ବନ୍ଦର ଏବଂ ମନ୍ଦିରି ଭୈରବୀ ହେଉଛନ୍ତି ସାଧବ ପୂଜିତ ମଙ୍ଗଳା । ତତ୍ ସନ୍ନିକଟରେ ବିଘ୍ନନାଶକ ପଞ୍ଚମା ବିନାୟକ ପୀଠ । ବର୍ତ୍ତମାନ ସୁଦ୍ଧା କନିସି ତହସିଲର ସମୁଦ୍ର କୂଳିଆ ଗ୍ରାମମାନଙ୍କରେ ଗବେଷଣା କଲେ ନୌବାଣିଜ୍ୟର ବହୁ ସୂଚନା ମିଳେ ।

ନୌବାଣିଜ୍ୟ ସହିତ ସମ୍ପୃକ୍ତ ଗଞ୍ଜାମର ପାଲିଆ, ସାଲିଆ, ସାମଲ, ସାହାଣୀ, ବାଉରୀ, ସାହୁ ପ୍ରଭୃତି ଜାତିର ଜୀବନ ଧାରା ସହିତ ନୌବାଣିଜ୍ୟର ସମ୍ପର୍କ ବାରିହୁଏ । ଗଞ୍ଜାମର ଦିଗପହଣ୍ଡିରୁ ଆରମ୍ଭ ହୋଇ ସମଗ୍ର ପୂର୍ବଭାରତରେ ପ୍ରଚଳିତ 'ତ୍ରିନାଥମେଳା'ରେ ସାଧବ ଓ ନୌବାଣିଜ୍ୟ ପ୍ରସଙ୍ଗ ରହିଛି ।

ଏମନ୍ତେ ଏକ ସୌଦାଗର,
ନାବ ଘେନିଣ ଦରିଆର ।
ନାବ ଚଳାଇ ଯାଉଥିଲା,
ସୁନପୁରର କୂଳେ ହେଲା ।
ନାବକୁ କୂଳରେ ଖଟାଇ,
ସେ ସ୍ଥାନେ ମିଳିଲାକ ଯାଇ ।
ବୋଇଲା ଶୁଣ ସର୍ବଜନ,
ତ୍ରିନାଥ ବୋଲି କିସ ନାମ ।

ସାତ ନଉକା ଏ ଯେ ମୋର,
ଲାଗିଛି ନଦୀର କୂଳର ।
ଭଲରେ ଫେରିଣ ଆସିବି,
ଗୃହରେ ସୁଖରେ ମିଳିବି ।
ଯେବେ ମୁଁ ଶୁଭେ ନାବେ ଯିବି,
ପ୍ରଭୁଙ୍କ ପାଞ୍ଚମେଳା ଦେବି ।

ଏ ପ୍ରସଙ୍ଗ ଗଞ୍ଜାମ ଉପକୂଳର ସୁନପୁର (ପ୍ରାଚୀନ ସୁବର୍ଣ୍ଣପୁର) ବନ୍ଦର ଏବଂ ବାହୁଦା ନଦୀ ମୁହାଣ ପ୍ରସଙ୍ଗ ସୂଚାଉଛି । ଗଞ୍ଜାମର 'ଧୋବାନାଟ' ଗୀତରେ ନୌବାଣିଜ୍ୟର ସୂଚନା ରହିଛି–

ମହୁରିଆ ଗଡିଗଡି ଗଲା ଖଡି
ଗଞ୍ଜା ମୁହାଣରେ ବୋଇତ ଯୋଡି ଯେ...
ବଣିଆ ଧାଡିକି ଧାଡି ।

X X X

ମହୁରିଆ–ଧାନରୁ ବାଛ ଅଗାଡି
ସାଆନ୍ତ ଯାଇଛି ବୋଇତ ଚଢି ଯେ
ଆଣିଦେବ ପାଟଶାଢୀ।

X X X

ମହୁରିଆ–ବେପାର ବଣିଜ ହାଟ
ପିତଳ ଗାଁର ସରୁ ଜରି ଶାଢୀ
ବରମପୁରିଆ ପାଟ ।

ଗଞ୍ଜାମର ଐତିହ୍ୟ ସଂସ୍କୃତି ତଥା ଦେଶ କାଳ ପାତ୍ରାଦିରେ ସଜୀବ ହୋଇ ରହିଛି ନୌବାଣିଜ୍ୟର ସୂଚନା ।

ଶ୍ରୀକୌଣ୍ଡିନ୍ୟ
ଭୀଷ୍ମଗିରି, ଗଞ୍ଜାମ–୭୬୧୦୫୫



# ଐତିହାସିକ ପିପିଲି ବନ୍ଦର

ଡକ୍ଟର ଅତୁଲ ଚନ୍ଦ୍ର ପ୍ରଧାନ

ସୁବର୍ଣ୍ଣରେଖା ନଦୀକୂଳରେ ମୁହାଣଠାରୁ ୧୫/୧୬ ମାଇଲ ଦୂରରେ ଅବସ୍ଥିତ ପିପିଲି ବନ୍ଦର ଏକଦା ବିଶ୍ୱରେ ପ୍ରସିଦ୍ଧ ଲାଭ କରିଥିଲା । ଷୋଡ଼ଶ ଶତାବ୍ଦୀଠାରୁ ଉନବିଂଶ ଶତାବ୍ଦୀର ପ୍ରାରମ୍ଭିକ ଭାଗ ପର୍ଯ୍ୟନ୍ତ ୟୁରୋପୀୟ ବଣିକ ଓ ପରିଦର୍ଶକମାନଙ୍କ ବିବରଣୀ ଓ ମାନଚିତ୍ରରେ ଏହାର ବହୁତ ଉଲ୍ଲେଖ ଦେଖିବାକୁ ମିଳେ । ଆବୁଲ ଫାଜଲ୍‌ଙ୍କ ଆଇନ୍-ଇ-ଆକବରୀ ଅନୁସାରେ ପିପିଲି ଜଳେଶ୍ୱର ସରକାର ଅନ୍ତର୍ଭୁକ୍ତ ଏକ ବିଶିଷ୍ଟ ମାହାଲ ଥିଲା, ଏହାର ରାଜସ୍ୱ ସମଗ୍ର ଜଳେଶ୍ୱର ସରକାରର ଦୁଇ ପଞ୍ଚମାଂଶରୁ ଅଧିକ ଥିଲା, ଏଠାରେ ମୋଗଲ ସରକାରଙ୍କ ତରଫରୁ ୧୦ଜଣ ଅଶ୍ୱାରୋହୀ ଓ ୨୦ଜଣ ପଦାତିକ ସୈନ୍ୟବାହିନୀ ମୁତୟନ କରାଯାଇଥିଲା । ଏକଦା ପର୍ତ୍ତୁଗୀଜ, ଓଲନ୍ଦାଜ ଓ ଦିନାମାରମାନେ ଏଠାରେ ବାଣିଜ୍ୟ କୋଠିମାନ ସ୍ଥାପନ କରିଥିଲେ । ଏହା ଇରୋପ, ଦକ୍ଷିଣପୂର୍ବ ଏସିଆ ଓ ଚୀନ ସହିତ ବାଣିଜ୍ୟର ଏକ କେନ୍ଦ୍ରରୂପେ କାର୍ଯ୍ୟ କରୁଥିଲା । ଏଠାରେ ପର୍ତ୍ତୁଗୀଜ ଓ ଓଲନ୍ଦାଜ ବଣିକମାନେ ସୁଦୃଶ୍ୟ ଅଟ୍ଟାଳିକାମାନ ନିର୍ମାଣ କରିଥିଲେ, ମୋଟା ମୋଟି ଭାବରେ ଏହା ଏକ ମଧ୍ୟମ ଧରଣର ସହରରୂପେ ଗଢି ଉଠିଥିଲା । ପିପିଲି ବନ୍ଦରର ଇତିହାସ କେତେ ପ୍ରାଚୀନ ତାହା ନିର୍ଣ୍ଣୟ କରିବା ଅସମ୍ଭବ । ଏହାର ପ୍ରକୃତ ଅବସ୍ଥିତି ନିର୍ଣ୍ଣିତ ହୋଇପାରି ନାହିଁ ଏବଂ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସାପେକ୍ଷ ।

ଭାରତକୁ ଜଳପଥ ଆବିଷ୍କାର ପରେ ଷୋଡ଼ଶ ଶତାବ୍ଦୀରେ ପର୍ତ୍ତୁଗୀଜମାନେ ଭାରତ, ଦକ୍ଷିଣପୂର୍ବ ଏସିଆ ଓ ଚୀନ ସହିତ ପ୍ରତ୍ୟକ୍ଷ ଭାବରେ ବାଣିଜ୍ୟିକ ସମ୍ପର୍କ ସ୍ଥାପନ କରିଥିଲେ । ଏହି ପରିପ୍ରେକ୍ଷୀରେ ସେମାନେ ୧୫୧୪ ଖ୍ରୀଷ୍ଟାବ୍ଦରେ ପୂର୍ବ ଉପକୂଳରେ ସୁବର୍ଣ୍ଣରେଖା ନଦୀର ମୁହାଣ ଏବଂ ଏହାର ଉପକୂଳବର୍ତ୍ତୀ ପିପିଲିକୁ ବନ୍ଦର ଭାବରେ ବ୍ୟବହାର କରିଥିଲେ । ସେମାନେ ମାଲାକା ଓ ମେକାଓଠାରୁ ଏହି ବନ୍ଦରକୁ ମସଲା, ପଶମବସ୍ତ୍ର, ଦସ୍ତା, ଟିଣ, ରୂପା ଏବଂ ସିନ୍ଦୂର ଆମଦାନୀ କରୁଥିଲେ ଏବଂ ଫେରିଲାବେଳେ ସେମାନଙ୍କ ଜାହାଜରେ କାର୍ପାସ ବସ୍ତ୍ର, ବଙ୍ଗୀୟ ମସ୍‌ଲିନ୍, ଲହୁଣୀ, ଚାଉଳ ଏବଂ ତୈଳବୀଜ ନେଇ ଯାଉଥିଲେ । ୧୬୩୩ ମସିହାରେ ଇଂରେଜ ବଣିକ ଉଇଲିୟମ୍ ବ୍ରୁଟନ୍ ପିପିଲିକୁ ପର୍ତ୍ତୁଗୀଜମାନଙ୍କର ଏକ ବନ୍ଦରନଗରୀ ବୋଲି ବର୍ଣ୍ଣନା କରିଥିଲେ । ୧୬୩୬ ମସିହାରେ କଟକର 'ନବାବ'(ମୁସଲମାନ ଶାସକ) ମୁତାକଦ୍ ଖାଁ (୧୬୩୨-୧୬୪୧) ଠାରୁ ଅନୁମତି ନେଇ ପର୍ତ୍ତୁଗୀଜମାନେ ପିପିଲିଠାରେ ଏକ ସରକାରୀ ଆବାସ ନିର୍ମାଣ କରିଥିଲେ । ବାଣିଜ୍ୟିକ କାରବାର ସାଙ୍ଗରେ ପର୍ତ୍ତୁଗୀଜମାନେ ପିପିଲିଠାରେ ଏକ ଗୀର୍ଜା ସ୍ଥାପନ କରି ଖ୍ରୀଷ୍ଟିୟାନ ଧର୍ମ ପ୍ରଚାର ଆରମ୍ଭ କରିଥିଲେ । ଏହାଛଡା ସେମାନେ ଏଠାରେ କ୍ରୀତ ଦାସ କାରବାର ମଧ୍ୟ ଚଳାଇଥିଲେ ।

୧୬୨୫ କିମ୍ବା ୧୬୨୭(ଏହା ବିବଦମାନ) ମସିହାରେ ଓଲନ୍ଦାଜମାନେ ପିପିଲିକୁ ଆସିଥିଲେ । ଏହା ପୂର୍ବରୁ ଛୋଟ ଛୋଟ ଜାହାଜରେ ଦେଶୀୟ ବଣିକମାନେ ଓଡ଼ିଶାରୁ କାର୍ପାସ୍ ବସ୍ତ୍ର ଓଲନ୍ଦାଜମାନଙ୍କର ମୁଖ୍ୟ ବାଣିଜ୍ୟ କେନ୍ଦ୍ର ମସୁଲିପଟମ୍‌କୁ ରପ୍ତାନୀ କରୁଥିଲେ । ୧୬୩୬-୩୭ ମସିହାରେ ଓଲନ୍ଦାଜମାନେ ମୋଗଲ ସରକାରଙ୍କ ବିରୋଧ ହେତୁ ସେମାନଙ୍କର ବାଣିଜ୍ୟ କାରବାର ହୁଗୁଳିରୁ ପିପିଲିକୁ ସ୍ଥାନାନ୍ତରିତ କରିଥିଲେ । ପିପିଲିରେ ମଧ୍ୟ ସେମାନେ ମୁସଲମାନ୍ ବଣିକମାନଙ୍କର ବିରୋଧର ସମ୍ମୁଖୀନ ହୋଇଥିଲେ । କିନ୍ତୁ ମୋଗଲ ସମ୍ରାଟଙ୍କଠାରୁ ଅନୁମତି ପାଇବା ଫଳରେ ୧୬୩୯ ମସିହା ବେଳକୁ ପିପିଲିରେ ସେମାନଙ୍କର ବାଣିଜ୍ୟ କାରବାର ସୁରୁଖୁରୁରେ ଚାଲିଲା ଏବଂ ଲାଭଦାୟକ ହୋଇଥିଲା । ପିପିଲିଠାରୁ ଦଶମାଇଲ୍ ଦୂରରେ ମୋମେନ୍ତିପୁରରେ

ଓଲନ୍ଦାଜାମାନେ ଏକ ବାଣିଜ୍ୟ କେନ୍ଦ୍ର ସ୍ଥାପନ କରିଥିଲେ । ପରବର୍ତ୍ତୀ କାଳରେ ଓଲନ୍ଦାଜମାନେ ବାଲେଶ୍ୱରକୁ ସେମାନଙ୍କ ଏକ ମୁଖ୍ୟ ବାଣିଜ୍ୟ କେନ୍ଦ୍ରରେ ପରିଣତ କରିଥିଲେ ଏବଂ ୧୬୭୬ ମସିହାରେ ସେମାନେ ପିପିଲିରେ ଥିବା କାରଖାନାକୁ ବନ୍ଦ କରି ଦେଇଥିଲେ । ଓଲନ୍ଦାଜମାନେ ପିପିଲିରୁ ଇଉରୋପ, ଦକ୍ଷିଣପୂର୍ବ ଏସିଆ ଓ ସିଂହଳ ସହିତ ବାଣିଜ୍ୟ କାରବାର ଚଳାଇଥିଲେ । ସେମାନେ ଏଠାରୁ ବାଟାଭିଆକୁ ଚାଉଳ, ଲୁଗା ଏବଂ ଲହୁଣି ଓ ସିଂହଳକୁ ଚାଉଳ ରପ୍ତାନୀ କରୁଥିଲେ ।

ଲାର୍ସେନ ଡି ଡାନାସ୍କଙ୍କ ମତରେ ୧୬୨୫ ମସିହାରେ ଦିନାମାରମାନେ ପିପିଲିଠାରେ ବାଣିଜ୍ୟ କୋଠି ସ୍ଥାପନ କରିଥିଲେ । ପରବର୍ତ୍ତୀ କାଳରେ ସେମାନେ ବାଲେଶ୍ୱରରେ କୋଠି ସ୍ଥାପନ କରିଥିଲେ ।

ପିପିଲିରେ ଇଂରେଜମାନଙ୍କର ବାଣିଜ୍ୟକେନ୍ଦ୍ର ସ୍ଥାପନ ସମ୍ବନ୍ଧରେ ଦୁଇପ୍ରକାର ମତ ପ୍ରକାଶ ପାଇଛି । ସି.ଆର୍ ୱିଲ୍‌ସନ୍ ଓ ସାର୍ ହେନ୍‌ରୀ ୟୁଲ୍‌ଙ୍କ ମତରେ ଇଂରେଜମାନେ ପିପିଲିଠାରେ କୌଣସି ବାଣିଜ୍ୟ କେନ୍ଦ୍ର ସ୍ଥାପନ କରିନଥିଲେ । କିନ୍ତୁ ଡବ୍ଲୁ ଡବ୍ଲୁ ହଣ୍ଟର ଓ ହ୍ୱିଲର ଏହାର ବିରୋଧୀ ମତ ପୋଷଣ କରିଛନ୍ତି । ସେମାନଙ୍କ ମତରେ ୧୬୩୪ରେ ମୋଗଲ ସମ୍ରାଟ ଶାହଜାହାନଙ୍କଠାରୁ ଫାର୍ମାନ୍ ପାଇ ଇଂରେଜମାନେ ପିପିଲିରେ ବାଣିଜ୍ୟ କାରବାର ଚଳାଇଥିଲେ । ବାର୍ଣ୍ଣିୟାର(୧୬୫୬-୫୮)ଙ୍କ ମତରେ ୧୬୩୪ରେ ଇଂରେଜମାନେ ପିପିଲିଠାରେ ଏକ ବସତି ସ୍ଥାପନ କରିଥିଲେ ।

ୟୁରୋପୀୟ ବଣିକମାନଙ୍କ ଛଡା ଏସିଆର ବିଭିନ୍ନ ଦେଶର ବଣିକମାନେ ପିପିଲି ବନ୍ଦରରେ ବାଣିଜ୍ୟ କାରବାର ଚଳାଇଥିଲେ । ବଙ୍ଗ, ବିହାର ଓ ଓଡ଼ିଶାର ବିଭିନ୍ନ ସ୍ଥାନରୁ ପଣ୍ୟଦ୍ରବ୍ୟମାନ (ଅଫିମ, ରେଶମ, ଚିନି, ଅଦା, ସୁରା, ଚାଉଳ, ଲହୁଣୀ) ରପ୍ତାନୀ ପାଇଁ ପିପିଲି ବନ୍ଦରକୁ ଆସୁଥିଲା । ମୋଟ ଉପରେ ଷୋଡଶ ଓ ସପ୍ତଦଶ ଶତାବ୍ଦୀରେ ପିପିଲି ଏକ ଆନ୍ତର୍ଜାତିକ ବାଣିଜ୍ୟ କେନ୍ଦ୍ରରେ ପରିଣତ ହୋଇଥିଲା ଏବଂ ଏଠାରେ ଜାହାଜ ମଧ୍ୟ ନିର୍ମିତ ହେଉଥିଲା । ବାଣିଜ୍ୟ କାରବାର ଲୋପ ପାଇଲେ ମଧ୍ୟ ଊନବିଂଶ ଶତାବ୍ଦୀର ପ୍ରାରମ୍ଭିକ ଭାଗ ପର୍ଯ୍ୟନ୍ତ ପିପିଲି ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରୂପେ ଚିହ୍ନିତ ହେଉଥିଲା । ୧୭୭୬ରେ ଥୋମାସ୍ ମୋଟ୍ ତାଙ୍କର ଯାତ୍ରା ବିବରଣୀରେ ପିପିଲି ବିଷୟରେ ଉଲ୍ଲେଖ କରିଛନ୍ତି । ୧୮୨୦ ମସିହାରେ ଏହି ସ୍ଥାନ କିଭଳି ଏକ ବାଣିଜ୍ୟ କେନ୍ଦ୍ରରୁ କେଉଟମାନଙ୍କ ଗ୍ରାମରେ ପରିଣତ ହୋଇଥିଲା, ତାହା ଉଲ୍ଲେଖ କରିଛନ୍ତି । ୧୮୩୦ରେ ଲଣ୍ଡନରେ ପ୍ରକାଶିତ ଏକ ମାନଚିତ୍ରରେ ଏହି ସ୍ଥାନ ପ୍ରଦର୍ଶିତ ହୋଇଛି । ୟୁରୋପୀୟ ବଣିକମାନଙ୍କ ମାନଚିତ୍ରରେ ପିପିଲି କେବଳ ଏକ ସ୍ଥାନର ନାମ ନଥିଲା, ସୁବର୍ଣ୍ଣରେଖା ନଦୀର ମୁହାଣଠାରୁ ମୁଖ୍ୟ ପିପିଲି ପର୍ଯ୍ୟନ୍ତ ନଦୀକୁ ପିପିଲି ନଦୀ ବୋଲାଯାଉଥିଲା । ସୁବର୍ଣ୍ଣରେଖା ନଦୀ କୂଳରେ ପିପିଲି ଏକମାତ୍ର ବନ୍ଦର ନଥିଲା । ଏହା କୂଳରେ ମୋମେନ୍ତିପୁର ଓ ଶାହାବନ୍ଦର ଭଳି ଅନ୍ୟ ବାଣିଜ୍ୟ କେନ୍ଦ୍ରମାନ ଗଢି ଉଠିଥିଲା । ଜଳେଶ୍ୱରରେ ଥିବା ବତୀଘର ଏବଂ ଖରିଦ ପିପଳି, ଝାଡପିପଳି, ଖରିଦ ଛକ ଏବଂ ସାହେବ ନଗର ପାଟନା ଆଦି ନାମରୁ ସୁବର୍ଣ୍ଣରେଖା ନଦୀକୂଳରେ ଚାଲିଥିବା ବ୍ୟାପକ ନୌବାଣିଜ୍ୟର ସୂଚନା ମିଳେ ।

ପିପିଲି ବନ୍ଦର କାହିଁକି ପରିତ୍ୟକ୍ତ ହେଲା ? ସୁବର୍ଣ୍ଣରେଖା ନଦୀ ମୁହାଣରେ ବାଲୁକାସ୍ତୂପ ସୃଷ୍ଟି ହେବା ଏବଂ ନଦୀର ଗତିପଥ ପରିବର୍ତ୍ତନ ଏହାର ମୁଖ୍ୟକାରଣ । ଷୋଡଶ ଓ ସପ୍ତଦଶ ଶତାବ୍ଦୀରେ ବଡବଡ ଜାହାଜଗୁଡିକ ନଦୀ ମୁହାଣରେ ଗଭୀର ପାଣିରେ ଲଙ୍ଗର ପକାଉ ରହୁଥିଲେ ଏବଂ ଛୋଟ ଛୋଟ ଜାହାଜରେ ମାଲ ବୋଝେଇ କରି ପିପିଲିକୁ ମାଲ ନେବା ଓ ସେଠାରୁ ଆଣିବା କାର୍ଯ୍ୟ କରାଯାଉଥିଲା । କିନ୍ତୁ ପ୍ରାକୃତିକ କାରଣ ହେତୁ ଏହା ଅସମ୍ଭବ ହେଲା । ତେଣୁ ୟୁରୋପୀୟ ବଣିକମାନେ ସେମାନଙ୍କ ବାଣିଜ୍ୟ କାରବାର ପ୍ରଥମେ ବାଲେଶ୍ୱର ଓ ତା'ପରେ ହୁଗୁଳିକୁ ସ୍ଥାନାନ୍ତରିତ କରିଥିଲେ । ସାମ୍ପ୍ରତିକ ସ୍ଥିତିରେ ଦୁଇଟି ଉଦ୍ୟମ ଉଲ୍ଲେଖନୀୟ । ପ୍ରଥମଟି ହେଲା ସର୍ବେକ୍ଷଣ ଓ ଖନନ ଦ୍ୱାରା ପିପିଲି ଆବିଷ୍କାର ଓ ଅତୀତ ବାଣିଜ୍ୟିକ କାରବାରର ପ୍ରମାଣ ଆବିଷ୍କାର । କିଛି ବର୍ଷ ତଳେ ସୁବର୍ଣ୍ଣରେଖା ନଦୀ ମୁହାଣରେ ପର୍ତ୍ତୁଗୀଜ ଲଙ୍ଗର ଆବିଷ୍କୃତ ହେଉଥିଲା । ଏହା ବର୍ତ୍ତମାନ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ, ୧୯୯୪ରେ ବୟାଁ ଛକ (ତାଳସାରୀ)ରେ ପର୍ତ୍ତୁଗୀଜ ବୟାଁ ଆବିଷ୍କୃତ ହୋଇଥିଲା । ପିପିଲି ବନ୍ଦରର ମାନଚିତ୍ର ସହିତ ସରଜମିନ ସର୍ଭେ ଓ ଭୂମିର ଉପରି ଭାଗ ଖନନ ଫଳରେ କେତେକ ସ୍ଥାନରେ (ମନୁନଗର ଓ ଆରୁହା ବୃତ୍ତି ଇତ୍ୟାଦି ଗ୍ରାମମାନଙ୍କରେ) ପୁରାତନ ଇଟା ଆବିଷ୍କୃତ ହୋଇଛି । ନଦୀର ଗତିପଥ ପରିବର୍ତ୍ତନ ହେତୁ ପୁରାତନ ବସତି ସ୍ଥାନଗୁଡିକ ଚିହ୍ନଟ କରିବା ଅବଶ୍ୟ ଏକ କଷ୍ଟସାଧ୍ୟ ବ୍ୟାପାର । ଦ୍ୱିତୀୟ ଉଦ୍ୟମ ହେଲା ଆଧୁନିକ ଇଞ୍ଜିନିୟରିଂ କୌଶଳ ଦ୍ୱାରା କୀର୍ତ୍ତନିୟାଠାରେ ସୁବର୍ଣ୍ଣରେଖା ମୁହାଣରେ ଘରୋଇ କମ୍ପାନୀଙ୍କ ଦ୍ୱାରା ବନ୍ଦର ନିର୍ମାଣ । ଯଦି ଏହା ସମ୍ଭବ ହୁଏ, ତେବେ କୀର୍ତ୍ତନିୟା ଏକବିଂଶ ଶତାବ୍ଦୀର ପିପିଲି ବନ୍ଦରରେ ପରିଚିତ ହେବ ।

ଏମ୍.ଆଇ.ଜି-୬୮
ବରମୁଣ୍ଡା ହାଉସିଂବୋର୍ଡ କଲୋନୀ
ଭୁବନେଶ୍ୱର-୩

# ସୁନ୍ଦରଗଡ଼: ଏକ ଅନନ୍ୟ ସଂସ୍କୃତି ଓ ସମାଜର ମାନଚିତ୍ର

ଭଗବାନ ପଟେଲ

ଓଡ଼ିଶାର ମାନଚିତ୍ରରେ ସୁନ୍ଦରଗଡ ଜିଲ୍ଲାର ଅବସ୍ଥିତି ଓ ଏହାର ଧର୍ମ, ସଂସ୍କୃତି ଓ ସାହିତ୍ୟର ଦାନ ଅବିସ୍ମରଣୀୟ ଏବଂ ଅତୁଳନୀୟ ଅଟେ । ଏଠାକାର ଜାତି ଓ ଜନଜାତି ତଥା ଆଦିବାସୀ ଲୋକମାନେ ଏକ ଭିନ୍ନ ପରିଚୟ ସୃଷ୍ଟି କରିପାରିଛନ୍ତି ଅନ୍ୟମାନଙ୍କଠାରୁ । ଏମାନଙ୍କର ସାମାଜିକ ଜୀବନଚର୍ଯ୍ୟାର ଏକ ବିଶେଷ ନୀତି, ରୀତି ଓ ନିୟମ ରହୁଥିବାର ଜଣାଯାଏ । ସୁନ୍ଦରଗଡର ଅଧିକାଂଶ ଅଂଚଳ ପାହାଡିଆ ଅଟେ । ଏହା ଏକ ଜଙ୍ଗଲ ପରିପୂର୍ଣ୍ଣ ସ୍ଥାନ । ଏଠାକାର ଅଧିବାସୀମାନେ ପ୍ରଧାନତଃ କୃଷିକର୍ମ ଉପରେ ନିର୍ଭର କରି ଜୀବିକା ଅର୍ଜନ କରନ୍ତି । ପୂର୍ବେ ଏଠାକାର ଜଙ୍ଗଲରେ ରହୁଥିବା ଅଧିବାସୀମାନେ ଜଙ୍ଗଲଜାତ ଦ୍ରବ୍ୟମାନଙ୍କ ଉପରେ ନିର୍ଭରଶୀଳ ଥିଲେ । ବିଶେଷତଃ ଚାର, କେନ୍ଦୁ, ମହୁଲ, କାଠ, ଝୁଣା ତଥା ଅନ୍ୟାନ୍ୟ ଜଙ୍ଗଲଜାତ ଦ୍ରବ୍ୟ ଉପରେ ନିର୍ଭର କରି ନିଜର ଗୁଜୁରାଣ ମେଣ୍ଟାଉଥିବାର ଜଣାଯାଏ । ଶିକ୍ଷା କ୍ଷେତ୍ରରେ ଏହା ପଛୁଆ ଜିଲ୍ଲା ଥିଲେ ମଧ୍ୟ ସରକାରଙ୍କ ନିରନ୍ତର ଶିକ୍ଷାଯୋଜନା ଅନୁସାରେ ଏହା ବର୍ତ୍ତମାନ ଏକ ଶିକ୍ଷିତ ଅଞ୍ଚଳ ରୂପେ ମାନ୍ୟତା ପାଇପାରିଛି । ବର୍ତ୍ତମାନ ପରିସ୍ଥିତିରେ ମଧ୍ୟ ଅନେକ ସ୍ଥାନ ରହିଛି, ଯେଉଁଠାରେ ଶିକ୍ଷାର ଆଲୋକ ବର୍ତ୍ତିକା ପହଞ୍ଚି ପାରିନାହିଁ । ଅପର ପକ୍ଷରେ, ଏଠାକାର ଜନସାଧାରଣ ଧର୍ମ, ସଂସ୍କୃତି, ଶିକ୍ଷା, ସ୍ୱାସ୍ଥ୍ୟ, ଖେଳ ଆଦିରେ ସମ୍ପୂର୍ଣ୍ଣ ସଚେତନ ରହିଥିବାର ଜଣାଯାଏ । ଏହି ଜିଲ୍ଲାରେ ବହୁ ଧର୍ମର ଲୋକ ପାରସ୍ପରିକ ସ୍ନେହ, ଶ୍ରଦ୍ଧା, ଆତ୍ମୀୟତାର ସହିତ ବସବାସ କରିଆସୁଛନ୍ତି । ପର୍ବପର୍ବାଣିଗୁଡିକ ପାଳନ ସମୟରେ ସବୁ ସମ୍ପ୍ରଦାୟର ଲୋକ ପରସ୍ପର ମଧ୍ୟରେ ଉତ୍ତମ ବୁଝାମଣା ଓ ସୁ-ସମ୍ପର୍କ ତଥା ସହଯୋଗ ରକ୍ଷା କରିଥାନ୍ତି । ଏଣୁ ପ୍ରତ୍ୟେକ ପର୍ବପର୍ବାଣିରେ ବିଭିନ୍ନ ଧର୍ମର ଜନସାଧାରଣ ପରସ୍ପରକୁ ପୂର୍ଣ୍ଣ ସହଯୋଗ କରିଥାନ୍ତି । ସୁନ୍ଦରଗଡ ଜିଲ୍ଲାରେ ଜାତି, ଧର୍ମ, ବର୍ଣ୍ଣ,



ଲିଙ୍ଗ, ଭାଷା, ଗୋଷ୍ଠୀ ଆଦି ନିର୍ବିଶେଷରେ ସମସ୍ତେ ପରମ ଆତ୍ମୀୟତା ଓ ନିବିଡ ବନ୍ଧନରେ ବାନ୍ଧି ହୋଇଥିବାର ଦେଖାଯାଏ । ଭାଇଚାରାର ଚରମ ନିଦର୍ଶନ ପ୍ରଦର୍ଶନ କରିବାରେ ଏମାନେ ଆପ୍ରାଣ ଉଦ୍ୟମ କରୁଥିବାର ଦେଖାଯାଏ । ଏଠାକାର ଲୋକମାନେ ଧର୍ମ କ୍ଷେତ୍ରରେ ଉଦାର ମନୋଭାବ ପୋଷଣ କରୁଥିବା ଦୃଶ୍ୟମାନ ହୁଏ । ହିନ୍ଦୁମାନେ ମନ୍ଦିର, ମୁସଲମାନ୍‌ମାନେ ମସ୍‌ଜିତ, ଖ୍ରୀଷ୍ଟିଆନମାନେ ଗୀର୍ଜା, ପଞ୍ଜାବୀମାନେ ଗୁରୁଦ୍ୱାର ତଥା ଅନ୍ୟାନ୍ୟ ଧର୍ମାବଲମ୍ବୀମାନେ ସ୍ୱ ସ୍ୱ ପୂଜାପୀଠମାନଙ୍କରେ ସେମାନଙ୍କର

ଧର୍ମୀୟ ପର୍ବପର୍ବାଣିମାନ ସ୍ୱାଧୀନଭାବେ ପାଳନ କରି ପ୍ରକୃତ ଧର୍ମ ନିରପେକ୍ଷତାର ଦୃଷ୍ଟାନ୍ତ ପ୍ରଦର୍ଶନ କରି ଆସୁଛନ୍ତି ।

ସୁନ୍ଦରଗଡ ଜିଲ୍ଲା ଏକ ପାହାଡିଆ ଅଞ୍ଚଳ ହୋଇଥିବାରୁ ଏଠାକାର ଅଧିବାସୀ ଅତ୍ୟନ୍ତ ପରିଶ୍ରମୀ ଓ କଷ୍ଟକର କାର୍ଯ୍ୟକୁ ମଧ୍ୟ ଅକ୍ଳେଶରେ କରିପାରନ୍ତି । ଦିନର କଠିନ ପରିଶ୍ରମ ପରେ ରାତ୍ରି ସମୟରେ ବିଭିନ୍ନ ପ୍ରକାର ନାଚଗୀତ ମାଧ୍ୟମରେ ମନୋରଞ୍ଜନ କରିଥାନ୍ତି । ଏଠାରେ ବହୁ ପ୍ରକାର ପର୍ବପର୍ବାଣିମାନ ମଧ୍ୟ ପାଳନ କରାଯାଇଥାଏ । ପର୍ବପର୍ବାଣିମାନଙ୍କରେ ଛୋଟମାନେ ବଡମାନଙ୍କୁ ଯଥାଯଥ ସମ୍ମାନ ପ୍ରଦର୍ଶନ କରୁଥିବାବେଳେ ବଡମାନେ ମଧ୍ୟ ଛୋଟମାନଙ୍କୁ ସ୍ନେହାଶୀର୍ବାଦ ପ୍ରଦାନ କରିଥାନ୍ତି । ବିଭିନ୍ନ ପ୍ରକାର ଯାନିଯାତ୍ରା, ଉତ୍ସବ ଓ ମହୋତ୍ସବମାନ ନିୟମିତ ଭାବରେ ଅନୁଷ୍ଠିତ ହୋଇ ଏଠାକାର ସାଂସ୍କୃତିକ ଧାରାକୁ ଅକ୍ଷୁଣ୍ଣ ଓ ଅମ୍ଳାନ କରି ରଖିପାରିଛନ୍ତି । ଏଠାରେ ବସବାସ କରୁଥିବା ପ୍ରାୟ ସବୁଧର୍ମ ଓ ସମ୍ପ୍ରଦାୟର ଲୋକମାନେ ଉନ୍ନତ, ଶିକ୍ଷିତ ଓ ସଂସ୍କୃତିସମ୍ପନ୍ନ ହେବାରେ ଲାଗିଛନ୍ତି । ସରକାରଙ୍କ ବିଭିନ୍ନ ଯୋଜନାର ସୁଫଳ ଭୋଗ କରିବାର ସୁଯୋଗକୁ ହାତଛଡା କରୁନାହାନ୍ତି । ଲୋକମାନଙ୍କର ଜୀବନଶୈଳୀ ତଥା ବଞ୍ଚିବାର ଢଙ୍ଗ ମଧ୍ୟ ପରିମାର୍ଜିତ ହେବାରେ ଲାଗିଛି । ଫଳରେ ବହୁ ପ୍ରାନ୍ତିୟ ଭାଷାର ବିଲୋପ ସାଧନ ହେବାରେ ଲାଗିଛି । ଲୋକ ସାହିତ୍ୟ କ୍ରମେ କ୍ରମେ ଧ୍ୱଂସାଭିମୁଖୀ ହେବାକୁ ଲାଗିଛି । ଲୋକ ନାଟକ, ଲୋକଗୀତ, ଲୋକବାଦ୍ୟ, ଲୋକଧାରା, ଲୋକନୃତ୍ୟ ଆଦିର ଚରମ ବିପର୍ଯ୍ୟୟ ହେବାର କୁରୂପ ଦୃଶ୍ୟ ନିଶ୍ଚୟ ଗଭୀର ବ୍ୟଥା ଓ ବେଦନା ସଂସ୍କୃତି ପ୍ରାଣ ବ୍ୟକ୍ତିର ମନରେ ସୃଷ୍ଟିକରେ । ଜୀବନ ଧାରଣର ମାନ ଉନ୍ନତ ଓ ରୁଚିଶୀଳ ହେଉଥିବା ସମୟରେ ଏମାନେ ସଂସ୍କୃତି, ପରମ୍ପରା ଓ ଐତିହ୍ୟ ପ୍ରତି ସେତେଟା ସଚେତନ ମନୋଭାବ ପୋଷଣ ନକରି ଉଦାସୀନ ହୋଇ ରହୁଥିବାର ଦେଖାଯାଉଛି । ବିଶେଷ ଭାବରେ ଶିକ୍ଷା ନାମରେ ଅଶିକ୍ଷା, ଧର୍ମ ନାମରେ ଅଧର୍ମ ତଥା ସାହିତ୍ୟ ନାମରେ ଅସାହିତ୍ୟର ପ୍ରଚାର ପାଇଁ କିଛି ଲୋକ କାର୍ଯ୍ୟ କରିଥାନ୍ତି । ଯାହାଫଳରେ ସାମାଜିକ ଜୀବନଯାତ୍ରା ଦୁର୍ବିସହ ମନେ ହୋଇଥାଏ । ଏହିପରି ଅସାମାଜିକ ତତ୍ତ୍ୱମାନଙ୍କୁ ଦୃଢ ହସ୍ତରେ ଦମନ କରାଯିବା ଉଚିତ । ଏ ଦେଶରେ ଜନସାଧାରଣ ତଥା ସରକାରଙ୍କ ମିଳିତ ଉଦ୍ୟମର ଆବଶ୍ୟକତା ସର୍ବାଧିକ ରହିଛି । ସୁନ୍ଦରଗଡ ଜିଲ୍ଲାରେ ବହୁ ଖଣି, ଖାଦାନ୍ ଆଦି ରହିଥିବାରୁ ଏଠାରେ ଏକ ବୃହତ ଶ୍ରମିକ ଗୋଷ୍ଠୀର ମଧ୍ୟ ସୃଷ୍ଟି ହୋଇଛନ୍ତି । ରାଉରକେଲା, ବଣାଇ, ବୀରମିତ୍ରପୁର, ହେମଗିରି ଆଦି ଅଞ୍ଚଳମାନଙ୍କରେ ବହୁ ଛୋଟବଡ କାରଖାନା ଓ ପ୍ରାକୃତିକ ସମ୍ପଦ ପରିପୂର୍ଣ୍ଣ ହୋଇରହିଛି । ତେଣୁ ଏହି ଅଞ୍ଚଳମାନଙ୍କରେ ଅର୍ଥନୈତିକ ଅଭିବୃଦ୍ଧିର ହାର ଅଧିକ ହୋଇଥିବାର ଜଣାଯାଏ । ସୁନ୍ଦରଗଡ ଜିଲ୍ଲା ପ୍ରକୃତରେ ପ୍ରକୃତିର ଗନ୍ତାଘର । ଏଠାକାର ପାହାଡ ପର୍ବତ, ନଦନଦୀ, ଅରଣ୍ୟ, ଜଙ୍ଗଲ, କେଦାର, କାନ୍ତାର ଆଦିର ମନୋରମ ଦୃଶ୍ୟ ତଥା ଅରଣ୍ୟର ସୁଷମା ଓ ମାଧୁର୍ଯ୍ୟ ଯେକୌଣସି ଦର୍ଶକର ମନକୁ ହରଣ କରିବା ପାଇଁ ଯଥେଷ୍ଟ । ଏଠାରେ ଥିବା ଖଣ୍ଡାଧାର (ବଣାଇ), ବେଦବ୍ୟାସ (ରାଉରକେଲା), ମାନ୍ଦ୍ରିଆ ଡ୍ୟାମ (ରାଉରକେଲା) ଆଦି ବହୁ ଦର୍ଶନୀୟ ସ୍ଥାନ ବିଦ୍ୟମାନ ରହିଛି । ଏଣୁ ବର୍ଷର ଅଧିକାଂଶ ସମୟରେ ଏଠାରେ ବହୁ ଜନସମାଗମ ହୁଏ । ଓଡ଼ିଶା ତଥା



ଭାରତବର୍ଷର ଭିନ୍ନ ଭିନ୍ନ ପ୍ରାନ୍ତରରୁ ବହୁ ଲୋକ ଏଠାକୁ ଆସିଥାନ୍ତି ବିଭିନ୍ନ କାର୍ଯ୍ୟରେ । ରାଉରକେଲାଠାରେ ଏକ ବୃହତ ଇସ୍ପାତ କାରଖାନା ପ୍ରତିଷ୍ଠା ହୋଇଥିବାରୁ ଏଠାରେ ମଧ୍ୟ ବହୁ ଶ୍ରମଜୀବୀ ମଣିଷ ବସବାସ କରନ୍ତି । ରାଉରକେଲା ଏକ ସମୃଦ୍ଧ ସହର । ଭାରତବର୍ଷର ମାନଚିତ୍ରରେ ମଧ୍ୟ ରାଉରକେଲା ଏକ ଭିନ୍ନ ତଥା ପୃଥକ ପରିଚୟ ସୃଷ୍ଟି କରିପାରିଛି । ଏହା ଏକ ବିଖ୍ୟାତ ଶିଳ୍ପନଗରୀ ଭାବରେ ପରିଚିତ ହୋଇପାରିଛି । ଏଠାରେ ଏକ ଆକାଶବାଣୀ କେନ୍ଦ୍ର ମଧ୍ୟ ପ୍ରତିଷ୍ଠିତ ହୋଇଛି । ତେଣୁ ସୁନ୍ଦରଗଡ ଜିଲ୍ଲାର ଶିକ୍ଷା, ସଂସ୍କୃତି, ଧର୍ମ, ସାହିତ୍ୟର ଯଥାଯଥ ଉନ୍ନତି ସାଧନରେ ଏହା ଅନେକ ପରିମାଣରେ ସାହାଯ୍ୟ କରୁଅଛି । ରାଉରକେଲା ପରି ଜଣାଶୁଣା ତଥା ପ୍ରସିଦ୍ଧ ସହରରେ ବିମାନସେବା ଓ ରେଳସେବାର ଉତ୍ତମ ବ୍ୟବସ୍ଥା ହୋଇଛି । ଏଠାରେ ଶିକ୍ଷା, ସାହିତ୍ୟ ଓ ସଂସ୍କୃତିର ଦ୍ରୁତ ଅଗ୍ରଗତି ପାଇଁ ନିରନ୍ତର ପ୍ରୟାସ କରାଯାଇଛି । ଏଠାରେ ଏକ ସୁନ୍ଦର ସାହିତ୍ୟିକ ବାତାବରଣ ମଧ୍ୟ ସୃଷ୍ଟି ହୋଇପାରିଛି । ଏଠାରେ ବର୍ଷସାରା ବିଭିନ୍ନ ସାଂସ୍କୃତିକ, ସାମାଜିକ, ରାଜନୈତିକ ଓ ଅର୍ଥନୈତିକ କାର୍ଯ୍ୟକ୍ରମମାନ ଅନୁଷ୍ଠିତ ହେଉଥିବାର ଦେଖାଯାଏ ।

ଧର୍ମ, ସଂସ୍କୃତି ପରି ଏଠାରେ ସାହିତ୍ୟ ମଧ୍ୟ ବଡ ଗୁରୁତ୍ୱପୂର୍ଣ୍ଣ ତଥା ମହତ୍ତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିବାର ଦୃଷ୍ଟାନ୍ତ ବିରଳ ନୁହେଁ । ଏଠାରେ ଏକଦା ବ୍ୟାସଦେବ ବେଦବ୍ୟାସଠାରେ ମହାଭାରତ ପରି ବିରାଟକାୟ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ । ଏଣୁ ଯଥାର୍ଥରେ ଏକ ପୁଣ୍ୟପୀଠ ସ୍ଥଳୀଭାବରେ ଓଡ଼ିଶାର ପର୍ଯ୍ୟଟନ ମାନଚିତ୍ରରେ ମଧ୍ୟ ସୁପରିଚିତ । ତେଣୁ ମହାଭାରତ ଗ୍ରନ୍ଥର ମହତ୍ତ୍ୱ ବର୍ଣ୍ଣନା କରିବାକୁ ଯାଇ କୁହାଯାଏ, 'ଯାହା ନାହିଁ ଭାରତେ, ତାହା ନାହିଁ ଜଗତେ' । ସୁତରାଂ, ଭାରତୀୟ ସାହିତ୍ୟକୁ ମଧ୍ୟ ସୁନ୍ଦରଗଡ ଜିଲ୍ଲାର ଅବଦାନ କିଛି କମ୍ ନୁହେଁ । ମାନବବାଦୀ କାବ୍ୟଶିଳ୍ପୀ ବିନୋଦ ଚନ୍ଦ୍ର ନାୟକ ଏହି ଜିଲ୍ଲାର ତେଲିପାଲି ଗ୍ରାମରେ ୧୯୧୯ରେ ଜନ୍ମଗ୍ରହଣ କରିଥିଲେ । ସେ ତାଙ୍କର 'ସରୀସୃପ' କବିତା ଗ୍ରନ୍ଥ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ତାଙ୍କର କବିତାରେ ରହିଛି ଆର୍ତ୍ତମାନବାତ୍ମାର ଅନାହତ ସ୍ୱର ଓ ସ୍ୱାକ୍ଷର, ଯାହା ପ୍ରତ୍ୟେକ ସଂବେଦନଶୀଳ ପାଠକପାଠିକାମାନଙ୍କ ହୃଦୟ ତନ୍ତ୍ରୀରେ ଝଙ୍କାର ସୃଷ୍ଟି କରିଥାଏ । ତାଙ୍କର 'ଗ୍ରାମପଥ' କବିତାଟି ଓଡ଼ିଶା ସାହିତ୍ୟ ଜଗତରେ ଏକ ପଲ୍ଲୀ କବିତାଭାବରେ ବହୁ ଚର୍ଚ୍ଚିତ ହୋଇପାରିଛି । ପଲ୍ଲୀ ଜୀବନ ପ୍ରତି କବିଙ୍କର ପ୍ରବଳ ଆକର୍ଷଣର ଏକ ନମୁନା ଭାବରେ ମଧ୍ୟ ଏହାକୁ ଗ୍ରହଣ କରାଯାଇପାରେ । ତାଙ୍କର କାବ୍ୟ କବିତାରେ ଗଭୀର ଜୀବନବୋଧ ତଥା ପ୍ରେମବୋଧର ମାର୍ମିକ ତଥା ହୃଦୟଗ୍ରାହୀ ଦୃଶ୍ୟ ଦୃଷ୍ଟି ପଥାରୂଢ ହୋଇଥାଏ । ସମାଲୋଚକ ଡକ୍ଟର ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ ତାଙ୍କର 'ଓଡ଼ିଶା ସାହିତ୍ୟର ସଂକ୍ଷିପ୍ତ ପରିଚୟ' ଗ୍ରନ୍ଥରେ କବି ବିନୋଦ ଚନ୍ଦ୍ର ନାୟକଙ୍କର କବିତ୍ୱ ସମ୍ପର୍କରେ ଯଥାଯଥ ଆକଳନ କରିବାକୁ ଯାଇ ଲେଖିଛନ୍ତି, 'କବି ନିଜର ଉପମା, ଚିତ୍ରକଳ୍ପ ଓ ବିଷୟବସ୍ତୁ ପାଇଁ କେବଳ ନିଜର ସୀମିତ ପରିବେଶକୁ ଅପେକ୍ଷା ନକରି ଦେଶ-ବିଦେଶର ନଈ, ନାଳ, ପାହାଡ, ପର୍ବତ, ବଣ-ଜଙ୍ଗଲ, ଶସ୍ୟକ୍ଷେତ୍ରରେ ଘୂରି ବୁଲି କବିତା ରଚନା ଲାଗି ପ୍ରେରଣା ସଞ୍ଚୟ କରିଥାନ୍ତି । ଏହି ଦୃଷ୍ଟିରୁ କବି ବିନୋଦ ଚନ୍ଦ୍ର ନାୟକ ଜଣେ ସଫଳ ରୋମାଣ୍ଟିକ ଓ ବାସ୍ତବଧର୍ମୀ ଶିଳ୍ପୀରୂପେ ସମ୍ମାନିତ । ରୋମାଣ୍ଟିକ କାବ୍ୟ ଚେତନାର କେତେକ ନୂତନ ଦିଗନ୍ତ ତାଙ୍କ କବିତାରେ ପ୍ରତିଫଳିତ ହୋଇଥିବାର ଦେଖାଯାଏ । ସୁଦୂରର ଅଭିନବ ଓ ଅପରିଚିତ କଥାବସ୍ତୁ ବଳରେ ତାଙ୍କ କବିତା ସବୁ ନୂତନ ରୁଚିର ଆସ୍ୱାଦ ବହନ କରିଥାଏ । ଅଦ୍ୟପି ପ୍ରକାଶିତ ତାଙ୍କର କବିତା ସଂକଳନଗୁଡିକ ମଧ୍ୟରେ ହୈମନ୍ତୀ', 'ଚନ୍ଦ୍ର ଓ ତାରା', 'ନୀଳଚନ୍ଦ୍ରର ଉପତ୍ୟକା', 'ନନ୍ଦାଦେବୀ' ଓ 'ସରୀସୃପ' ପାଠକ ଗୋଷ୍ଠୀ ସମାଦର ଲାଭ କରିଅଛି । ଶେଷୋକ୍ତ କବିତା ସଂକଳନ ଲାଗି ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି । କବି ରଜନୀ କାନ୍ତ ଦାସ, କ୍ଷେତ୍ରବର ନାଏକ, ନାଟ୍ୟକାର ଚୁଡାମଣି ନାଏକ ପ୍ରମୁଖ ସାହିତ୍ୟ ସାଧକଗଣ ଏକଦା ସୁନ୍ଦରଗଡ ଜିଲ୍ଲାର ପ୍ରତିନିଧିତ୍ୱ କରିଆସିଛନ୍ତି ଓଡ଼ିଶା ସାହିତ୍ୟ ଜଗତରେ । ସୁନ୍ଦରଗଡ ଜିଲ୍ଲାର ପ୍ରମୁଖ ନାଟ୍ୟକାର ଭାବରେ ଚୁଡାମଣି ନାଏକ କୀର୍ତ୍ତିବୀର୍ଯ୍ୟ ନାଟକ ରଚନା କରି ଏକଦା ଓଡ଼ିଶା ନାଟ୍ୟଜଗତରେ ଚହଳ ସୃଷ୍ଟି କରିବାରେ ସକ୍ଷମ ହୋଇପାରିଥିଲେ । ସେ ଥିଲେ ଜଣେ ସାହିତ୍ୟ ପ୍ରତି ଅନୁରକ୍ତ ମଣିଷ । ଓଡ଼ିଶାର ରଙ୍ଗମଞ୍ଚ ଓ ନାଟକ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆନୟନ କ୍ଷେତ୍ରରେ ତାଙ୍କର ପ୍ରମୁଖ ଭୂମିକାକୁ ଅସ୍ୱୀକାର କରାଯାଇ ନପାରେ । ସାମ୍ପ୍ରତିକ ସମୟରେ ମଧ୍ୟ ଓଡ଼ିଶା ସାହିତ୍ୟକୁ ବହୁ ଭାବରେ ସମୃଦ୍ଧ, ଋଦ୍ଧିମନ୍ତ ତଥା ଐଶ୍ୱର୍ଯ୍ୟ ବିମଣ୍ଡିତ କରିବାରେ ଲାଗିଛନ୍ତି । ସେମାନଙ୍କ ମଧ୍ୟରେ ରାଜୀବପାଣି, ଅଳକାଚାନ୍ଦ, ଶୈଳବାଳା ପୂଜାରୀ, ଅଧ୍ୟାପକ ଭଗବାନ ପଟେଲ, ତପୋଧନ ଦାଶ, ଭୂପେନ୍ ମହାପାତ୍ର ବହୁ ସାହିତ୍ୟିକ ସାରସ୍ୱତ ସାଧନାରେ ମଗ୍ନ ଅଛନ୍ତି । ପତ୍ରପତ୍ରିକା ପ୍ରକାଶନ କ୍ଷେତ୍ରରେ ମଧ୍ୟ ସୁନ୍ଦରଗଡ ଜିଲ୍ଲାର ଗୌରବମୟ ଇତିହାସ ବିଦ୍ୟମାନ ଥିବାର ଜଣାଯାଏ ।

ବର୍ତ୍ତମାନ ଓଡ଼ିଶାରେ ୩୦ଟି ଜିଲ୍ଲା ମଧ୍ୟରୁ ସୁନ୍ଦରଗଡ ଅନ୍ୟତମ ପ୍ରମୁଖ ଜିଲ୍ଲାର ମାନ୍ୟତା ପାଇପାରିଛି ଏବଂ ଏହାର ଏକ ପୃଥକ ପରିଚୟ ସୃଷ୍ଟି ହୋଇପାରିଛି । ସୌନ୍ଦର୍ଯ୍ୟର ଗନ୍ତାଘର ହେଉଛି ସୁନ୍ଦରଗଡ ଜିଲ୍ଲା । ଏହାର ପ୍ରତ୍ୟେକ କୋଣ ଅନୁକୋଣରେ ତା'ର ଗରିମା ଓ ମହିମା ସୁବିଦିତ ହୋଇରହିଛି ଓ ତା'ର ଐତିହାସିକ ପୃଷ୍ଠଭୂମିରେ ବିର୍ସାମୁଣ୍ଡାଙ୍କ ପରି ସ୍ୱାଧୀନତା ସଂଗ୍ରାମୀ ରହିଛନ୍ତି । ତାଙ୍କ ପରି ବହୁ ବୀର ପୁରୁଷକୁ ଜନ୍ମ ଦେବାରେ ଏ ମାଟି ସକ୍ଷମ ହୋଇପାରିଛି ବୋଲି ଗର୍ବର ସହିତ କୁହାଯାଇପାରେ । ସୁନ୍ଦରଗଡ ଜିଲ୍ଲା ଆମ ରାଜ୍ୟର ପ୍ରମୁଖ ଜିଲ୍ଲା ଭାବରେ ଏପର୍ଯ୍ୟନ୍ତ ସର୍ବତ୍ର ସୁବିଦିତ ହୋଇ ଆସୁଅଛି ନିଶ୍ଚୟ ।

ଗ୍ରା/ପୋ- ଦଲଦଲି
ଭାୟା-କୁଣ୍ଡୁକେଲା
ଜି-ସୁନ୍ଦରଗଡ-୭୭୦୦୧୯



# କେନ୍ଦୁଝର ଜିଲ୍ଲାର ପ୍ରମୁଖ ପର୍ଯ୍ୟଟନ ସ୍ଥଳୀ

ଦାଶରଥି ପାତ୍ର

ଓଡ଼ିଶାରେ ୩୦ଟି ଜିଲ୍ଲା ରହିଛି ଏବଂ ପ୍ରତି ୧୦ଟି ଜିଲ୍ଲାକୁ ନେଇ ଗୋଟିଏ ରାଜସ୍ୱ ମଣ୍ଡଳ ରହିଛି । ସେହି ରାଜସ୍ୱ ମଣ୍ଡଳଗୁଡିକ ହେଲା, ଉତ୍ତରାଞ୍ଚଳ ରାଜସ୍ୱ ମଣ୍ଡଳ ମହକୁମା, ସମ୍ବଲପୁର, କେନ୍ଦ୍ରାଞ୍ଚଳ ରାଜସ୍ୱ ମଣ୍ଡଳ ମହକୁମା, କଟକ ଏବଂ ଦକ୍ଷିଣାଞ୍ଚଳ ରାଜସ୍ୱ ମଣ୍ଡଳ ମହକୁମା, ବ୍ରହ୍ମପୁର । ଆଜିର ଆଲୋଚ୍ୟ କେନ୍ଦୁଝର ଜିଲ୍ଲା ରହିଛି ଉତ୍ତରାଞ୍ଚଳ ରାଜସ୍ୱ ମଣ୍ଡଳରେ । ଏହି ଜିଲ୍ଲାରେ ରହିଛି ବହୁ ଦର୍ଶନୀୟ ସ୍ଥାନ ଯାହାକି ଆଗନ୍ତୁକ ପର୍ଯ୍ୟଟକମାନଙ୍କୁ ବିଶେଷ ଆକୃଷ୍ଟ କରିଥାଏ ।

ଆମ ଓଡ଼ିଶାର ଘୋଷିତ ହୋଇଥିବା ୩୨୧ଟି ପର୍ଯ୍ୟଟନ ସ୍ଥଳୀ ମଧ୍ୟରୁ କେନ୍ଦୁଝର ଜିଲ୍ଲାର ୧୬ଟି ପର୍ଯ୍ୟଟନ ସ୍ଥଳୀକୁ ପର୍ଯ୍ୟଟନ ବିଭାଗ ଚିହ୍ନଟ କରିଛନ୍ତି । ସେଗୁଡିକ ହେଲା– ବଡ ଘାଗରା, ଦେଓଗାଁ (କୋଶଳେଶ୍ୱର), ଘଟଗାଁ, ଗୋନାସିକା, ଗୁଣ୍ଡିଚା ଘାଇ, ହଦଗଡ, ହାଣ୍ଡିଭଙ୍ଗା, କାଞ୍ଜିପାଣି, କେନ୍ଦୁଝର, ଖଣ୍ଡାଧାର, ମୁର୍ଗା ମହାଦେବ, ପୋଡାସିଙ୍ଗଡି (ଗଡଚଣ୍ଡୀ ଚକ୍ରତୀର୍ଥ) ରାଜନଗର, ସାନ ଘାଗରା, ସରାଇ(କେଶରୀକୁଣ୍ଡ) ଓ ସୀତାବିଞ୍ଜି । ପ୍ରାଚୀନ ଗଡଜାତ ରାଜ୍ୟମାନଙ୍କ ମଧ୍ୟରେ କେନ୍ଦୁଝର ରାଜ୍ୟ ଥିଲା ଅନ୍ୟତମ । ଏହି ରାଜ୍ୟର ନାମକରଣ ନେଇ ବିଭିନ୍ନ ତଥ୍ୟ ସବୁ ରହିଛି । ପଣ୍ଡିତ ବାନାମ୍ବର ଆଚାର୍ଯ୍ୟଙ୍କ ମତରେ କେନ୍ଦୁଝରର ନାମ ବୌଦ୍ଧ ଯୁଗରେ ଥିଲା ''କେନ୍ଦୁଜହର'' । କାଳକ୍ରମେ ଏହା ଅପଭ୍ରଂଶ ହୋଇ କେନ୍ଦୁଝର ହୋଇଛି । ଦ୍ୱିତୀୟ ମତ ହେଲା, କେନ୍ଦୁଝର ରାଜ୍ୟ ଗଠନ ପୂର୍ବରୁ ଭୂୟାଁମାନେ ଦେଖିଥିଲେ ଗୋଟିଏ କେନ୍ଦୁଗଛ ମୂଳରୁ ଝରଣାଟିଏ ବୋହି ଯାଉଛି, ସେହିଠାରେ ଗୋଟିଏ ଶିଆଳ, ଗୋଟିଏ ଶକ୍ତିଶାଳୀ ହେଟାବାଘକୁ ମାଡିବସିଛି । ଭୂୟାଁମାନେ ଏ ଘଟଣା ଦେଖି ଆଶ୍ଚର୍ଯ୍ୟ ହୋଇ ଏ ମାଟିର କିଛି କରାମତି ଅଛି ଏବଂ ଏଠାରେ ଗଡଟି ନିର୍ମାଣ ହେଲେ ଦୁର୍ବଳ ମଧ୍ୟ ସବଳକୁ ଜିତି ପାରିବ କହି ଗଡ ନିର୍ମାଣ କଲେ । ତେଣୁ ସ୍ଥାନର ଅବସ୍ଥିତି ଅନୁସାରେ ରାଜ୍ୟର ନାମ କରଣ ହେଲା 'କେନ୍ଦୁଝର' ।

ତୃତୀୟ ମତ ଗବେଷକ ଡକ୍ଟର ଅର୍ଜ୍ଜୁନ ଯୋଷୀଙ୍କ ମତରେ 'କ'ର ଅର୍ଥ ମସ୍ତକ ସହିତ ଇନ୍ଦୁ ମିଶି କେନ୍ଦୁ ହୋଇଛି ଅର୍ଥାତ ଯାହାର ମସ୍ତକରେ ଇନ୍ଦୁ ଶୋଭାପାଏ, ଯିଏକି ଶିବ । ତାଙ୍କ ନିକଟରେ 'ଝର' ପ୍ରବାହିତ ହେଉଥିବାରୁ ଏ ସ୍ଥାନର ନାମ କେନ୍ଦୁଝର ହୋଇଛି । ପୁଣ୍ୟତୋୟା ବୈତରଣୀର ଉତ୍ପତ୍ତି ସ୍ଥଳ ହେଉଛି– କେନ୍ଦୁଝର । କେନ୍ଦୁଝରର ମୁଖ୍ୟ ଦେବତାଭାବେ ମହାଦେବ ହିଁ ପୂଜା ପାଆନ୍ତି । ବୈତରଣୀ କୂଳେ କୂଳେ ବ୍ରହ୍ମେଶ୍ୱରଙ୍କଠାରୁ ଆରମ୍ଭ କରି ଆଖଣ୍ଡଳେଶ୍ୱରଙ୍କ ପର୍ଯ୍ୟନ୍ତ ଅସଂଖ୍ୟ ଶିବଲିଙ୍ଗ ବିରାଜିତ । ତେଣୁ ଏହି ନାମକରଣ ଯଥାର୍ଥ ବୋଲି ମନେ ହୁଏ । ଭାରତ ସ୍ୱାଧୀନତା ଲାଭ କଲାପରେ ୧୯୪୮ ଜାନୁଆରୀ ୧ତାରିଖ ଦିନ ଯେଉଁ ୨୫ଟି ଦେଶୀୟ ରାଜ୍ୟ ଓଡ଼ିଶା ପ୍ରଦେଶରେ ମିଶିଥିଲେ, ସେମାନଙ୍କ ମଧ୍ୟରେ କେନ୍ଦୁଝର ରାଜ୍ୟ ଥିଲା ଅନ୍ୟତମ ଏବଂ ତତ୍କାଳୀନ କେନ୍ଦୁଝର ରାଜା ବଳଭଦ୍ର ନାରାୟଣ ଭଞ୍ଜଦେବ, ପ୍ରଜାମାନଙ୍କ ହିତ ଦୃଷ୍ଟିରୁ ନିଜ ରାଜ୍ୟକୁ ଓଡ଼ିଶା ରାଜ୍ୟର ତ୍ରୟୋଦଶ ଜିଲ୍ଲା ଭାବରେ ଲୀନ କରିଥିଲେ । ଯାହା ଫଳରେ ଓଡ଼ିଶାର ମାନଚିତ୍ରରେ କେନ୍ଦୁଝର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିପାରିଛି ।

ପର୍ଯ୍ୟଟନ ଦୃଷ୍ଟିରୁ ଏହି ଜିଲ୍ଲାର ମୁଖ୍ୟ ଦର୍ଶନୀୟ ସ୍ଥାନଗୁଡିକ ହେଲା– ଗୋନାସିକା (ଗୁପ୍ତଗଙ୍ଗା), ଖଣ୍ଡାଧାର, ବଡ ଘାଗରା, ସାନ ଘାଗରା, ସୀତାବିଞ୍ଜି, ହାଣ୍ଡିଭଙ୍ଗା, ଚକ୍ରତୀର୍ଥ ଏବଂ ଘଟଗାଁ । ସେ ସମ୍ବନ୍ଧରେ ମୁଁ ସଂକ୍ଷିପ୍ତ ବିବରଣୀ ପାଠକମାନଙ୍କ ଅବଗତ ନିମନ୍ତେ ଜଣାଉଅଛି । ପ୍ରାଚୀନ କେନ୍ଦୁଝର ରାଜ୍ୟର ରାଷ୍ଟ୍ର ଦେବତା

ଭାବେ ଶ୍ରୀଶ୍ରୀ ବଳଦେବ ଜୀଉ ପୂଜା ପାଇ ଆସୁଛନ୍ତି । କେନ୍ଦୁଝର ଗଡରେ ଶ୍ରୀଶ୍ରୀ ବଳଦେବ ଜୀଉ, ସାନଭାଇ ଜଗନ୍ନାଥ ଓ ଭଉଣୀ ସୁଭଦ୍ରା ପୂଜା ପାଉଛନ୍ତି । ଏହି ମନ୍ଦିରଟି ୧୬୭୧ ମସିହାରେ ରାଜା ଲକ୍ଷ୍ମୀନାରାୟଣ ଭଞ୍ଜଙ୍କ ଦ୍ୱାରା ନିର୍ମାଣ କରାଯାଇଥିଲା ।

ଗୋନାସିକା: ପୁରାଣ ପ୍ରସିଦ୍ଧ ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ ହେଉଛି ଗୋନାସିକା । ଏହା କେନ୍ଦୁଝର ସହରଠାରୁ ୪୫କି.ମି. ଦୂରରେ ଜାତୀୟ ରାଜପଥ-୬ନମ୍ବର ଠାରୁ ୧୨କି.ମି. ଦୂରରେ ଅବସ୍ଥିତ । ବୈତରଣୀର ଉତ୍ପତ୍ତି ସ୍ଥଳରେ ବ୍ରହ୍ମେଶ୍ୱରଙ୍କ ମନ୍ଦିର ରହିଛି । ବ୍ରହ୍ମକୁଣ୍ଡଠାରୁ ୫କି.ମି. ଦୂରରେ ଗୁପ୍ତଗଙ୍ଗା ଗିରିର ୩୦୦୦ ଫୁଟ ଉଚ୍ଚରେ ଝରଣା ଆକାରରେ ନିର୍ଗତ ହୋଇ ପଥର କୁଣ୍ଡରେ ସଞ୍ଚିତ ହୁଏ । କିଛି ବାଟ ପ୍ରବାହିତ ହୋଇ ଗୁପ୍ତଗଙ୍ଗା ଗିରିର ଶୀର୍ଷ ଦେଶରେ ଆଦ୍ୟ ବୈତରଣୀର ଜଳଧାର ପ୍ରବାହିତ ହେଉଛି । ମାତ୍ର ସାଧାରଣ ଦର୍ଶକମାନେ ବୈତରଣୀ ନଦୀ ତ୍ରିବେଣୀ କୁଣ୍ଡଠାରୁ ପ୍ରବାହିତ ହେଉଛି ବୋଲି ମନେ କରିଥାନ୍ତି । ଗୋନାସିକା ନିକଟରେ ପ୍ରାଚୀନ ଆଦିବାସୀ ଯୁଆଙ୍ଗମାନେ ବସବାସ କରନ୍ତି । ଏଣୁ ଗୋନାସିକାର ପ୍ରାକୃତିକ ଶୋଭା ଯେଭଳି ମନଲୋଭା ସେହିପରି ଉପଭୋଗ୍ୟ ବୋଲି ମନେ ହୁଏ ।

ଖଣ୍ଡାଧାର: ଏହି ଖଣ୍ଡାଧାର ଏକ ଜଳପ୍ରପାତ ଏବଂ କେନ୍ଦୁଝର ସହରଠାରୁ ୬୦କି.ମି. ଦୂରରେ ଉତ୍ତର ପଶ୍ଚିମ ଅଞ୍ଚଳରେ ଅବସ୍ଥିତ । କେନ୍ଦୁଝର ଓ ବଣେଇ ସୀମାରେ ଏହି ଅପରୂପା ଖଣ୍ଡାଧାର ଜଳପ୍ରପାତର ନିମ୍ନ ଦେଶରେ ଶିବ ମନ୍ଦିର, ଆଶ୍ରମ ଓ ଅଘୋରୀ ଅଗ୍ନିକୁଣ୍ଡ ଅବସ୍ଥିତ । ପର୍ବତ ଶିଖରର ୧୫୦ଫୁଟ ଉପରୁ ହଠାତ୍ ବୃହତ ଜଳରାଶି ତଳେ କଚାଡି ହୋଇ ପଡେ । ପର୍ବତ ଶିଖରର ସୁନ୍ଦର ବୃକ୍ଷରାଜି ସହ ଏତେ ଉଚ୍ଚରୁ ଖସି ପଡୁଥିବା ଜଳରାଶି ଛୋଟ ଛୋଟ ଜଳ କଣାରେ ପରିଣତ ହୋଇ ଏକ ଅଭିନବ ରୂପରେ ପରିଣତ ହୋଇ ଆଗନ୍ତୁକ ଦର୍ଶକଙ୍କୁ ଅଫୁରନ୍ତ ଆନନ୍ଦ ଦେଇଥାଏ ।

ବଡ ଘାଗରା: ଜାତୀୟ ରାଜପଥ ୬ନମ୍ବର ପାର୍ଶ୍ୱରେ କେନ୍ଦୁଝରଠାରୁ ୧୨କିମି. ଦୂରରେ ବଡ ଘାଗରା ଅବସ୍ଥିତ । ପାହାଡ ଉପରେ ପ୍ରବାହିତ ମାଛକାନ୍ଦଣା ନଦୀ ହଠାତ୍ ପାହାଡ ତଳକୁ ଡେଇଁପଡି ଏକ ଜଳପ୍ରପାତ ଦୃଷ୍ଟି କରିଛି । ଘୋ-ଘୋ ଗର୍ଜନ କରି ଜଳ ପଡୁଥିବାରୁ ସ୍ଥାନୀୟ ଲୋକେ ସେ ସ୍ଥାନର ନାମ ଘାଗରା ରଖିଥିବା ବିଶ୍ୱାସ କରାଯାଏ । ସମ୍ପ୍ରତି ଜଳସେଚନ ବିଭାଗ ତରଫରୁ ଏହି ଜଳ ରାଶିକୁ ଅଟକାଇବା ପାଇଁ ଏକ ସରସ ସୁନ୍ଦର ମାଟି ବନ୍ଧ ନିର୍ମାଣ କରିଛନ୍ତି । ସେଠାକାର ଜଳଭଣ୍ଡାର, ବିଦ୍ୟୁତ କେନ୍ଦ୍ର ଏବଂ ପ୍ରାକୃତିକ ଦୃଶ୍ୟାବଳୀ ଆଗନ୍ତୁକ ପର୍ଯ୍ୟଟକମାନଙ୍କୁ ବିଶେଷ ଆନନ୍ଦ ପ୍ରଦାନ କରିଥାଏ ।

ସାନ ଘାଗରା: କେନ୍ଦୁଝର ସହରଠାରୁ ମାତ୍ର ୧୦କି.ମି. ଦୂର ୬ ନମ୍ବର ଜାତୀୟ ରାଜପଥ ପାର୍ଶ୍ୱରେ ଗୋବରା ପାହାଡ ଉପରେ କେନ୍ଦୁଝରର ଅନ୍ୟତମ ଜଳପ୍ରପାତଟି ଅବସ୍ଥିତ । ମାଛକାନ୍ଦଣା ନଦୀର କଙ୍କରିତ ବକ୍ଷ ବିଦାରି ଆସୁଥିବା ଜଳ ରାଶି ହଠାତ୍ ୯୦ଫୁଟ ଉଚ୍ଚରୁ ତଳକୁ ପଡି 'ସାନ ଘାଗରା' ଜଳ ପ୍ରପାତ ସୃଷ୍ଟି କରିଛି । ସଂପ୍ରତି ସରକାରଙ୍କ ତରଫରୁ ଦର୍ଶକଙ୍କୁ ଆକୃଷ୍ଟ କରିବା ପାଇଁ ଏକ 'ସୁରମ୍ୟ ଉଦ୍ୟାନ' ନିର୍ମାଣ କରାଯାଇ ଆଗନ୍ତୁକ ପର୍ଯ୍ୟଟକଙ୍କୁ ବିଶେଷ ଆକର୍ଷିତ କରୁଛି ।

ସୀତାବିଞ୍ଜି: କେନ୍ଦୁଝର-କଟକ ରାସ୍ତାର ଢେଙ୍କିକୋଟ ଠାରୁ ୫କିମି ପୂର୍ବରୁ ଡାହାଣ ପଟ ରାସ୍ତାଟି ସିଧା ଇତିହାସ ପ୍ରସିଦ୍ଧ 'ସୀତାବିଞ୍ଜି'କୁ ଯାଇଛି । ଏହି ପର୍ଯ୍ୟଟନ ସ୍ଥଳୀଟି କେନ୍ଦୁଝର ସହରଠାରୁ ରହିଛି ୩୦କି.ମି. ଦୂରରେ । ଗବେଷକମାନେ ଏହାକୁ ଫ୍ରେସ୍‌କୋ ପେଣ୍ଟିଂ ବା ଟେମ୍‌ପୋରା ପେଣ୍ଟିଂଭାବେ ବର୍ଣ୍ଣନା କରନ୍ତି । ଏଠାକାର ସବୁଠାରୁ ଆକର୍ଷଣୀୟ ବସ୍ତୁ ହେଲା- ରାବଣ ଛାୟା । ଖଣ୍ଡିଏ ଭଗ୍ନ ପର୍ବତ ଉପରେ ବିରାଟକାୟ ପ୍ରସ୍ତର ଚଟାଣ ଆଶ୍ଚର୍ଯ୍ୟ ଜନକଭାବେ ଓହଳି ରହିଛି, ଯାହା ଏକ ପ୍ରାକୃତିକ ଆଶ୍ରୟ ସ୍ଥଳୀ ଅଟେ ।

ଏହି ସୀତାବିଞ୍ଜି ପର୍ବତର ପାଦ ଦେଶରେ ସୀତାନଦୀ ପ୍ରବାହିତ । ଜନଶ୍ରୁତିରୁ ଜଣାଯାଏ- ସୀତାଦେବୀ ତାଙ୍କର ଦୁଇପୁତ୍ର ଲବକୁଶଙ୍କୁ ଏହି ପର୍ବତ ଗୁହରେ ଜନ୍ମ ଦେଇଥିଲେ । ତେଣୁ ତାର ସ୍ମାରକୀ ସ୍ୱରୂପ ସୀତାବିଞ୍ଜି ପର୍ବତରେ ବୃହତ ପ୍ରସ୍ତରଖଣ୍ଡ ତଳେ ସୀତାଦେବୀଙ୍କର ଏନ୍ତୁଡି ଶାଳରେ ଲବ ଓ କୁଶଙ୍କ ନାମରେ ଦୁଇ ଖଣ୍ଡ ଶିଳା ପୂଜା ପାଇ ଆସୁଛି । ଅଲୌକିକ ବିଶ୍ୱାସ ଅଛି ଯେ, ସେଠାକୁ ବନ୍ଧ୍ୟା ନାରୀମାନେ ଆସି ଲବ କୁଶଙ୍କ ପ୍ରତୀକ ପ୍ରସ୍ତର ଖଣ୍ଡକୁ କାଖେଇ ସୀତାଦେବୀଙ୍କ ଏନ୍ତୁଡି ଶାଳ ଚାରିପାଖ ବୁଲିଗଲେ ତାଙ୍କର ବନ୍ଧ୍ୟାତ୍ୱ ଦୂର ହୋଇଯାଏ ।

ସୀତାବିଞ୍ଜିଠାରେ ରହିଛି ବୃହତକାୟ ପ୍ରସ୍ତର ଖଣ୍ଡ, ଯାହାକୁ ଲୋକେ ଭଣ୍ଡାରଘର ବୋଲି କହିଥାନ୍ତି ଏବଂ ଏଠାରେ ଗୋଟିଏ ଧବଳ ହସ୍ତୀ ଓ ପଞ୍ଚମୁଖୀ ଶିବ ମୂର୍ତ୍ତି ଦେଖିବାକୁ ମିଳେ । ସ୍ଥାନୀୟ ଆଦିବାସୀମାନେ ତାକୁ ସୂର୍ପଣଖା ମୂର୍ତ୍ତି ବୋଲି କହିଥାନ୍ତି । ସମ୍ପ୍ରତି ଏହି ମୂର୍ତ୍ତିକୁ ସଂରକ୍ଷିତ କରି ରଖାଯାଇଛି ।

ହାଣ୍ଡିଭଙ୍ଗା: ହାଣ୍ଡିଭଙ୍ଗା ଏକ ଜଳପ୍ରପାତ ପାଇଁ ପ୍ରସିଦ୍ଧ । କେନ୍ଦୁଝର ସହରଠାରୁ ୧୦୦କି.ମି. ଦୂର ଯୋଡାବ୍ଲକ ଅନ୍ତର୍ଗତ ବହଳଦା

ଗ୍ରାମପଞ୍ଚାୟତରେ ଥିବା କାଳିଆ ପର୍ବତରେ ଅବସ୍ଥିତ । ସୁନ୍ଦରଗଡ ଜିଲ୍ଲାରୁ ପ୍ରବାହିତ ନିର୍ଝରିଣୀ କାଳିଆ ପର୍ବତର ବକ୍ଷ ବିଦାରଣ କରି ଘର୍ଘର ନାଦରେ ୩୦୦ଫୁଟ୍ ଉଚ୍ଚରୁ ଜଳଧାର ପଡୁଅଛି । ପରେ ତାହା ନୟାଗଡଠାରେ ବୈତରଣୀ ନଦୀରେ ମିଶିଯାଇଛି । ଜଳପ୍ରପାତର ନିମ୍ନ ସ୍ଥଳରେ ଏକ ବୃହତକାୟ କଚ୍ଛପ ଅଛି । ସ୍ଥାନୀୟ ଲୋକେ ଏହା ଦେବୀଙ୍କର ପ୍ରତୀକ ବୋଲି ବିଶ୍ୱାସ କରନ୍ତି ।

ଏଣୁ ହାଣ୍ଡିଭଙ୍ଗା ଜଳପ୍ରପାତର ପ୍ରାକୃତିକ ଶୋଭା ନୈସର୍ଗିକ ଅରଣ୍ୟଶ୍ରୀ ଆଗନ୍ତୁକ ଦର୍ଶକମାନଙ୍କୁ ବିଶେଷଭାବେ ଆକୃଷ୍ଟ କରିଥାଏ ।

ପୋଡାସିଙ୍ଗଡି(ଗଡଚଣ୍ଡୀ ଚକ୍ରତୀର୍ଥ): ମୟୂରଭଞ୍ଜ ଜିଲ୍ଲାର ଶିମିଳିପାଳରୁ ସୃଷ୍ଟି ସାଳନ୍ଦୀ ନଦୀ କେନ୍ଦୁଝର ଜିଲ୍ଲା ଦେଇ ପ୍ରବାହିତ ହୋଇଛି । ଏହାର ନଦୀ ତୀର ଅତ୍ୟନ୍ତ ପ୍ରାକୃତିକ ଶୋଭା ସମ୍ଭାରରେ ପରିପୂର୍ଣ୍ଣ । ବଉଳା ପର୍ବତ ଶ୍ରେଣୀ ମଧ୍ୟରେ ଥିବା ଏକ ପଥର କୂପକୁ ହିଁ 'ଚକ୍ରତୀର୍ଥ' କୁହାଯାଏ । ଲୋକମତ ରହିଛି ଯେ, ଭଗବାନ ଶ୍ରୀକୃଷ୍ଣଙ୍କ ସୁଦର୍ଶନ ଚକ୍ର ପ୍ରଭୁଙ୍କ ଆଦେଶରେ ତାଙ୍କର ପୁତ୍ର ପ୍ରଦ୍ୟୁମ୍ନର ମସ୍ତକ ଛେଦନ କରିସାରି ମର୍ମାହତ ହୋଇ ଏହି ପଥର କୂପ ଦେଇ ପାତାଳପୁରକୁ ଯାଇଥିଲେ । ତେଣୁ ଏହି ସ୍ଥାନଟି ଏକ ପବିତ୍ର ସ୍ଥାନ ଭାବରେ ସ୍ଥାନ ପାଇଛି । ପ୍ରତି 'ରଜ ସଂକ୍ରାନ୍ତି' ଦିନ ଏଠାରେ ମେଳା ଅନୁଷ୍ଠିତ ହୁଏ । ଶ୍ରଦ୍ଧାଳୁ ଭକ୍ତମାନେ ଏହି କୂପଜଳରେ ସ୍ନାନ ତର୍ପଣ କରି ପିତୃପୁରୁଷଙ୍କୁ ଉଦ୍ଧାର କରିବା ପାଇଁ ଏଠାକୁ ଆସନ୍ତି । ଆନନ୍ଦପୁର ସହରଠାରୁ ୧୫କିମି ଦୂରରେ ଥିବା ଏହି ପର୍ଯ୍ୟଟନ ସ୍ଥଳୀରେ ଥିବା ଜୈନ ମୂର୍ତ୍ତିକୁ ସ୍ଥାନୀୟ ଲୋକେ ବଉଳାଶୁଣୀ ଦେବୀ ଭାବେ ପୂଜା ଅର୍ଚ୍ଚନା କରିଥାନ୍ତି ।

ଘଟଗାଁ: କେନ୍ଦୁଝର ସହରଠାରୁ ୪୫କିମି. ଦୂରରେ କେନ୍ଦୁଝର ଆନନ୍ଦପୁର ରାସ୍ତାରେ ପବିତ୍ର ଶକ୍ତିପୀଠ ମା' ତାରିଣୀଙ୍କ ଘଟଗାଁ ଅବସ୍ଥିତ । ଲୋକମୁଖରୁ ଶୁଣାଯାଏ– ରାଜା ଗୋବିନ୍ଦ ଭଞ୍ଜ କାଞ୍ଚି ରାଜ୍ୟର ଅଧିଷ୍ଠାତ୍ରୀ ଦେବୀ ମା' ତାରିଣୀଙ୍କୁ ନେଇ ଆସି ନିଜ ରାଜ୍ୟରେ ପ୍ରତିଷ୍ଠା କରିଥିଲେ । ସେହିଦିନଠାରୁ କେନ୍ଦୁଝର ରାଜ୍ୟର ଜନସାଧାରଣ ଘଟଗାଁ ତାରିଣୀଙ୍କୁ ଇଷ୍ଟ ଦେବୀଭାବେ ପୂଜା କରି ଆସୁଛନ୍ତି । ଏଠାରେ କନ୍ଧ ସଂପ୍ରଦାୟର ପୂଜକମାନେ ଦେବୀଙ୍କୁ ଶାବରୀ ମନ୍ତ୍ରରେ ଆବାହନ କରି ପୂଜା କରିଥାନ୍ତି । ନଡିଆ ହେଉଛି ମାଆ ତାରିଣୀଙ୍କର ଅତି ପ୍ରିୟ ବସ୍ତୁ । ଏଣୁ ଭକ୍ତମାନେ ମାଆଙ୍କ ନାମରେ ନଡିଆ ବସାଇ ବିଭିନ୍ନ ଶୁଭ କାମନା କରିଥାନ୍ତି । ଶ୍ରଦ୍ଧାଳୁ ଭକ୍ତମାନେ ଦୂର ଦୂରାନ୍ତରୁ ମାଆଙ୍କୁ ନଡିଆ ପଠାଇଥାନ୍ତି । ସମ୍ପ୍ରତି ପୂଜା କମିଟି ଗଠନ କରି ଦେବୀଙ୍କର ପୀଠର ପ୍ରଭୁତ ଉନ୍ନତି ସାଧନ କରାଯାଇଛି । ପୂଜା ପୀଠର ଚତୁଃପାର୍ଶ୍ୱରେ ସୁନ୍ଦର ଚାନ୍ଦିନୀ, ମୁଖଶାଳା ଓ ବିଶ୍ରାମଗାର ନିର୍ମାଣ କରାଯାଇଛି । ବର୍ତ୍ତମାନ ଏହି ଘଟଗାଁ ଶକ୍ତିପୀଠ ଏକ ସହରରେ ପରିଣତ ହୋଇଯାଇଛି ।

ବର୍ତ୍ତମାନ କେନ୍ଦୁଝର ଜିଲ୍ଲାର ବିଭିନ୍ନ ଦର୍ଶନୀୟ ସ୍ଥାନକୁ ପରିଦର୍ଶନରେ ଆସିଥିବା ପର୍ଯ୍ୟଟକଙ୍କ ସାରଣୀ ପର୍ଯ୍ୟଟନ ବିଭାଗ ତରଫରୁ ପ୍ରକାଶିତ ହୋଇଥିବା ୨୦୧୧ରୁ ବିଗତ ୨ବର୍ଷର ବିବରଣୀ ଦିଆଗଲା ।

| କ୍ରମିକ | ପର୍ଯ୍ୟଟନ ସ୍ଥଳୀ | ୨୦୧୦ରେ ଆସିଥିବା ପର୍ଯ୍ୟଟକ | | | ୨୦୧୧ରେ ଆସିଥିବା ପର୍ଯ୍ୟଟକ | | |
|---|---|---|---|---|---|---|---|
| ସଂଖ୍ୟା | | ବିଦେଶୀ | ଦେଶୀୟ | ସର୍ବମୋଟ | ବିଦେଶୀ | ଦେଶୀୟ | ସର୍ବମୋଟ |
| ୧. | ଘଟଗାଁ | ୪ | ୩୮୮୫୫୯ | ୩୮୮୫୬୩ | – | ୪୩୪୦୫୯ | ୪୩୪୦୫୯ |
| ୨. | ଗୋନାସିକା | ୨ | ୭୭୨୮୦ | ୭୭୨୮୨ | – | ୬୬୩୮୩ | ୬୬୩୮୩ |
| ୩. | ବଡ ଘାଗରା | ୮ | ୬୮୯୭୫ | ୬୮୯୮୩ | – | ୫୭, ୬୫୭ | ୫୭, ୬୫୭ |
| ୪. | ଖଣ୍ଡାଧାର | ୨ | ୬୨୭୩୫ | ୬୨୭୩୭ | – | ୬୩୩୬୨ | ୬୩୩୬୨ |
| ୫. | ମୁର୍ଗା ମହାଦେବ | – | ୧୧୦୫୯୩ | ୧୧୦୫୯୩ | – | ୧୧୧୬୯୮ | ୧୧୧୬୯୮ |
| ୬. | ସୀତାବିଞ୍ଜି | ୪ | ୧୩୯୧୦୭ | ୧୩୯୧୧୧ | – | ୧୪୩୪୮୭ | ୧୪୩୪୮୭ |

| କ୍ରମିକ ସଂଖ୍ୟା | ପର୍ଯ୍ୟଟନ ସ୍ଥଳୀ | ୨୦୧୦ରେ ଆସିଥିବା ପର୍ଯ୍ୟଟକ | | | ୨୦୧୧ରେ ଆସିଥିବା ପର୍ଯ୍ୟଟକ | | |
|---|---|---|---|---|---|---|---|
| | | ବିଦେଶୀ | ଦେଶୀୟ | ସର୍ବମୋଟ | ବିଦେଶୀ | ଦେଶୀୟ | ସର୍ବମୋଟ |
| ୭. | ସାନ ଘାଗରା | ୫୩ | ୨୦୪୨୦୬ | ୨୦୪୨୫୯ | – | ୨୧୬୩୦୦ | ୨୧୬୩୦୦ |
| ୮. | କେନ୍ଦୁଝର | ୩୮ | ୭୯୧୭୧ | ୭୯୨୦୯ | ୪ | ୭୯୯୬୨ | ୭୯୯୬୬ |
| ୯. | ଦେଓଗାଁ (କୋଶେଳେଶ୍ୱର) | – | ୧୧୪୮୭୦ | ୧୧୪୮୭୦ | – | ୧୦୩୫୬୬ | ୧୦୩୫୬୬ |
| ୧୦. | ହାଣ୍ଡିଭଙ୍ଗା | – | ୪୯୧୩୬ | ୪୯୧୩୬ | – | ୪୩୪୫୦ | ୪୩୪୫୦ |
| ୧୧. | ଗୁଣ୍ଡିଚାଘାଇ | – | ୩୯୦୪୯ | ୩୯୦୪୯ | – | ୪୧୧୪୦ | ୪୧୧୪୦ |
| ୧୨. | ହଦଗଡ | – | ୫୮୬୫୦ | ୫୮୬୫୦ | – | ୪୨୭୪୫ | ୪୨୭୪୫ |
| ୧୩. | କାଞ୍ଜିପାଣି | – | ୨୯୧୩୨ | ୨୯୧୩୨ | – | ୨୭୭୪୫ | ୨୭୭୪୫ |
| ୧୪. | ପୋଡାସିଙ୍ଗଡି (ଗଡଚଣ୍ଡୀ ଚକ୍ରତୀର୍ଥ) | – | ୩୮୦୮୧ | ୩୮୦୮୧ | – | ୩୧୩୮୮ | ୩୧୩୮୮ |
| ୧୫. | ରାଜନଗର | – | ୨୮୨୨୩ | ୨୮୨୨୩ | – | ୨୪୮୮୭ | ୨୪୮୮୭ |
| ୧୬. | ସରାଇ(କେଶରୀକୁଣ୍ଡ) | – | ୧୯୪୬୫୬ | ୧୯୪୬୫୬ | – | ୧୧୩୩୧୪ | ୧୧୩୩୧୪ |

ଗମନାଗମନର ସୁବିଧା

କେନ୍ଦୁଝର ଜିଲ୍ଲାର ମହକୁମା ଜାତୀୟ ରାଜପଥ ୬ନମ୍ବର ଓ ୨୧୫ ତଥା ରାଜ୍ୟ ରାଜପଥ ସହ ସମ୍ପୃକ୍ତ ଆଗନ୍ତୁକ ପର୍ଯ୍ୟଟକମାନେ କେନ୍ଦୁଝର ସହରରୁ ଟୁରିଷ୍ଟ କାର୍ ଭଡାରେ ନେଇ ସେହି ଜିଲ୍ଲାରେ ଥିବା ବିଭିନ୍ନ ପର୍ଯ୍ୟଟନ ସ୍ଥଳୀକୁ ଅକ୍ଲେଶରେ ଯାଇପାରିବେ । ଏତଦ୍‌ଭିନ୍ନ ପୁରୀ–ବଡବିଲ୍ ଓ କେନ୍ଦୁଝର ଫାଷ୍ଟ ପାସେଞ୍ଜରରେ ରେଳଯାତ୍ରା ମଧ୍ୟ ଉପଲବ୍ଧ ରହିଛି ।

ରହିବା ପାଇଁ ସୁବିଧା

ଓଡ଼ିଶା ପର୍ଯ୍ୟଟନ ଉନ୍ନୟନ ନିଗମ ଲିଃ ତରଫରୁ ପାନ୍ଥନିବାସର ସୁବିଧା କେନ୍ଦୁଝର ସହର ଜୁଡିଆଠାରେ (ଜାତୀୟ ରାଜପଥ ୬ନମ୍ବର ପାର୍ଶ୍ୱରେ) ରହିଛି । ଏତଦ୍‌ଭିନ୍ନ କେନ୍ଦୁଝରରେ ଉଚ୍ଚ ବର୍ଗ ଓ ମଧ୍ୟମ ଶ୍ରେଣୀର ପର୍ଯ୍ୟଟକଙ୍କ ନିମନ୍ତେ ବଜେଟ୍ ହୋଟେଲ୍‌ର ମଧ୍ୟ ସୁବିଧା ରହିଛି ।

ତେବେ ଡେରି କାହିଁକି, କେନ୍ଦୁଝର ଜିଲ୍ଲାର ବିଭିନ୍ନ ପର୍ଯ୍ୟଟନ ସ୍ଥଳୀକୁ ପରିଦର୍ଶନ କରି ଏଠାକାର ପ୍ରାକୃତିକ ଶୋଭା ସମ୍ଭାରକୁ ଉପଭୋଗ କଲା ପରେ ଆପଣ ସ୍ୱତଃ ଅନ୍ୟକୁ ପର୍ଯ୍ୟଟନରେ ଆସିବା ପାଇଁ ପ୍ରେରଣା ନଦେଇ ରହି ପାରିବେ ନାହିଁ ।

ସୂଚନା ଓ ସହାୟତା ପାଇଁ ଯୋଗାଯୋଗ କରନ୍ତୁ:

ଜିଲ୍ଲା ପର୍ଯ୍ୟଟନ କାର୍ଯ୍ୟାଳୟ, ପାନ୍ଥନିବାସ ପରିସର କେନ୍ଦୁଝର, ଜୁଡିଆ ଯୋଗାଯୋଗ–୦୬୭୬୬–୨୫୩୬୦୩ ଟୋଲ୍ ଫ୍ରି ନମ୍ବର: ୧୮୮୦୦୨୦୯୭୧୨୩

ପରିସଂଖ୍ୟାନ ଓ ଗବେଷଣା ପ୍ରକୋଷ୍ଠ
ପର୍ଯ୍ୟଟନ ଭବନ, ଲୁଇସ୍‌ରୋଡ୍
ଭୁବନେଶ୍ୱର–୧୪

◆◆◆

# ଭୀମଭୋଇଙ୍କ ସାହିତ୍ୟରେ ଧର୍ମ ଓ ଦର୍ଶନ

ଡକ୍ଟର ଶ୍ରୀଚରଣ ଦାସ





ଭୀମଭୋଇ ଭାରତୀୟ ସନ୍ଥ ପରମ୍ପରାରେ ଜଣେ ଅସାଧାରଣ ପ୍ରତିଭା ସମ୍ପନ୍ନ ବ୍ୟକ୍ତିତ୍ୱ । ଊନବିଂଶ ଶତାବ୍ଦୀର ଉତ୍ତର ପଚାଶରେ ତାଙ୍କର ଜନ୍ମ ହୋଇଥିଲେ ହେଁ ଏଯାବତ୍ ତାଙ୍କର ଜନ୍ମ ଜୀବନୀ ଓ ଜନ୍ମସ୍ଥାନ ସନ୍ଦେହ ଘେରରୁ ମୁକ୍ତି ପାଇପାରିନାହିଁ । ସନ୍ଥ କବିଙ୍କୁ ଦେଖିଥିବା ଏବଂ ତାଙ୍କ ସଂସ୍ପର୍ଶରେ ଆସିଥିବା କେହି ବ୍ୟକ୍ତି ଯଦି ଦୀର୍ଘାୟୁ ହୋଇପାରିଥାନ୍ତି ତେବେ ତାଙ୍କର ମୃତ୍ୟୁ ନିକଟ ଅତୀତରେ ହୋଇଥିବା ଅସମ୍ଭବ ନୁହେଁ । ତଥାପି ସତ୍ୟ ପ୍ରକାଶରେ କାହିଁକି ଏତେ ତ୍ରୁଟି ରହିଲା, ତାହାର କୌଣସି ସନ୍ତୋଷଜନକ ଉତ୍ତର ନମିଳିବା ଅତ୍ୟନ୍ତ ପରିତାପର ବିଷୟ । ଅବଶ୍ୟ ଏପରି ଉଦାସୀନତା ଓଡ଼ିଶାର କବି, ଲେଖକ, ସାଧୁସନ୍ଥଙ୍କ ବିଷୟରେ କିଛି ନୂଆ କଥା ନୁହେଁ । କୁହାଯାଏ ଓଡ଼ିଶାର ଅନେକ ଲୋକ ଏତେ ଆଳସ୍ୟ ପରାୟଣ ଯେ, ଚାଳଘର ଭିତରକୁ ପାଣି ବର୍ଷା ନହେବା ଯାଏ, ସେମାନେ ଘରଛୁଆଣୀ କରନ୍ତି ନାହିଁ । ଏବେ କିନ୍ତୁ ଗବେଷକ, ସାହିତ୍ୟିକ ଏବଂ ଐତିହାସିକମାନେ ଖୁବ୍ ସଚେତନ । ତେଣୁ ଅନେକ ସତ୍ୟ ଘଟଣା ପ୍ରକାଶ ପାଇବାରେ ଅଧିକ ବିଳମ୍ବ ଘଟୁନାହିଁ ।

ଭୀମଭୋଇ ଯେଉଁଠି ଜନ୍ମ ହୁଅନ୍ତୁ ନା କାହିଁକି ସେ ଓଡ଼ିଶା ମାଟିର ସନ୍ତାନ । ସେ ଏକାଧାରାରେ ଜଣେ ସନ୍ଥ, କବି ଓ ଧର୍ମ ପ୍ରଚାରକ । ଓଡ଼ିଶାରୁ ଜନ୍ମ ହୋଇଥିବା ମହିମା ଧର୍ମର ସେ ତୃତୀୟ ପିଢ଼ିର ସାଧୁ ଓ ସାଧକ । ମହିମା ସ୍ୱାମୀ ବା ଅଲେଖ ଗୋସେଇଁ ଏହି ଧର୍ମର ଆଦ୍ୟ ଉପଦେଷ୍ଟା ବା ଆବିଷ୍କାରକ ହୋଇଥିବାରୁ ଏହି ଧର୍ମକୁ ଯଥାର୍ଥରେ ମହିମା ଧର୍ମ ତଥା ଅଲେଖ ଧର୍ମ ନାମରେ ଆଖ୍ୟାୟିତ କରାଯାଏ । ତାଙ୍କ ସାହିତ୍ୟ ଆଲୋଚନା ପୂର୍ବରୁ ଜୀବନୀ ବିଷୟରେ ସମ୍ୟକ୍ ଆଲୋକପାତ କରିବାକୁ ଉଚିତ୍ ମନେ କରୁଛି । ଭୀମଭୋଇ ଜନ୍ମରୁ ଥିଲେ ଅନ୍ଧ । ତାଙ୍କର ବାଲ୍ୟଜୀବନ ଥିଲା ଦୁଃଖ ଦାବାଗ୍ନିଦଗ୍ଧ ଓ ସଂଘର୍ଷପୂର୍ଣ୍ଣ । କନ୍ଧ ସମାଜର ଏକ ଅଜ୍ଞାତ ପିତାମାତାର ସନ୍ତାନଭାବରେ ସେ ବହୁ ଅବହେଳାର ଶିକାର ହୋଇଥିଲେ । ଐତିହାସିକ ନବୀନ କୁମାର ସାହୁ କୁହନ୍ତି, 'ଅନ୍ଧଶିଶୁ ପରିତ୍ୟକ୍ତ ଅବସ୍ଥାରେ ଜଟାଶିଙ୍ଗା ଗାଁ ମୁଣ୍ଡର ଘୋର ଅରଣ୍ୟ ମଧ୍ୟରେ ଅସହାୟ ଅବସ୍ଥାରେ ତାକୁ ଉଦ୍ଧାର କରାଯାଇଥିଲା । କଙ୍କଣପଡାର କୁଡିଆ ମଧ୍ୟରେ ରହି ଜୀବନଯାପନ କରୁଥିବା

ବେଳେ ଏକଦା ସେ ଗାଈ ଚରାଇବାକୁ ଯାଇ ଜଙ୍ଗଲ ମଧ୍ୟସ୍ଥ ଏକ କୂପ ମଧ୍ୟରେ ଖସିପଡିଥିଲେ । କନ୍ଧ ବାଳକ ଦୀର୍ଘ ତିନିଦିନ କାଳ କ୍ଷୁଧା ପ୍ରପୀଡିତ ହୋଇ କୂଅ ଭିତରେ ରହିଲେ । ଜୀବନର ସବୁ ଆଶା କ୍ଷୀଣ ହୋଇ ଯାଇଥିବାବେଳେ ଭୀମଭୋଇଙ୍କ ଆର୍ତ୍ତକ୍ରନ୍ଦନ ମହିମା ଗୋସେଇଁଙ୍କ କାନରେ ପଡିଲା । ଦୟାର ସାଗର ଦୟା ପରବଶ ହୋଇ ତାଙ୍କୁ ସେ କୂପରୁ ଉଦ୍ଧାର କରିଥିଲେ । ଭୀମ ଆସନ୍ନ ମୃତ୍ୟୁ ମୁଖରୁ ରକ୍ଷା ପାଇ ମହିମା ସ୍ୱାମୀଙ୍କ ଶିଷ୍ୟତ୍ୱ ଗ୍ରହଣ ପୂର୍ବକ ସେହି ଧର୍ମରେ ଦୀକ୍ଷିତ ହେଲେ ।'' ସାହିତ୍ୟିକ ଚିତ୍ତରଞ୍ଜନ ଦାସଙ୍କ ମତରେ, 'ଏକଦା ମଧ୍ୟରାତ୍ରିରେ ସ୍ୱୟଂ ମହିମା ସ୍ୱାମୀ ସାଧୁସିଦ୍ଧ ଗୋବିନ୍ଦ ବାବାଙ୍କ ସହିତ ଭୀମଭୋଇଙ୍କ ଘରକୁ ଆସି ତାଙ୍କୁ ଦୃଷ୍ଟିଶକ୍ତି ଦେଇ ସତ୍ୟ ମହିମା ଧର୍ମର ପ୍ରଚାର ପାଇଁ ଆଦେଶ ଦେଇଥିଲେ । ଭୀମଙ୍କର କବି ଗୁରୁ ମହିମା ସ୍ୱାମୀଙ୍କର ଅହେତୁକ ଆଶୀର୍ବାଦ ଯୋଗୁଁ ସମ୍ଭବ ହୋଇପାରିଥିଲା । ସେ ମହିମା ଗୋସେଇଁଙ୍କ ପାଦପଦ୍ମ ଦର୍ଶନ କରିସାରିଥିବାରୁ ଆଉ ପାର୍ଥିବ ଜଗତର ଦୃଷ୍ଟି ରଖିବାକୁ ଚାହିଁଲେ ନାହିଁ । ଫଳରେ କବିଙ୍କର ବହିଃ ଦୃଷ୍ଟି ଲୋପପାଇଲା । କିନ୍ତୁ ଗୁରୁକୃପା ବଳରେ ତାଙ୍କର ଦିବ୍ୟଦୃଷ୍ଟି ଶତଗୁଣରେ ବୃଦ୍ଧିହେଲା ।

ଭୀମଭୋଇ ଥିଲେ ଊନବିଂଶ ଶତାବ୍ଦୀର ଜଣେ ସନ୍ଥକବି । ସେତେବେଳେ କନ୍ଧ ସମାଜରେ ଶିକ୍ଷାଲାଭ କରିବାର କୌଣସି ସୁଯୋଗ ନଥିଲା । ଶାସ୍ତ୍ରଜ୍ଞାନ ଶ୍ରବଣର ପରିବେଶଠାରୁ ସେ ଥିଲେ ଅନେକ ଦୂରରେ । ସଂସ୍କାର, ସଂସ୍କୃତିର କଥା ତାଙ୍କ ପାଇଁ ସମ୍ପୂର୍ଣ୍ଣ ଅଜଣା । କେବଳ ଗୁରୁଙ୍କ ମହିମାରୁ ସେ କେବଳ ଜଣେ କବି ରୂପରେ ଖ୍ୟାତି ଲାଭ କରି ନଥିଲେ, ଗୋଟିଏ ଧର୍ମର ସୁରକ୍ଷା ଦାୟିତ୍ୱ ମଧ୍ୟ ତାଙ୍କୁ ବହନ କରିବାକୁ ପଡିଥିଲା । ଓଡ଼ିଶା ଭୂମିରୁ ଏହି ଧର୍ମ ଉତ୍ପତ୍ତି ହୋଇ କ୍ରମେ ଆନ୍ଧ୍ରପ୍ରଦେଶ, ମଧ୍ୟପ୍ରଦେଶ, ପଶ୍ଚିମବଙ୍ଗ, ବିହାର, ଆସାମ ପ୍ରଭୃତି ଭାରତବର୍ଷର ବିଭିନ୍ନ ଅଞ୍ଚଳକୁ ପରିବ୍ୟାପ୍ତ ହୋଇଥିଲେ ମଧ୍ୟ ସନ୍ଥକବିଙ୍କ ପୂର୍ବରୁ ମହିମାଧର୍ମ ସମ୍ପର୍କରେ କୌଣସି ଗ୍ରନ୍ଥ ରଚନା କରାଯାଇନଥିଲା । ଭୀମଭୋଇ ଥିଲେ କ୍ଷୀଣଜନ୍ମା । ସୀମିତ ଜୀବନକାଳ ମଧ୍ୟରେ ବିପୁଳ ସଂଖ୍ୟକ ମହିମା ଧର୍ମ ସମ୍ବନ୍ଧୀୟ ସ୍ତୁତି, ଭଜନ, ଜଣାଣ, ଗୀତ ଏବଂ ତତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ ରଚନା କରି ସେ ଏହି ଧର୍ମକୁ ଭାରତବର୍ଷର ଅନ୍ୟାନ୍ୟ ଧର୍ମ ସହିତ ସମକକ୍ଷ କରିବାର ଉଦ୍ୟମ ଜାରି ରଖିଥିଲେ । ତେଣୁ ସେ ଯଥାର୍ଥରେ ହେଉଛନ୍ତି ମହିମା ଧର୍ମର ଆଦି କବି । ଭୀମଭୋଇ ଚାରିଜଣ ଭକ୍ତଙ୍କୁ ମହିମା ଧର୍ମରେ ଦୀକ୍ଷିତ କରିଥିଲେ । ସେ ଯାହା କହୁଥିଲେ ଶିଷ୍ୟମାନେ ପାଖରେ ଉପସ୍ଥିତ ରହି କାଗଜ କଲମ ଧରି ତାହା ଲେଖି ପକାଉଥିଲେ । ତାଙ୍କର ରଚନାବଳୀମାନଙ୍କ ମଧ୍ୟରେ ସ୍ତୁତି ଚିନ୍ତାମଣି, ଆଦି ଅନ୍ତଗୀତା, ନିର୍ବେଦ ସାଧନା, ମହିମା ବିନୋଦ, ଅଷ୍ଟକ ବିହାରୀ ଗୀତା ଶ୍ରୁତି ନିଷେଧ ଗୀତା, ବ୍ରହ୍ମନିରୂପଣ ଗୀତା, ବ୍ରହ୍ମଚାଳକ, ପଦ୍ମକଳ୍ପ, ମନୁସଭାମଣ୍ଡଳ, ତିନିଶହରୁ ଉର୍ଦ୍ଧ୍ୱଭଜନ, ଚଉତିଶା ମଧୁଚକ୍ର ପ୍ରଭାତ ଅବକାଶ ଆଦି ପ୍ରଧାନ । ଏତଦ୍‌ଭିନ୍ନ ବଙ୍ଗଳା ଭାଷାରେ କବିଙ୍କର କେତେକ ରଚନା ଥିବା ଦେଖିବାକୁ ମିଳେ । ପ୍ରକାଶିତ ଗ୍ରନ୍ଥମାନଙ୍କୁ ବାଦ୍‌ଦେଲେ ତାଙ୍କର ଅନେକ ଅପ୍ରକାଶିତ ଭଜନ, ଜଣାଣ, ସ୍ତୁତି, ଚଉତିଶା ମଧ୍ୟ ଅଛି । ଓଡ଼ିଶାର ଅନେକ ଅଲେଖ ଟୁଙ୍ଗୀ ଓ ଗାଦିମାନଙ୍କରେ ପ୍ରତ୍ୟହ ସଂଧ୍ୟାରେ ଯେତେ ଭଜନ ଖଞ୍ଜଣି ମାଧ୍ୟମରେ ଆବୃତ୍ତି କରାଯାଏ, ତନ୍ମଧ୍ୟରୁ କେତେକ ଅପ୍ରକାଶିତ । ଏହାହିଁ ମୋଟା ମୋଟି ଭାବରେ ଭୀମଭୋଇ ରଚନା କରିଥିବା ସାହିତ୍ୟ ସମ୍ଭାରର ପରିଚୟ । ଏଥିରେ ଧାର୍ମିକ ଚେତନା ଏବଂ ଦାର୍ଶନିକ ଚିନ୍ତାଧାରାର ସ୍ୱର ଝଙ୍କୃତ ।

ସନ୍ଥକବି ଭୀମଭୋଇ ମହିମା ସ୍ୱାମୀଙ୍କର ସାମାଜିକ ଚିନ୍ତାଧାରା, ଧାର୍ମିକ ଚେତନା ଓ ବିଶୁଦ୍ଧ ଦର୍ଶନର ବ୍ୟାଖ୍ୟା ଅତି ପ୍ରାଞ୍ଜଳ ଭାବରେ ଗ୍ରାମାଞ୍ଚଳର ଅଶିକ୍ଷିତ ଲୋକଙ୍କୁ ବୁଝାଯିବା ଭଳି ଗାଉଁଲୀ ଭାଷାରେ ପ୍ରକାଶ କରି ଯେଉଁ ଗ୍ରନ୍ଥମାନ ରଚନା କରିଛନ୍ତି, ତାହାର ବିକଳ୍ପ ଓଡ଼ିଆ ଭାଷାରେ ଜଗନ୍ନାଥ ଦାସଙ୍କ ଭାଗବତକୁ ବାଦ୍‌ଦେଲେ ବୋଧହୁଏ ଆଉ କିଛି ନଥାଇପାରେ । ସମ୍ଭବତଃ ସେଥିଯୋଗୁଁ ଏହି ଧର୍ମର ଲୋକପ୍ରିୟତା ଅମଳିନ ଓ ଭିତ୍ତିଭୂମି ଏତେ ବଳିଷ୍ଠ । ତାଙ୍କ ରଚନାବଳୀରେ ଶୂନ୍ୟବ୍ରହ୍ମଙ୍କ ଉପାସନା ଏକ ପ୍ରମୁଖ ଭୂମିକା ଗ୍ରହଣ କରିଛି । ମହିମା ଧର୍ମରେ ପ୍ରତିମା ପୂଜା ତଥା ସାକାର ଉପାସନା ପୂର୍ଣ୍ଣମାତ୍ରାରେ ନିଷିଦ୍ଧ । ଅବଶ୍ୟ ବେଦରେ 'ନତସ୍ୟ ପ୍ରତିମା ଅସ୍ତି' କୁହାଯାଇଛି । ତଥାପି ଏଥିରେ ବହୁ ଦେବ ଦେବୀଙ୍କ ସ୍ତୁତି କରାଯାଇ ଦେବତାଙ୍କ ରୂପ ପରି କଳ୍ପିତ । ସେଥିପାଇଁ ମହିମା ଧର୍ମରେ ହିନ୍ଦୁଧର୍ମ, ବୌଦ୍ଧ ଧର୍ମ ଏବଂ ଜୈନଧର୍ମର ପ୍ରଭାବ ପଡିଥିବା ବହୁ ଆଲୋଚକ ବିଭିନ୍ନ ଦୃଷ୍ଟାନ୍ତ ମାଧ୍ୟମରେ ଯୁକ୍ତି ବାଢିଛନ୍ତି । ଏସବୁ ସତ୍ତ୍ୱେ ମହିମା ଧର୍ମ ଓଡ଼ିଶାର ଏକ ମୌଳିକ ଧର୍ମ ଏବଂ ଏହା ଏକ ସ୍ୱତନ୍ତ୍ର ମତବାଦକୁ ନେଇ ପରିପୁଷ୍ଟ । ମହିମା ଠାରୁ ସକଳ ବ୍ରହ୍ମାଣ୍ଡର ସୃଷ୍ଟି । ତେଣୁ ଭୀମଭୋଇ ବ୍ରହ୍ମ ନିରୂପଣ ଗୀତାରେ କହିଛନ୍ତି ।

'ମହିମା ଠାରୁ ହୋଇଛି ଅଶେଷ ବ୍ରହ୍ମାଣ୍ଡ
ଅଲେଖ ପୁରୁଷ ସେହୁ ପୁରୁଷେ ଅଖଣ୍ଡ'' ।

ସନ୍ଥକବିଙ୍କ ରଚନାରେ ଉପାସିତ ଶୂନ୍ୟବ୍ରହ୍ମ ପାଦପାଣିହୀନ । କିନ୍ତୁ ସେ ଚରାଚର ବ୍ରହ୍ମାଣ୍ଡରେ ଭ୍ରମଣ କରିପାରନ୍ତି । ବ୍ରହ୍ମା, ବିଷ୍ଣୁ, ଶିବ ପ୍ରଭୃତି ଦେବତାଙ୍କଠାରୁ ସେ ଅନେକ ଉଚ୍ଚରେ । ମାୟାଗ୍ରସ୍ତ ଜୀବନର ଦୁର୍ଗତି କେବଳ ପିତୁଳା ପୂଜା ଦ୍ୱାରା ବଢ଼ି ବଢ଼ି ଚାଲିଛି । କବିଙ୍କର ସାମଗ୍ରୀକ ରଚନାବଳୀ ମଧ୍ୟରେ 'ସ୍ତୁତି ଚିନ୍ତାମଣି' ଶ୍ରେଷ୍ଠ ସ୍ଥାନୀୟ । ଏକଶହ ଅଧ୍ୟାୟ ବା ବୋଲିରେ ରଚିତ ଏହି ଗ୍ରନ୍ଥକୁ ମହିମା ଧର୍ମର ବେଦ, ଗୀତା ଅଥବା ନୀତିଶାସ୍ତ୍ର ଯେକୌଣସି ନାମରେ ଆଖ୍ୟାୟିତ କରାଯାଇପାରେ । ଏହି ଗ୍ରନ୍ଥକୁ ଅନେକ ତିନି ଭାଗରେ ବିଭକ୍ତ କରିଥାଆନ୍ତି । ପ୍ରଥମେ କବିଙ୍କ ଜୀବନୀ ଏବଂ ମହିମା ଗୋସେଇଁଙ୍କ ଜୀବନୀ, ଦ୍ୱିତୀୟ ବିଷୟଟି ହେଉଛି ସମସାମୟିକ ସମାଜ ଚିତ୍ର ଓ ତୃତୀୟ ବିଷୟ ହେଲା ମହିମା ଧର୍ମଦର୍ଶନ । ଧର୍ମର ବ୍ୟାବହାରିକ ଦିଗ ପ୍ରତି ସେ ଏହି ଗ୍ରନ୍ଥରେ ଯଥେଷ୍ଟ ଧ୍ୟାନ ଦେଇ ଅଛନ୍ତି । ସନ୍ଥକବି ଜୀବନଠାରୁ କର୍ମକୁ ଓ କର୍ମଠାରୁ ମଣିଷର ଧାର୍ମିକ ଅନୁଚିନ୍ତନକୁ କଦାପି ଅଲଗା କରି ଦେଖିନାହାନ୍ତି । କର୍ମ ସହ ଧର୍ମ ମାନବୀୟ ସତ୍ତାର ଦୁଇ ମହତର ଉପଲବ୍ଧି ଭାରତୀୟ ଉପନିଷଦୀୟ ଚିନ୍ତାଧାରାର ସୁଦୀର୍ଘ ଇସ୍ତାହାରକୁ ଉପଯୁକ୍ତ ବିନିଯୋଗ କରିବାର କୌଶଳ ତାଙ୍କୁ ବେଶ୍ ଜଣାଥିଲା । ତାଙ୍କର ଧାର୍ମିକ ଚେତନା ମଧ୍ୟରେ ସଂକୀର୍ଣ୍ଣତାର ସ୍ଥାନ ଆଦୌ ନଥିଲା । ଏଥିରେ ଜାତିଭେଦ ପ୍ରଥା କିଛି ନାହିଁ । ଧନୀ ଦରିଦ୍ର ସମସ୍ତେ ସମାନ । ରାଜା ପ୍ରଜା ମଧ୍ୟରେ କୌଣସି ବୈଷମ୍ୟ ସେ ଦେଖିନାହାନ୍ତି । ଏଥିରେ ବ୍ୟକ୍ତିଗତ ମୁକ୍ତିକୁ ସେ ପ୍ରାଧାନ୍ୟ ନଦେଇ ସମଗ୍ର ଜଗତବାସୀଙ୍କ ଉଦ୍ଧାର ପାଇଁ ସତତ ବ୍ୟସ୍ତ । ଏହାଠାରୁ ବଳି ଧାର୍ମିକ ଭାବପ୍ରବଣତା କିଛି ନଥାଇପାରେ । ଛପନ କୋଟି ପ୍ରାଣୀଙ୍କ ଦୁଃଖକୁ ନିଜ ଭିତରେ ଆତ୍ମସ୍ଥ କରି ବିଶ୍ୱକଲ୍ୟାଣ ନିମିତ୍ତ ଆଖିରୁ ଲୁହ ଝରାଇ, ଜୀବନକୁ ନର୍କକୁ ଠେଲି ଦେବାର ଯେଉଁ ତ୍ୟାଗ ନିଷ୍ଠତା, ତାହା ସନ୍ଥ ପରମ୍ପରାରେ ଏକ ନୂତନ ସଂଯୋଗ ତଥା ଭୀମଭୋଇଙ୍କ ସାହିତ୍ୟର ଏକ ମୂଲ୍ୟବୋଧଭିତ୍ତିକ ବିଚାରବୋଧ । ଏପରି ଚେତନା ଭାରତୀୟ ସାହିତ୍ୟରେ ବିରଳ ନିଶ୍ଚୟ ।

ସନ୍ତକବିଙ୍କ ସାହିତ୍ୟରେ ନିଷ୍କାମ ଭକ୍ତି ଏବଂ ନିର୍ଗୁଣବ୍ରହ୍ମଙ୍କ ଉପାସନା ଧାର୍ମିକ ଭାବନାର ମୁଖ୍ୟ ପ୍ରସଙ୍ଗ । ଏହି ଧର୍ମର ଭିତ୍ତିଭୂମି ହେଲା ଅହିଂସା । ବିଶ୍ୱର ପ୍ରତ୍ୟେକ ଧର୍ମରେ ଅବଶ୍ୟ ଏହାକୁ ପ୍ରାଧାନ୍ୟ ଦିଆଯାଇଛି । ଏହା ସହିତ ଉଦାରତା, ଦୟା, କ୍ଷମା, ପରୋପକାର ଆଦିର ମହତ୍ତ୍ୱ ଏଥିରେ ଉପଲବ୍ଧ । ସ୍ତୁତି ଚିନ୍ତାମଣି ଗ୍ରନ୍ଥରେ ସନ୍ଥକବି ପାପ ପ୍ରବୃତ୍ତି ପରିତ୍ୟାଗ ପୂର୍ବକ ସତ୍ୟ, ଆସ୍ତେୟ, ବ୍ରହ୍ମଚର୍ଯ୍ୟ, ଦୟା, ଆର୍ଜବ, କ୍ଷମା, ଧୃତି, ପରିମିତ ଆହାର ପ୍ରଭୃତି ନିୟମ ମୁତାବକ ପାଳନ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି । କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ ଆଦି ଷଡରିପୁକୁ ଯଥା ନିୟମରେ ସଂଯତ କରିବାକୁ ଏଥିରେ ଅଛି କଡା ଚେତାବନୀ । ଏତଦ୍ ଭିନ୍ନ ମହିମା ପନ୍ଥୀମାନେ କିପରି ଆଚରଣ କରିବେ, ପ୍ରାତଃସ୍ନାନ କରିବେ, ଶରଣ ନେବେ, ସାଧୁସେବା କରିବେ, ଗୁରୁଙ୍କୁ ଭକ୍ତି କରିବେ, ନାମସ୍ମରଣ କରିବେ, ଏହାର ବିଧିବଦ୍ଧ ବିବରଣୀ ତାଙ୍କ ସାହିତ୍ୟରୁ ହିଁ ମିଳିଥାଏ । ଏହି ଧର୍ମରେ ଦୀକ୍ଷିତ ହେବା ବ୍ୟକ୍ତି ତୁଳସୀ ବୃକ୍ଷ ସ୍ପର୍ଶ ବା ତୁଳସୀପତ୍ର ଗ୍ରହଣ କରିବା ନିଷେଧ । ଜୀବ ବଧ କରିବା ମନା । ଅତି କଟୁ, ଅତି ତିକ୍ତ, ଅତିମାତ୍ରାରେ ଲବଣଯୁକ୍ତ ଦ୍ରବ୍ୟ ଓ ଉତ୍ତେଜକ ଖାଦ୍ୟ ସାମଗ୍ରୀ ସେମାନେ ସାଧାରଣତଃ ଗ୍ରହଣ କରିନଥାନ୍ତି । ଜୁଆଖେଳ, ମନକୁ ଚଞ୍ଚଳ କରୁଥିବା ବାଦ୍ୟ ଓ ନୃତ୍ୟ ଭିତରକୁ ଏମାନେ ପଶନ୍ତି ନାହିଁ । ଦୁଃଖ ସୁଖରେ ଅଧୀର ନହୋଇ ଅଲେଖ ବ୍ରହ୍ମଙ୍କୁ ମନ ଭିତରେ ଶ୍ରେଷ୍ଠ ଆସନ ଦେବା ପାଇଁ ସେମାନେ ଗୁରୁଆଜ୍ଞା ଲାଭ କରିଥାନ୍ତି । ଅଲେଖ ବ୍ରହ୍ମବ୍ୟତୀତ ଏମାନେ ଅନ୍ୟ କାହାରିକୁ ପ୍ରଣାମ କରନ୍ତି ନାହିଁ ।

ଅଲେଖ ଧର୍ମରେ ପ୍ରତ୍ୟେକ ବ୍ୟକ୍ତି କଷାୟ ବସନ ପରିଧାନ କରିବାକୁ ପରାମର୍ଶ ଦିଆଯାଇଛି । ହେଲେ ଏ ଧର୍ମରେ ଦୀକ୍ଷିତ ସାଧୁ କୁମ୍ଭୀବୃକ୍ଷର ବଳ୍କଳ ପରିଧାନ ଏବଂ ଅନେକ କୌପିନ ପରିଧାନ କରିଥାନ୍ତି । ସ୍ତରଭେଦରେ ଏହା ତାଙ୍କୁ ଗ୍ରହଣ କରିବାକୁ ପଡିଥାଏ । ବ୍ରାହ୍ମମୁହୂର୍ତ୍ତରେ ଶଯ୍ୟାତ୍ୟାଗ ପୂର୍ବକ ପୂର୍ବଦିଗକୁ ମୁଖ କରି ସାତଥର ବ୍ରହ୍ମଦର୍ଶନ କରିବା ଓ ସୂର୍ଯ୍ୟାସ୍ତ ପୂର୍ବରୁ ପଶ୍ଚିମ ଦିଗକୁ ମୁହଁକରି ପାଞ୍ଚଥର ବ୍ରହ୍ମଦର୍ଶନ କରିବା ଏହି ଧର୍ମାବଲମ୍ବୀମାନଙ୍କର ସାଧାରଣ ନିୟମ ଅଟେ । ରାଜା, ବ୍ରାହ୍ମଣ ଏବଂ ରଜକ ଗୃହରେ ସେମାନଙ୍କୁ ଖାଦ୍ୟ ଗ୍ରହଣ କରିବା ମନା । ଆହାରରେ ଭଲମନ୍ଦ ବିଚାର ନଥାଏ । କିନ୍ତୁ ସୂର୍ଯ୍ୟାସ୍ତ ପରେ ସେମାନେ ଖାଦ୍ୟ ଗ୍ରହଣ କରନ୍ତି ନାହିଁ । ଭୀମଭୋଇଙ୍କ ସାହିତ୍ୟରେ ଏହାର ବିସ୍ତୃତ ବର୍ଣ୍ଣନା ରହିଛି ।

ଭୀମଭୋଇ ନିର୍ଭୀକ ଓ ସତ୍ୟବାଦୀ ଥିଲେ । ଆଚରଣ ଓ ଉଚାରଣ ମଧ୍ୟରେ ତାଙ୍କର କୌଣସି ପ୍ରଭେଦ ନଥିଲା । ସତ୍ୟରେ ଅଖଣ୍ଡ ବିଶ୍ୱାସ ରଖିବାକୁ ସେ ଅଲେଖ ବ୍ରହ୍ମଙ୍କୁ ନିବେଦନ ଜଣାଇ ଲେଖିଛନ୍ତି–

ସତ୍ୟରେ ମରିବି ସତ୍ୟରେ ତରିବି
ଏହି ଆଜ୍ଞା ମୋତେ ହେଉ

କହେ ଭୀମଭୋଇ ଏ ମର୍ତ୍ତ୍ୟମଣ୍ଡଳେ
ଯଶ ଅପଯଶ ଥାଉ ।

ଭୀମଭୋଇ ଗ୍ରନ୍ଥାବଳୀ

ଭୀମଭୋଇ ଯାହା ଲେଖିଛନ୍ତି, ସେଥିରେ ଭାବପ୍ରବଣତା ତଥା କଳ୍ପନା ଟିକେ ହେଲେ ନାହିଁ । ସବୁ ଅନୁଭବର କଥା । ମଣିଷକୁ ସତ୍ୟର ନିକଟବର୍ତ୍ତୀ ନକରାଇ ସତ୍ୟକୁ ମଣିଷ ନିକଟକୁ ଆଣିବାକୁ ସେ ଚେଷ୍ଟା କରିଛନ୍ତି । ତାଙ୍କ ମତରେ ଶ୍ରଦ୍ଧାରୁ ଭକ୍ତିର ଜନ୍ମ । ଭକ୍ତିର ଆଶ୍ରୟ ନେଲେ ନିଜ ଉପରେ ଅତୁଟ ଆସ୍ଥା ଆସିଯାଏ । ଅବଶ୍ୟ ଏହା ଶାସ୍ତ୍ରସମ୍ମତ ଏବଂ ଗୀତା ଭାଗବତର ମୁଖ୍ୟ ପ୍ରସଙ୍ଗ । ସନ୍ଥକବି କଷ୍ଟକୁ ଦୂର କରିବା ପାଇଁ ଅଲେଖ ବ୍ରହ୍ମଙ୍କଠାରେ ଅଖଣ୍ଡ ଭକ୍ତି ରଖିବାକୁ ପରାମର୍ଶ ଦେଇଛନ୍ତି । ଭକ୍ତି ମାୟାକୁ ଅତିକ୍ରମ କରେ । ଦୂରତାକୁ ମାନେନାହିଁ । କଠିନ ତତ୍ତ୍ୱକୁ ସହଜ କରେ ଏବଂ ତର୍କ ପ୍ରଧାନ ସଂଶୟକୁ ବଳିଷ୍ଠ ଆତ୍ମୀୟତା ଦ୍ୱାରା ଅତିକ୍ରମ କରେ ।

କବି ଶୂନ୍ୟବାଦୀ ଥିବାରୁ ତାଙ୍କ ରଚନାର ପ୍ରତିଟି ସ୍ତରରେ ଶୂନ୍ୟବାଦ ଆତ୍ମପ୍ରକାଶ କରିଛି । ତାଙ୍କ ଧାର୍ମିକ ଚେତନାର ବଳିଷ୍ଠ ଭିତ୍ତିଭୂମି ହେଲା ଶୂନ୍ୟ ବ୍ରହ୍ମଙ୍କ ଉପାସନା, ଯାହାର ରୂପରେଖ ନାହିଁ । ଯିଏ ଶୂନ୍ୟ ଦେହରେ ବିରାଜିତ ସେ ହିଁ ଏ ବିଶ୍ୱବ୍ରହ୍ମାଣ୍ଡର ପ୍ରଭୁ, ରକ୍ଷକ ଓ ସର୍ବବ୍ୟାପୀ । କବିଙ୍କର ପ୍ରତିଟି ଭଜନ ନିର୍ଗୁଣ ବ୍ରହ୍ମାନୁଭୂତି ଓ ଗଭୀର ତତ୍ତ୍ୱ ଉପରେ ପ୍ରତିଷ୍ଠିତ । ଭଜନମାଳାରେ ତେଣୁ ସେ ଲେଖିଛନ୍ତି–

'ଶୂନ୍ୟବ୍ରହ୍ମ କୁହେ ଦେଖିବ ଯେମନ୍ତେ ତୋଳେ
କଳ୍ପନାକୁ କାଟି ମୃତ୍ୟୁ ଜନ୍ମମେଣ୍ଟି
ଏକୋଇଶ ପୁରକୁ ଦିଶି ଗଲେ ।'

ବ୍ରହ୍ମଙ୍କୁ ଚିହ୍ନିବା ଏତେ ସହଜ କଥାନୁହେଁ, ତାହା ସବୁଠାରୁ କଷ୍ଟକର । ଯେଉଁମାନେ ବ୍ରହ୍ମକୁ ଚିହ୍ନିପାରନ୍ତି, ସେମାନେ ଏ ମାୟାଯୁକ୍ତ ସଂସାରରୁ ମୁକ୍ତିଲାଭ କରନ୍ତି । ଶ୍ରୀମଦ୍ ଭଗବଦ୍ ଗୀତାର ସପ୍ତମ ଅଧ୍ୟାୟର ଚତୁର୍ଦ୍ଦଶ ଶ୍ଳୋକରେ ତେଣୁ କୁହାଯାଇଛି–

''ଦୈବୀହ୍ୟେଷା ଗୁଣମୟୀ ମମମାୟା ଦୂରତ୍ୟୟା
ମାମେବ ଯେ ପ୍ରପଦ୍ୟନ୍ତେ ମାୟାମେଣଂ ତରନ୍ତିତେ'' ।

ସ୍ୱୟଂ ଅଲେଖ ହେଉଛନ୍ତି ଶୂନ୍ୟବ୍ରହ୍ମ । ସେ ହିଁ ପ୍ରକୃତ ଗୁରୁ । ତାଙ୍କଠାରେ ଶରଣାପନ୍ନ ହେଲେ ମୁକ୍ତିଲାଭ ସହଜ ଓ ସୁଗମ ହୁଏ ବୋଲି ମହିମା ଧର୍ମର ପ୍ରଗାଢ଼ ବିଶ୍ୱାସ । ତେଣୁ ଭୀମଭୋଇ କହିଛନ୍ତି– 'ପ୍ରସନ୍ନ ହୋଇଲେ ବ୍ରହ୍ମ ତୁଟିଯାଇ ମାୟାଭ୍ରମ' । ସନ୍ଥକବିଙ୍କ ରଚନାକୁ ଅନୁଧ୍ୟାନ କରି କେତେକ ଆଲୋଚକ ଏହି ଧର୍ମକୁ ଏକ ନୂତନ ଧର୍ମ ଭାବରେ ଗ୍ରହଣ କରିବାକୁ ଅସ୍ୱୀକାର କରନ୍ତି । ବୌଦ୍ଧ ଧର୍ମର ଶୂନ୍ୟବାଦ ଦ୍ୱାରା ଏହା ବହୁଳ ଭାବରେ ପ୍ରଭାବିତ ହୋଇଥିବାରୁ ମହିମା ଧର୍ମକୁ ବୌଦ୍ଧଧର୍ମର ଅଂଶବିଶେଷ ରୂପେ ସ୍ୱୀକୃତି ଦେବାରେ ସେମାନେ ଅଧିକ ଆଗ୍ରହୀ । ହେଲେ ଅଧ୍ୟାପକ ବିଜୟାନନ୍ଦ କର ତାଙ୍କର ପ୍ରବନ୍ଧରେ ମହିମା ଧର୍ମକୁ ବୌଦ୍ଧ, ଅଦ୍ୱୈତ, ବିଶିଷ୍ଟ ଦ୍ୱୈତ ଏବଂ ବୈଷ୍ଣବ ଧର୍ମ ମିଶ୍ରଣର ଏକ ଅଭିନବ ରୂପ ଭାବରେ ଗ୍ରହଣ କରିଛନ୍ତି । ଭୀମଭୋଇଙ୍କ ସାହିତ୍ୟର ଦାର୍ଶନିକ ବିଚାରରେ ଏହା କିନ୍ତୁ ପ୍ରକୃତି ହିନ୍ଦୁଧର୍ମର ଏକ ଶାଖା । ଏଥିରେ କଠୋର ନୀତିମୟ ଜୀବନଯାପନର ମାର୍ଗ ପ୍ରଦର୍ଶିତ । ଜଣେ ଅଲେଖ ଧର୍ମାବଲମ୍ବୀ ସାଧୁ କିପରି ହେବା ଉଚିତ ଏବଂ ସଂସାରୀ ଲୋକର ଜୀବନଯାତ୍ରା କିଭଳି ନିରାଡମ୍ବର, ସରଳ ଏବଂ କର୍ତ୍ତବ୍ୟନିଷ୍ଠ ହେବା ଦରକାର, ତାହା ଭୀମ ଭୋଇଙ୍କ ରଚନାରେ ପ୍ରକାଶିତ । ସର୍ବୋପରି ତାଙ୍କ ରଚନାବଳୀର ବହୁସ୍ଥାନରେ 'ବ୍ରହ୍ମ'କୁ ପ୍ରାଧାନ୍ୟ ଦିଆଯବା ସହ ଏହାକୁ 'ଶୂନ୍ୟ' ବୋଲି ଆଖ୍ୟାୟିତ କରାଯାଇଛି । 'ଏକ ବ୍ରହ୍ମ ଦ୍ୱିତୀୟ ନାସ୍ତି, ଏହାହିଁ ତାଙ୍କ ଧର୍ମ ଓ ଦର୍ଶନର ଭିତ୍ତିଭୂମି ଏବଂ ଭୀମଭୋଇଙ୍କ ସାହିତ୍ୟର ବର୍ଣ୍ଣିତ ବିଷୟ ବସ୍ତୁର ମୁଖ୍ୟ ପ୍ରସଙ୍ଗ ।

ଓଡ଼ିଆ ବିଭାଗ
ଏରଞ୍ଚ କଲେଜ,
ଏରଞ୍ଚ, କଟକ



# ଓଡ଼ିଶାର ସଂସ୍କୃତିରେ ପର୍ବପର୍ବାଣି

ଅନସୂୟା ସ୍ୱାଇଁ

ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ପୁଣ୍ୟଭୂମି ଏଇ ଆମ ଉତ୍କଳ ପ୍ରଦେଶ । ଯେଉଁ ମାଟିର ପାଣି ପବନରେ ରହିଛି ଅଦ୍ଭୁତପୂର୍ବ ମାଦକତାକଳା ଯାହାର ସୁଦୂର ପ୍ରସାରୀ, ଶିଳ୍ପୀ ଯାହାର ଚିର ଅମର, ଶିଳ୍ପ ଯାହାର ବହୁମୁଖୀ, ସେହି ଉତ୍କଳର ସଂସ୍କୃତି ମଧ୍ୟ ମହାନ । ସାମ୍ୟ ମୈତ୍ରୀର ଜୟଗାନ କରି ଅନ୍ୟକୁ ଭଲ ପାଇବା ଏ ସଂସ୍କୃତିର ମୁଖ୍ୟ ଉଦ୍ଦେଶ୍ୟ । ଜୀବନର ଅନେକ ଘାତ ପ୍ରତିଘାତ ସୁଖ ଦୁଃଖ ଓ ଅଭାବ ଅସୁବିଧା ସତ୍ତ୍ୱେ ଏହି ସଂସ୍କୃତି ହିଁ ବିବେଚିତ ହୋଇଥାଏ ଆନନ୍ଦ ଉପଭୋଗର ସାମଗ୍ରୀ ଭାବରେ । ବାରମାସରେ ତେର ପର୍ବ ଏବେବି ଓଡ଼ିଶାର ଘରେ ଘରେ ସୃଷ୍ଟି କରିଥାଏ ଏକ ଅଭିନବ ପରିବେଶ । ଆଧୁନିକତାର ଆଦବକାଇଦା ମଧ୍ୟରେ ଏବେବି ଭଉଣୀଟିଏ ଭାଇର ଅଶେଷ ମଙ୍ଗଳ କାମନା କରି ଭାଇର ହାତରେ ବାନ୍ଧି ଦେଇଥାଏ ରେଶମର ଡ଼ୋରିଟିଏ । ଏବେବି ରଜ, କୁମାର ପୂର୍ଣ୍ଣିମା, ଜହ୍ନିଓଷା, ନୂଆଖାଇ ଓ ଶୀତଳଷଷ୍ଠୀ ପ୍ରଭୃତି ଦିନମାନଙ୍କରେ ମଣିଷର ମନ ଚାଲି ଯାଇଥାଏ ଭିନ୍ନ ଏକ ପୃଥିବୀକୁ । ଯେଉଁଠି ବି ପରସ୍ପର ମଧ୍ୟରେ ଥିବା ଛୋଟ ବଡ଼ କଳହ ବିବାଦକୁ ଭୁଲିଯାଇ ସମସ୍ତେ ଏକାକାର ହୋଇଯାଆନ୍ତି ସାମ୍ୟ, ମୈତ୍ରୀ ଓ ପ୍ରୀତିର ମହାସ୍ରୋତରେ, ଏହା ହିଁ ଆମମାନଙ୍କର ଉତ୍କଳୀୟ ସଂସ୍କୃତି । ପ୍ରତ୍ୟେକଙ୍କୁ ପ୍ରାଣଭରି ଭଲପାଇବା ଓ ଅନ୍ୟର ଅଭାବ ଅସୁବିଧାକୁ ନିଜର ମଣି ଅନ୍ୟର ଖୁସିରେ ହସିବା ଓ ଦୁଃଖରେ କାନ୍ଦିବା ହିଁ ହେଉଛି ଆମର ସଂସ୍କୃତି । ‘‘ଆମର ସଂସ୍କୃତି ଏତେ ବ୍ୟାପକ, ବଳିଷ୍ଠ ଓ ଋଦ୍ଧିମନ୍ତ ଯେ ଆଧୁନିକତାର ଅନେକ ଛାପ ବାଜି ମଧ୍ୟ ତାହା ନିଷ୍ପତ୍ତି ହେବା ପରିବର୍ତ୍ତେ ହୋଇ ଉଠିଛି ଜାଜ୍ଜ୍ୱଲ୍ୟମାନ । ଯାହା ଦିନେ ବଣମଲ୍ଲୀ ସଦୃଶ କେବଳ ସେଇ ବଣ ଇଲାକାରେ ବା ପଲ୍ଲୀ ଅଞ୍ଚଳରେ ପ୍ରଦର୍ଶିତ ହୋଇ ପଲ୍ଲୀ ଜନତାର ମନୋରଂଜନ ସାମଗ୍ରୀ ହୋଇଥିଲା, ତାହା ଆଜି ପ୍ରତିଷ୍ଠିତ ରଙ୍ଗ ମଞ୍ଚ ଏପରିକି ବିଶ୍ୱ ଦରବାରରେ ମଧ୍ୟ ପ୍ରଦର୍ଶିତ ହୋଇ ସମ୍ମାନିତ କରିପାରିଛି ଉତ୍କଳକୁ । ଡାଲଖାଇ, ରସରକେଲି, ହୋଲି, କୁମାର ପୂର୍ଣ୍ଣିମା ପ୍ରଭୃତି ନାଚ କେବଳ ଉତ୍କଳରେ ସୀମାବଦ୍ଧ ନହୋଇ ଅନ୍ୟାନ୍ୟ ରାଜ୍ୟରେ ମଧ୍ୟ ତାର ଆଗମନି ବାର୍ତ୍ତା ପ୍ରଚାର କଲାଣି ।’’ ରଜ, କୁମାର ପୂର୍ଣ୍ଣିମା, ଜହ୍ନିଓଷା ପ୍ରଭୃତି ପର୍ବପର୍ବାଣିମାନଙ୍କରେ ଧନୀ ଦରିଦ୍ର, ଉଚ୍ଚନୀଚ ସବୁ ଶ୍ରେଣୀର ଝିଅମାନଙ୍କର ସମବେତ ଦୃଶ୍ୟ ବାସ୍ତବିକ ଅତ୍ୟନ୍ତ ମନୋରମ । ଜହ୍ନ ଆସିବାର ଯଥେଷ୍ଟ ପୂର୍ବରୁ ପୂଜା ପାଇଁ ଆୟୋଜନ, ନୂତନ ବସ୍ତ୍ର ପରିଧାନ ଓ ବିଭିନ୍ନ ସାଜସଜ୍ଜା ମଧ୍ୟରେ ସେମାନଙ୍କର ଗତିବିଧି, ଥଟ୍ଟା ପରିହାସ ପଲ୍ଲୀଭୂମିରେ ସୃଷ୍ଟି କରିଥାଏ ଏକ ଉଲ୍ଲସିତ ପରିବେଶ ।



ଉତ୍କଳୀୟ ପର୍ବପର୍ବାଣିରେ ତାର ସଂସ୍କୃତିର ପ୍ରତିଫଳନ ଦେଖିବାକୁ ମିଳିଥାଏ । ଉତ୍କଳୀୟ ପର୍ବପର୍ବାଣି ସାଧାରଣତଃ ସୂର୍ଯ୍ୟ, ଚନ୍ଦ୍ରର ଗତି ବା କୃଷିଭିତ୍ତିକ ହୋଇଥାଏ । ଭିନ୍ନ ଭିନ୍ନ ପର୍ବପର୍ବାଣିରେ ଭିନ୍ନ ଭିନ୍ନ ଦେବାଦେବୀଙ୍କୁ ଆରଧନା କରାଯାଇ ଥାଏ । ଏହି ପର୍ବପର୍ବାଣି ଧର୍ମଭିତ୍ତିକ ହେଲେ ମଧ୍ୟ କର୍ମକ୍ଲାନ୍ତ ମଣିଷକୁ ମନୋରଂଜନର ଖୋରାକ ଯୋଗାଇଥାଏ । ଓଡ଼ିଶାରେ ଭିନ୍ନଭିନ୍ନ ପ୍ରକାର ପର୍ବପର୍ବାଣି ପାଳନ କରାଯାଇଥାଏ । ଏହି ପର୍ବପର୍ବାଣି ମଧ୍ୟରୁ କେତେକ ଓଡ଼ିଶାର ମନ୍ଦିରଗୁଡ଼ିକ ସହିତ ସଂପୃକ୍ତ । ଏହି ମନ୍ଦିରର ପର୍ବକୁ ସାଧାରଣତଃ ଯାତ୍ରା ଭାବରେ ଅଭିହିତ କରାଯାଇଥାଏ । ସେହି ଯାତ୍ରାଗୁଡ଼ିକ ମଧ୍ୟରେ ଝୁଲଣ ଯାତ୍ରା, ସ୍ନାନଯାତ୍ରା, ଚନ୍ଦନଯାତ୍ରା, ଦୋଳଯାତ୍ରା, ରଥଯାତ୍ରା ଅନ୍ୟତମ । ଏହି ଯାତ୍ରାମାନଙ୍କର ଜନସମାବେଶ ମଣିଷ ମଣିଷ ମଧ୍ୟରେ ଭ୍ରାତୃଭାବ, ଶ୍ରଦ୍ଧାଭାବ ସୃଷ୍ଟି କରିବାରେ ସାହାଯ୍ୟ କରିଥାଏ ।

ଓଡ଼ିଶାରେ କେତେକ ସାମାଜିକ ପର୍ବ ପାଳିତ ହେବାର ମଧ୍ୟ ଦେଖାଯାଇଥାଏ । ସେଗୁଡ଼ିକ ହେଲା– ରଜସଂକ୍ରାନ୍ତି, କୁମାରପୂର୍ଣ୍ଣିମା, ପ୍ରଥମାଷ୍ଟମୀ ଅନ୍ୟତମ । ଏହି ପର୍ବମାନଙ୍କରେ ଓଡ଼ିଶାର ଘରେ ଘରେ ହସ ଉଲ୍ଲାସ, ପିଠାପଣା ଆଦି ଦେଖିବାକୁ ମିଳିଥାଏ ।

ଉତ୍କଳୀୟ ସଂସ୍କୃତିରେ କେତେକ କୃଷିଭିତ୍ତିକ ପର୍ବପର୍ବାଣି ମଧ୍ୟ ପାଳନ କରାଯାଇଥାଏ । ସେମାନଙ୍କ ମଧ୍ୟରୁ ଅକ୍ଷୟ ତୃତୀୟା, ଗହ୍ମାପୂର୍ଣ୍ଣିମା, ମାଣବସା ଗୁରୁବାର, ନୂଆଖାଇ ଅନ୍ୟତମ ।

ଉତ୍କଳୀୟ ସଂସ୍କୃତିରେ କେତେକ ପର୍ବପର୍ବାଣିକୁ ଓଷା ବ୍ରତ ଭାବରେ ପାଳନ କରାଯାଇଥାଏ । ସେଗୁଡ଼ିକ ମଧ୍ୟରୁ ଜନ୍ମାଷ୍ଟମୀ, ଦୁର୍ଗାପୂଜା, କାଳୀପୂଜା, ଦୀପାବଳୀ, କାର୍ତ୍ତିକ ପୂର୍ଣ୍ଣିମା, ଶିବରତ୍ରୀ, ସାବିତ୍ରୀ ବ୍ରତ ଆଦି ପ୍ରଧାନ । ଉତ୍କଳୀୟ ସଂସ୍କୃତି ଆମର ବିଶ୍ୱାସ କରେ ଯେ ଓଷା ବ୍ରତ ମଣିଷକୁ ସ୍ୱାସ୍ଥ୍ୟବାନ, ଜିତେନ୍ଦ୍ରିୟ କରିବା ସହିତ ମଣିଷର ମନ ଓ ହୃଦୟକୁ ନିର୍ମଳ କରିବାରେ ସାହାଯ୍ୟ କରିଥାଏ ।

ଅକ୍ଷୟ ତୃତୀୟା ଓଡ଼ିଶାର କୃଷି ପର୍ବମାନଙ୍କ ମଧ୍ୟରୁ ଅନ୍ୟତମ । ଏହିଦିନ କୃଷକ ତାର ବିହନ ବୁଣା କାର୍ଯ୍ୟ ଆରମ୍ଭ କରିଥାଏ । କୃଷକଟି ସକାଳୁ ଉଠି ଗାଧୁଆ ପାଧୁଆ ସାରି ନୂଆ ବସ୍ତ୍ର ପରିଧାନ କରି ନୂଆ ଟୋକେଇରେ ବିହନ ଧରି ଚାଷ ଜମିକୁ ଯାଇଥାଏ ବିହନ ଅନୁକୂଳ କରିବାକୁ । ଏହି ପର୍ବରେ ଲକ୍ଷ୍ମୀ ମା'ଙ୍କୁ ପୂଜା କରାହୋଇ ଭୋଗ ଅର୍ପଣ କରାଯାଇଥାଏ । ଏଥିରେ ଶାକାହାର ପଂକ୍ତି ଭୋଜନର ଆୟୋଜନ କରାଯାଇଥାଏ । ଏହିଦିନ ଓଡ଼ିଶାର ଆରାଧ୍ୟ ଦେବତା ମହାପ୍ରଭୁ ଜଗନ୍ନାଥଙ୍କର ଚନ୍ଦନ ଯାତ୍ରା ଆରମ୍ଭ ହୋଇଥାଏ । ''ଧର୍ମୀୟ ମତାନୁସାରେ ଏହି ଦିନ ଗଙ୍ଗାଦେବୀ ପୃଥିବୀ ପୃଷ୍ଠକୁ ଅବତରଣ କରିଥିଲେ । କୃଷି ପାଇଁ ଜଳ ନିତାନ୍ତ ଦରକାରୀ ଓ ଜଳର ଦେବୀ ହେଉଛନ୍ତି ଗଙ୍ଗା । ତେଣୁ ଏହି ପବିତ୍ର ଦିନରେ କୃଷିକାର୍ଯ୍ୟ ଆରମ୍ଭ କରାଯାଇଥାଏ ।''

ଚନ୍ଦନ ଯାତ୍ରା, ଜଗନ୍ନାଥ ଯାନିଯାତ୍ରାର ଶେଷ ପର୍ବ । ଚନ୍ଦନଯାତ୍ରା ଅକ୍ଷୟ ତୃତୀୟାଠାରୁ ଆରମ୍ଭ ହୋଇ ୨୧ ଦିନ ଧରି ଲାଗି ରହେ । ଉତ୍କଳୀୟ ସଂସ୍କୃତିରେ ମଣିଷ ଜୀବନ ଯାପନ ଶୈଳୀ ସହିତ ତାର ପରମ ଆରାଧ୍ୟ ଭଗବାନଙ୍କର ଜୀବନ ଜାପନ ଶୈଳୀର ବହୁତ ସାଦୃଶ୍ୟ ପରିଲକ୍ଷିତ ହୋଇଥାଏ । ଏହି ସମୟରେ ବହୁତ ଗରମ ଅନୁଭୂତ ହୁଏ । ସେହିପରି ଆରାଧ୍ୟ ଦେବତାଙ୍କ ପାଖରେ ଚନ୍ଦନ ଓ ସୁଶୀତଳ ଜଳ ଲାଗି କରାଯାଇଥାଏ । ଏହି ପର୍ବ ଉଭୟ ଶିବ ଓ ବିଷ୍ଣୁଙ୍କ ମନ୍ଦିରରେ ପାଳିତ ହୋଇଥାଏ । ଏହିପର୍ବ ପୁରୀରେ ବହୁତ ଯାକଜମକରେ ପାଳନ କରାଯାଇଥାଏ । ଯାହା ଲକ୍ଷ ଲକ୍ଷ ଶ୍ରଦ୍ଧାଳୁ ଭକ୍ତଙ୍କୁ ପୁରୀ ଯିବାକୁ ଆକୃଷ୍ଟ କରିଥାଏ ।

ଶୀତଳଷଷ୍ଠୀ ପର୍ଶ୍ଚିମ ଓଡ଼ିଶାର ଏକ ଗଣପର୍ବ । ''ଶିବପୁରାଣ ଅନୁସାରେ ଜାଗର ଅମାବାସ୍ୟା ପରେ ଶିବ ଭୟଙ୍କର ରୂପ ଧାରଣ କରିଥିଲେ ଓ ପରେ ପାର୍ବତୀଙ୍କ ସହିତ ବିବାହ କରି ଶୀତଳ ବା ଶାନ୍ତ ହୋଇଥିଲେ । ତେଣୁ କରି ଶିବପାର୍ବତୀଙ୍କ ବିବାହ ଦିବସକୁ ଶୀତଳଷଷ୍ଠୀ ରୂପେ ପାଳନ କରାଯାଏ ।'' ଏହା ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ଷଷ୍ଠୀ ଦିନ ପଡ଼ିଥାଏ ।

ଶୈବଧର୍ମ ଓଡ଼ିଶାରେ ବହୁ ପୁରାତନ । ଭୁବନେଶ୍ୱରରେ ଏହାର ନିଦର୍ଶନ ସ୍ୱରୁପ ରହିଛି ୫୦୦ରୁ ଅଧିକ ମନ୍ଦିର । ''ଭୁବନେଶ୍ୱରରେ ଥିବା ପରଶୁରାମେଶ୍ୱର ମନ୍ଦିର କାନ୍ଥରେ ଶିବପାର୍ବତୀଙ୍କ ବିବାହ ମୂର୍ତ୍ତି ଖୋଦିତ ହୋଇଛି । ଏହି ମନ୍ଦିର ୬ଷ୍ଠ–୭ମ ଶତାବ୍ଦୀର । ତେଣୁ ଏହା ବିଶ୍ୱାସ କରାଯାଏ ଯେ ଏହି ପର୍ବ ବୋଧେ ୬ଷ୍ଠ–୭ମ ଶତାବ୍ଦୀରୁ ପ୍ରଚଳିତ ହୋଇଆସୁଛି ।''

ସାବିତ୍ରୀ ବ୍ରତ ଓଡ଼ିଆ ନାରୀମାନଙ୍କ ପାଇଁ ଏକ ବିଶେଷ ପର୍ବ । ଏହି ପର୍ବ ଜ୍ୟେଷ୍ଠମାସ ଅମାବାସ୍ୟା ତିଥିରେ ପଡ଼ିଥାଏ । ଏହି ପର୍ବରେ ଓଡ଼ିଆ ସଧବା ନାରୀ ତାର ପତିର ଦୀର୍ଘ ଜୀବନ କାମନା କରି ଏହି ବ୍ରତ ନିଷ୍ଠାର ସହିତ କରିଥାଏ । ଏହି ବ୍ରତରେ

ମାତା ସାବିତ୍ରୀଙ୍କୁ ଆରାଧ୍ୟ ଦେବତା ରୂପେ ପୂଜା କରାଯାଇଥାଏ । ସାଧନାବଳରେ ପୃଥିବୀରେ ସବୁ କିଛି କାର୍ଯ୍ୟରେ ସିଦ୍ଧି ମିଳିପାରିବ, ଏହି ପର୍ବ ନାରୀମାନଙ୍କୁ ଶିକ୍ଷା ଦେଇଥାଏ । ଏହିଦିନ ସଧବା ନାରୀମାନେ ସକାଳୁ ସ୍ନାନ କରି ନୂଆ ବସ୍ତ୍ର ପରିଧାନ କରି ତାଙ୍କର ଆରାଧ୍ୟ ଦେବୀ ସାବିତ୍ରୀଙ୍କର ପୂଜା ଅର୍ଚ୍ଚନା କରିଥାନ୍ତି । ଏହି ପର୍ବରେ ଫଳମୂଳ ଭୋଗ କରାଯାଇଥାଏ ଓ ଉପବାସ ରହିଥିବା ନାରୀ ଏହି ଭୋଗ ଖାଇ ବ୍ରତ ପାଳନ କରିଥାନ୍ତି ।

ଜଗନ୍ନାଥଙ୍କ ଯାତ୍ରା ମଧ୍ୟରେ ସ୍ନାନ ଯାତ୍ରା ଅନ୍ୟତମ । ''ସ୍କନ୍ଦପୁରାଣ ଅନୁସାରେ ରାଜା ଇନ୍ଦ୍ରଦ୍ୟୁମ୍ନ ଏହି ସ୍ନାନ ଯାତ୍ରା ଆରମ୍ଭ କରିଥିଲେ ।'' ଏହି ପର୍ବ ଜ୍ୟେଷ୍ଠ ପୂର୍ଣ୍ଣିମା ତିଥିରେ ପାଳିତ ହୋଇଥାଏ । ପୁରୀର ସ୍ନାନଯାତ୍ରା ଲକ୍ଷ ଲକ୍ଷ ଶ୍ରଦ୍ଧାଳୁ ଭକ୍ତଙ୍କୁ ଏକଜୁଟ ହେବାରେ ସାହାଯ୍ୟ କରିଥାଏ । ସ୍ନାନଯାତ୍ରାରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କୁ ସ୍ନାନ ବେଦୀ ଉପରକୁ ନିଆଯାଏ । ଏହି ସ୍ନାନ ବେଦୀଙ୍କୁ ଭଲଭାବରେ ସଜାଇ ଦିଆଯାଇଥାଏ । ସୁନା କୂଅରୁ ୧୩୦ ମାଠିଆ ପାଣି ଅଣାଯାଇ ରଖାଯାଇଥାଏ । ସେହି ପାଣିରେ ହଳଦୀ, ବେଣାଚେର, ଚନ୍ଦନ, ଅଗରୁ ଔଷଧୀୟ ଦ୍ରବ୍ୟ ପକାଯାଏ ଓ ଏକ ପ୍ରକାର ସ୍ୱତନ୍ତ୍ର ପଣ୍ଡାଙ୍କ ଦ୍ୱାରା ସ୍ନାନ କାର୍ଯ୍ୟ ସମାପନ କରାଯାଏ ।

ରଥଯାତ୍ରା ଜଗନ୍ନାଥଙ୍କର ଶ୍ରେଷ୍ଠ ଯାତ୍ରା । ଏହା ଆଷାଢ଼ ଶୁକ୍ଳ ଦ୍ୱିତୀୟା ତିଥିରେ ଅନୁଷ୍ଠିତ ହୋଇଥାଏ । ଏହା ମଧ୍ୟ ଗୁଣ୍ଡିଚା ଯାତ୍ରା ନାମରେ ବିଦିତ । କେତେକ ବିଶେଷଜ୍ଞଙ୍କ ମତରେ ରଥଯାତ୍ରା ବୌଦ୍ଧ ଧର୍ମରୁ ସୃଷ୍ଟି ଓ ଏହାପରେ ହିନ୍ଦୁ ଧର୍ମରେ ପ୍ରଚଳିତ । କେତେକ ବିଶେଷଜ୍ଞଙ୍କ ମତରେ ହିନ୍ଦୁଧର୍ମର ଜଗନ୍ନାଥ ମନ୍ଦିର ବୁଦ୍ଧ ମନ୍ଦିର ଉପରେ ପ୍ରତିଷ୍ଠା କରାଯାଇଛି ଏବଂ ବୁଦ୍ଧଙ୍କ ଦାନ୍ତ ଏହିଠାରେ ରହିଅଛି ।

ଚିତାଲାଗି ଅମାବାସ୍ୟା ଉତ୍କଳରେ ପାଳିତ ହେଉଥିବା ପର୍ବମାନଙ୍କ ମଧ୍ୟରୁ ଅନ୍ୟତମ । ଏହି ପର୍ବ ଶ୍ରାବଣ ଅମାବାସ୍ୟା ତିଥିରେ ପଡ଼ିଥାଏ । ଏହି ପର୍ବରେ ସୁନା ତିଆରି ଚିତା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପାଖରେ ଲାଗି ହୋଇଥାଏ । ଗହ୍ମାପୂର୍ଣ୍ଣିମା ଶ୍ରାବଣ ପୂର୍ଣ୍ଣିମା ତିଥିରେ ପଡ଼ିଥାଏ । ହିନ୍ଦୁ ଧର୍ମରେ ଜୀବଜନ୍ତୁ ବୃକ୍ଷଲତା ଯାହା ମଣିଷର ଉପକାର କରନ୍ତି ତାଙ୍କୁ ପୂଜା କରିବାର ମଧ୍ୟ ବିଧି ଅଛି । ଏହିଦିନ ମଧ୍ୟ ବଳଭଦ୍ରଙ୍କ ଜନ୍ମ ଦିବସ ପାଳିତ ହୋଇଥାଏ । ଏହିଦିନ ଗାଈ, ବଳଦମାନଙ୍କୁ ବନ୍ଦାପନା କରାଯାଇ ବିଭିନ୍ନ ପ୍ରକାର ସୁଖାଦ୍ୟ ଅର୍ପଣ କରାଯାଇଥାଏ । ଏହି ଦିନକୁ ମଧ୍ୟ ରକ୍ଷାପୂର୍ଣ୍ଣିମା କୁହନ୍ତି । ଏହି ଦିନ ଭଉଣୀ ତାର ଭାଇ ହାତରେ ରେଶମୀ ଡ଼ୋରି ବାନ୍ଧି ଦେଇଥାଏ । ଏହି ପୂର୍ଣ୍ଣିମାକୁ ମଧ୍ୟ ଝୁଲଣ ପୂର୍ଣ୍ଣିମା କହନ୍ତି । ଏହିଦିନ ଠାକୁରଙ୍କୁ ଝୁଲଣରେ ଝୁଲା ଯାଇଥାଏ । ସାଧାରଣତଃ ଏହା ବିଷ୍ଣୁ ମନ୍ଦିରରେ ପାଳନ କରାଯାଇଥାଏ ।

ଭାଦ୍ରବ ମାସର ପ୍ରତି ରବିବାର ଦିନ ଉତ୍କଳୀୟ ଝିଅମାନେ ଏକ ପୂଜା କରନ୍ତି । ଏହା ଖୁଦୁରୁକୁଣୀ ନାମରେ ପରିଚିତ । ଏହି ଦିନ ମାତା ମଙ୍ଗଳାଙ୍କୁ ପୂଜା କରାଯାଇଥାଏ । ସକାଳୁ ଉଠି ଝିଅମାନେ ବିଭିନ୍ନ ପ୍ରକାର ଫୁଲ ସଂଗ୍ରହ କରନ୍ତି । ତାପରେ ସମସ୍ତେ ମିଶି ନଦୀ ବା ପୋଖରୀରେ ସ୍ନାନ ସାରି ବାଲୁକା ପୂଜନ୍ତି । ସନ୍ଧ୍ୟା ସମୟରେ ମଙ୍ଗଳାଙ୍କର ପ୍ରତିମୂର୍ତ୍ତି ସମ୍ମୁଖରେ ଝିଅମାନେ ବସି ଖୁଦୁରୁକୁଣୀ ଓଷା ବହି ଗୀତ ଗାଇ ପୂଜା କରନ୍ତି । ଏହି ପୂଜା ଶେଷରେ ବିଭିନ୍ନ ଫଳ, ଫୁଲ, ପିଠା ଭୋଗ ଠାକୁରାଣୀଙ୍କୁ ଅର୍ପଣ କରନ୍ତି । ଭାଦ୍ରବ ମାସ ଶେଷ ହୋଇଗଲା ପରେ ମୂର୍ତ୍ତିକୁ ବିସର୍ଜନ କରାଯାଇଥାଏ ।

ଉତ୍କଳୀୟ ପର୍ବପର୍ବାଣିରେ ଗଣେଶ ଚତୁର୍ଥୀ ଅନ୍ୟତମ । ଏହା ଭାଦ୍ରବ ମାସ ଶୁକ୍ଳପକ୍ଷ ଚତୁର୍ଥୀ ତିଥିରେ ପଡ଼ିଥାଏ । ଏଥିରେ ଗଣେଶଙ୍କୁ ଆରାଧ୍ୟ ଦେବତା ରୂପେ ପୂଜା କରାଯାଇଥାଏ । ''ହିନ୍ଦୁଧର୍ମରେ ଗଣେଶଙ୍କୁ ସବୁ ଦେବତାଙ୍କ ଆଗରୁ ପୂଜା କରାଯାଏ । ଏହି ପୂଜା ସବୁ ସ୍କୁଲ କଲେଜରେ ଯାକଯମକରେ ପାଳନ କରାଯାଇଥାଏ । ଶେଷରେ ପୂଜା ପରଦିନ ମାଟିର ପ୍ରତିମାକୁ ବିସର୍ଜନ କରାଯାଇଥାଏ ।

ଦଶହରା ହିନ୍ଦୁମାନଙ୍କର ଏକ ବଡ଼ ପର୍ବ । ଏଥିରେ ଦୁର୍ଗାଙ୍କୁ ୫ଦିନ ଧରି ପୂଜା କରାଯାଇଥାଏ । ଏହା ଉତ୍କଳର ପୁରପଲ୍ଲୀ ସହର ବଜାର ସବୁଠାରେ ପାଳିତ ହୋଇଥାଏ । ଏହାକୁ ମଧ୍ୟ ବିଜୟା ଦଶମୀ ରୂପେ ପାଳନ କରାଯାଇଥାଏ । ଏଥିରେ ଗୃହଗୁଡ଼ିକୁ ସାଜସଜ୍ଜା କରାଯାଇଥାଏ ଓ ବିଭିନ୍ନ ପ୍ରକାର ପିଠାପଣା, ଭୋଜିଭାତର ଆୟୋଜନ କରାଯାଇଥାଏ ।

ଦୀପାବଳୀ ହେଉଛି ଅନ୍ଧାର ଉପରେ ଆଲୋକର ବିଜୟ ପର୍ବ । ଏହା କାର୍ତ୍ତିକ ଅମାବାସ୍ୟା ତିଥିରେ ପଡ଼ିଥାଏ । ଏହିଦିନ ମଧ୍ୟ କାଳୀପୂଜା ଅନୁଷ୍ଠିତ ହୋଇଥାଏ । ଓଡ଼ିଶାର ଘରେ ଘରେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ବଡ଼ବଡୁଆ ଡକାଯାଇଥାଏ ।

ପ୍ରଥମାଷ୍ଟମୀ ମାର୍ଗଶିର ଅଷ୍ଟମୀ ତିଥିରେ ପଡ଼ିଥାଏ । ଏଥିରେ ଗୃହର ଜ୍ୟେଷ୍ଠ ସନ୍ତାନ ନବବସ୍ତ୍ର ପରିଧାନ କରିଥାନ୍ତି ଏବଂ ତାଙ୍କୁ ବନ୍ଦାପନା କରାଯାଇଥାଏ । ଏହି ପର୍ବରେ ଏଣ୍ଡୁରିପିଠା ତିଆରି କରାହୋଇ ପରିବାର ସଦସ୍ୟଙ୍କ ମଧ୍ୟରେ ଅପାୟିତ

କରାଯାଇଥାଏ । ଏହିପର୍ବ ଉତ୍କଳୀୟମାନଙ୍କର ଜ୍ୟେଷ୍ଠମାନଙ୍କୁ ସମ୍ମାନ ଦେବାର ବିଧିକୁ ସୂଚନା ଦେବା ସହିତ ସେମାନଙ୍କର କର୍ତ୍ତବ୍ୟ ଓ ଦାୟିତ୍ୱ ବିଷୟରେ ମଧ୍ୟ ସୂଚନା ଦେଇଥାଏ ।

ମାଣବସା ଗୁରୁବାରକୁ ଉତ୍କଳୀୟମାନେ ଏକ ପବିତ୍ର ପର୍ବ ରୂପେ ପାଳନ କରିଥାନ୍ତି । ଏହିଦିନ ଧନସମ୍ପତ୍ତିର ଦେବୀ ଲକ୍ଷ୍ମୀଙ୍କୁ ପୂଜା କରାଯାଇଥାଏ । ନୂଆ ଅରୁଆ ଚାଉଳ ଓ ପାଣିରେ ତିଆରି ଆଣରେ ଉତ୍କଳୀୟ ନାରୀମାନେ ଘରେ ଝୋଟି ପକାଇ ଥାଆନ୍ତି । ଘରଗୁଡ଼ିକୁ ଧାନ ମେଣ୍ଟି ଏବଂ ଆମ୍ରପତ୍ର ଆଦିରେ ସଜାଇ ଦିଆଯାଇଥାଏ । ନୂଆ ଧାନରୁ ତିଆରି କରାଯାଇଥିବା ଚାଉଳରେ ଖିରି ଏବଂ ପିଠା କରାଯାଇ ଭୋଗ ଅର୍ପଣ କରାଯାଇଥାଏ । ଏହି ପର୍ବ ଧନଧାନ୍ୟକୁ ସଠିକ୍ ଭାବରେ ଉପଯୋଗ କରିବାକୁ ପ୍ରବର୍ତ୍ତାଇଥାଏ, ନଚେତ୍ ମଣିଷକୁ ଦୁଃଖ ଭୋଗ କରିବାକୁ ପଡ଼ିବ ତାହାର ସୂଚନା ଦେଇଥାଏ ।

ସରସ୍ୱତୀ ପୂଜା ମଧ୍ୟ ଉତ୍କଳୀୟ ପର୍ବପର୍ବାଣିର ଏକ ଅଂଶ ବିଶେଷ । ପୁରାଣ ଶାସ୍ତ୍ରର ଅନୁଧ୍ୟାନ କଲେ ଜଣାଯାଏ ଯେ ଏହି ପର୍ବ ବୈଦିକ ଯୁଗରୁ ପ୍ରଚଳିତ । ଏହି ପର୍ବ ସ୍କୁଲ କଲେଜ୍ ଶିକ୍ଷାନୁଷ୍ଠାନମାନଙ୍କରେ ବିଶେଷ ଭାବରେ ପାଳନ କରାଯାଇଥାଏ । ଛାତ୍ର ଛାତ୍ରୀମାନେ ସକାଳୁ ଗାଧୁଆ ସାରି ନୂତନ ବସ୍ତ୍ର ପରିଧାନ କରି ସରସ୍ୱତୀଙ୍କ ପୂଜା ଅର୍ଚ୍ଚନା କରନ୍ତି ଓ ପୁଷ୍ପାଞ୍ଜଳି ଦେବା ପରେ ଭୋଗ ଖାଆନ୍ତି । ତା'ପରଦିନ ମୂର୍ତ୍ତିକୁ ବିସର୍ଜନ କରାଯାଇଥାଏ ।

ଫାଲଗୁନ୍ ଚତୁର୍ଦ୍ଦଶୀ ଦିନ ଶିବରାତ୍ରୀ ଉତ୍ସବ ପାଳନ କରାଯାଇଥାଏ । ଏହି ପୂଜାର ଆରାଧ୍ୟଦେବତା ଶିବ । ଶିବରାତ୍ରୀ ସବୁ ଶିବ ମନ୍ଦିରରେ ପାଳିତ ହୋଇଥାଏ । ଏଥିରେ ଶିବଲିଙ୍ଗଙ୍କୁ ବେଲପତ୍ର ପ୍ରଦାନ କରାଯାଇ ପୂଜା ଅର୍ଚ୍ଚନା କରାଯାଇଥାଏ । ଏହିଦିନ ଭକ୍ତମାନେ ଉପବାସ ଓ ଉଜାଗର ରହି ପୂଜା ଅର୍ଚ୍ଚନା କରିଥାନ୍ତି ।

ଦୋଳପୂର୍ଣ୍ଣିମା ଉପକୂଳବର୍ତ୍ତୀ ଅଞ୍ଚଳରେ ଏକ ଲୋକପ୍ରିୟ ପର୍ବ । ଫାଲଗୁନ୍ ପୂର୍ଣ୍ଣିମା ତିଥିରେ ଏହିପର୍ବ ପଡ଼ିଥାଏ । ଏଥିରେ ଚଣା, ବୁଟ ଆଦି ଠାକୁରଙ୍କ ପାଖରେ ଲାଗି ହୋଇଥାଏ । ଏଥିରେ ହୋଲି ବା ଅବିର ଖେଳର ଭୂମିକା ସ୍ୱତନ୍ତ୍ର ନିଆରା । ଏହି ପର୍ବ ଭ୍ରାତୃତ୍ୱଭାବ ସୃଷ୍ଟି କରିଥାଏ ।

ଉତ୍କଳର ପୁରପଲ୍ଲୀରେ ପାଳିତ ବିଭିନ୍ନ ସଂକ୍ରାନ୍ତି ମଧ୍ୟରୁ ଏହା ହେଉଛି ପ୍ରଥମ । ସୌର ମାସର ଗଣନା ଅନୁସାରେ ଏହି ସଂକ୍ରାନ୍ତି ପାଳିତ ହୁଏ । ସୌର ମାସ ଅନୁସାରେ ସୂର୍ଯ୍ୟ ଗୋଟିଏ ରାଶିରେ ଗୋଟିଏ ମାସ ଅବସ୍ଥାନ କରି ଏକ ମାସ ପରେ ଅନ୍ୟ ଏକ ରାଶିକୁ ଯାଆନ୍ତି । ପ୍ରଚଳିତ ପଞ୍ଜିକାନୁସାରେ ମହାବିଷୁବ ସଂକ୍ରାନ୍ତି ହେଉଛି ବର୍ଷର ପ୍ରଥମ ଦିନ । ଓଡ଼ିଶାରେ କେତେକ ପାଳିତ ପର୍ବପର୍ବାଣିଗୁଡ଼ିକ କୃଷିଭିତ୍ତିକ । ମହାବିଷୁବ ସଂକ୍ରାନ୍ତି ବେଳକୁ ଓଡ଼ିଶାର ପ୍ରତ୍ୟେକ ସ୍ଥାନରେ ଫସଲ ଅମଳ ସରି ଯାଇଥାଏ । ଓଡ଼ିଆ ବର୍ଷର ପ୍ରଥମ ଦିନଟିକୁ ସେମାନେ ଆନନ୍ଦ ପାଳନ କରିବାକୁ ଯାଇ ବିଭିନ୍ନ ଦେବ ମନ୍ଦିରମାନଙ୍କରେ ସ୍ୱତନ୍ତ୍ର ପୂଜା ସହିତ ଭୋଗରାଗ ଓ ହୋମାଦି କରନ୍ତି ।

ପ୍ରତ୍ୟେକ ବର୍ଷ ମକର ସଂକ୍ରାନ୍ତିଠାରୁ ସୂର୍ଯ୍ୟ କ୍ରମଶଃ ବିଷୁବ ରେଖା ଆଡ଼କୁ ଗତିକରେ । ମାର୍ଚ୍ଚ ୨୪ତାରିଖଠାରୁ ସୂର୍ଯ୍ୟ କର୍କଟକ୍ରାନ୍ତି ଆଡ଼କୁ ଆସୁଥିବାରୁ ସେହିଦିନଠାରୁ କ୍ରମଶଃ ସୂର୍ଯ୍ୟତାପ ପ୍ରଖର ହୁଏ ଓ ଅଧିକ ଗରମ ଅନୁଭୂତ ହୁଏ । ଏହି ସଂକ୍ରାନ୍ତି ବେଳକୁ ଭାରତର ଉତ୍ତର ପୂର୍ବାଞ୍ଚଳରେ ପ୍ରଚଣ୍ଡ ଗରମ ଅନୁଭୂତ ହୁଏ । ଏହି ଦିନ ସୂର୍ଯ୍ୟ ମେଷ ରାଶିକୁ ଗମନ କରନ୍ତି । ଏହି ଦିନଠାରୁ ଚୈତ୍ରମାସ ଆରମ୍ଭ ହୁଏ । ଗରିଷ୍ଠ ଖାଦ୍ୟ ସହଜରେ ହଜମ ହୋଇଥାଏ ବୋଲି ମନୁଷ୍ୟ ବୁଟଛତୁ, ଚାଉଳଛତୁ ପ୍ରଭୃତି ଖାଦ୍ୟ ଗ୍ରହଣ କରିଥାଏ । ସେସବୁ ଛତୁ ବ୍ୟତୀତ ବନ୍ଧୁବାନ୍ଧବ, ସାହିପଡ଼ିଶା ଓ ବ୍ରାହ୍ମଣମାନଙ୍କୁ ଏହି ଦିନ ପଣାରେ ଅପାୟିତ କରାଯାଇଥାଏ । ଏହିଦିନ ଭୀଷଣ ଗରମ ଅନୁଭୂତ ହୁଏ ବୋଲି ଏହି ସଂକ୍ରାନ୍ତିର ନାମ ବିଷୁବ ସଂକ୍ରାନ୍ତି । ପୁନଶ୍ଚ ଏହି ସଂକ୍ରାନ୍ତିରେ ବିଭିନ୍ନ ପଣାର ଆୟୋଜନ ହେଉଥିବାରୁ ଏହାର ଅନ୍ୟନାମ ହେଉଛି ପଣା ସଂକ୍ରାନ୍ତି ।

ମହାବିଷୁବ ସଂକ୍ରାନ୍ତି ସମୟବେଳକୁ ପୃଥିବୀ ପୃଷ୍ଠକୁ ଗ୍ରୀଷ୍ମର ଆଗମନ ହୋଇସାରିଥାଏ । ଫଳତଃ କୂଅ, ପୋଖରୀ କ୍ରମଶଃ ଶୁଖିଯାଏ । ଏଥିପାଇଁ ଜନସାଧାରଣ ଓ ପଥଚାରୀ ତୃଷାର୍ତ୍ତ ହୋଇ ଜଳ ଅନ୍ୱେଷଣ କରନ୍ତି । ଏହି ଦିବସଠାରୁ ଉତ୍କଳର ପ୍ରାୟ ସମସ୍ତ ସ୍ଥାନରେ ପଥିକମାନଙ୍କର ତୃଷ୍ଣା ପ୍ରଶମିତ କରିବା ପାଇଁ ଜଳଛତ୍ର ବ୍ୟବସ୍ଥା କରାଯାଏ । ଜୀବଜଗତକୁ ଏହି ଦିନଠାରୁ ଏକ ମାସ ପର୍ଯ୍ୟନ୍ତ ଜଳପ୍ରଦାନ କରାଯାଏ । ବିଶେଷ କରି ଉତ୍କଳୀୟ ଗ୍ରାମ୍ୟ ସଂସ୍କୃତିରେ ସେଥିପାଇଁ ଗୃହଦେବତା ବୃନ୍ଦାବତୀ ବା ଚଉରାମୂଳେ ଠେକିରେ ଜଳଦାନ କରାଯାଏ ସେଥିପାଇଁ ସେଥିରେ ଏକ କ୍ଷୁଦ୍ର କଣା କରାଯାଏ । ସେହି କ୍ଷୁଦ୍ରକଣା ଦେଇ ବୃକ୍ଷ ଜଳ ଗ୍ରହଣ କରିଥାଏ । ତେଣୁ ଏହି ସଂକ୍ରାନ୍ତିର ଅନ୍ୟନାମ ହେଉଛି ଜଳସଂକ୍ରାନ୍ତି ।

ଝାମୁଯାତ୍ରା ହେଉଛି ଓଡ଼ିଶାର ଏକ ଲୋକନୃତ୍ୟ । ଏହି ଯାତ୍ରା ମହାବିଷୁବ ସଂକ୍ରାନ୍ତି ଦିନ ଉଦ୍‌ଯାପିତ ହୋଇଥାଏ । ଯେଉଁମାନେ ଝାମୁ ଯାତ୍ରା ଉଦ୍ଦେଶ୍ୟରେ ବ୍ରତାଦି ପାଳନ କରନ୍ତି, ସେମାନଙ୍କୁ ପାଟୁଆ କୁହାଯାଏ । ଏହି ପାଟୁଆରମାନଙ୍କର ଆରାଧ୍ୟ ଦେବତା ହେଉଛନ୍ତି ଶିବ ଓ ପାର୍ବତୀ । ଏମାନଙ୍କର ଶିବ ପାର୍ବତୀଙ୍କୁ ପୂଜା କରି ତାଙ୍କର ଆଶୀର୍ବାଦ କାମନା କରନ୍ତି । ପାଟୁଆମାନଙ୍କଠାରୁ ଆମ ସମାଜ ନିଜ କର୍ତ୍ତବ୍ୟରେ ଦୃଢ଼ ତଥା କଷ୍ଟସହ୍ୟ କରିବା ପାଇଁ ଶିକ୍ଷା ଲାଭ କରେ । କଣ୍ଟକିତ ଝାସୁ ବା ଅଗ୍ନିପଥରେ ଚାଲି ସମାଜର ସମସ୍ତ ବିପଦକୁ ବରଣ କରି ପାଟୁଆମାନେ ସମାଜକୁ ଶୃଙ୍ଖଳିତ ହେବାକୁ ପ୍ରେରଣା ଓ କର୍ତ୍ତବ୍ୟ ଶିକ୍ଷା ଦିଅନ୍ତି ।

ଉତ୍କଳର ପର୍ବପର୍ବାଣିଗୁଡ଼ିକୁ ତଥ୍ୟ ନିହିତ । ଉତ୍କଳର ଗବେଷକମାନେ ପର୍ବପର୍ବାଣିଗୁଡ଼ିକରେ ଗବେଷଣା କଲେ ବହୁ ବୈଜ୍ଞାନିକ ତଥ୍ୟ ଆବିଷ୍କୃତ ହୋଇପାରନ୍ତା । ଉତ୍କୃଷ୍ଟ ସାମାଜିକ ଓ ପାରିବାରିକ ଜୀବନ ପାଇଁ ଏଗୁଡ଼ିକରେ ମହାନ୍ ଆଦର୍ଶ ଲୁକ୍କାୟିତ ।

ସହାୟକ ଗ୍ରନ୍ଥ ଓ ପତ୍ରିକା

(୧) ଉତ୍କଳ ପ୍ରସଙ୍ଗ, ଅପ୍ରେଲ ୨୦୦୨

(୨) ଦିନେନ୍ଦ୍ର ନାଥ ପଟ୍ଟନାୟକ, ଫେଷ୍ଟିଭାଲସ୍ ଅଫ୍ ଓଡ଼ିଶା, ଭୁବନେଶ୍ୱର, ୧୯୮୨

(୩) ଶିବ ପୁରାଣ

(୪) ସ୍କନ୍ଦ ପୁରାଣ

(୫) K. C. Panigrahi, Date of Parsurameswara temple of Bhubaneswar, JRASB, XV, 1989

(୬) A. G. Mitchell, Hindu Gods and Godessess London, 1993

(୭) (K.S. Behera Brahmanical, Temples of Orissa, Orissa Review (Manument Special 1976)

ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର

# ଚାଚା ନେହେରୁ

ଦିଲ୍ଲୀପ କୁମାର ବେହୁରା

ଚାଚା ନେହେରୁଙ୍କ ଜନମ ଦିନ
ଗାଇବା ଆସରେ ଜାତିର ଗାନ
ଜାତୀୟ ପତାକା ତଳେ
ଧନ୍ୟ ପିତାମାତା ଧନ୍ୟ ଆମ ଦେଶ
ଧରିଥିଲା ତାଙ୍କୁ କୋଳେ ।
ଫିରିଙ୍ଗିର ସାଥେ ଲଢେଇ କରି
ଗାନ୍ଧୀଙ୍କ ଅଂହିସା ପଥକୁ ଧରି
ସଭିଙ୍କର ପ୍ରିୟ ହୋଇ
ପରାଧୀନ ଦେଶ ସ୍ୱାଧୀନ କରିଲେ
କେତେ ଦୁଃଖ କଷ୍ଟ ସହି।
ପ୍ରଥମ ପ୍ରଧାନମନ୍ତ୍ରୀ ହୋଇ
ପଞ୍ଚଶୀଳ ନୀତି ଧରାରେ ଥୋଇ
ରଖିଲେ ଦେଶର ଟେକ
ଶାନ୍ତି ମୈତ୍ରୀ ପ୍ରୀତି ବିଶ୍ୱରେ ବାଣ୍ଟିଲେ
ଧରି ଭାରତୀୟ ରୂପ ।

ଶିଶୁଙ୍କର ପାଇଁ ଜନମ ଦିନ
ଉତ୍ସର୍ଗିତ କରି ରଖିଲେ ମାନ
କିଏ ହେବ ତାଙ୍କ ପରି
କୁନି ନହ୍ନି ସବୁ ପ୍ରଣାମ କରନ୍ତି
ଗୋଲାପ ଫୁଲକୁ ଧରି ।
ବିଶ୍ୱ ଦରବାରେ ରଖିଲ ଟେକ
ଆମେ ହିଁ ଆମର ଅଟୁ ସ୍ୱରୂପ
ଗାଇବା ଦେଶର ଗାନ
ଯେତେ ଦୂରେ ଚାଚା ରହିଥାଅ ପଛେ
ପ୍ରଣିପାତ ଆମ ଘେନ ।

ଗ୍ରା–ପୋଖରିଆ, ପୋ– ମହୁଲିଆ
ଥାନା–ରାଜନଗର, ଜି– କେନ୍ଦ୍ରାପଡା

# ଅର୍କକ୍ଷେତ୍ର – କୋଣାର୍କ

ପ୍ରାଧ୍ୟାପିକା ସୁପ୍ରଭା ମିଶ୍ର

ଉତ୍କଳର ପୁଣ୍ୟକ୍ଷେତ୍ରମାନଙ୍କ ମଧ୍ୟରେ କୋଣାର୍କ ଅନ୍ୟତମ । ଏହା ପୁରୀଠାରୁ ୩୫ କି.ମି ଦୂରରେ ଉତ୍ତର ପୂର୍ବ ଦିଗରେ ଓ ଭୁବନେଶ୍ୱରଠାରୁ ୬୦କି.ମି. ଦୂରରେ ସମୁଦ୍ର କୂଳରେ ଅବସ୍ଥିତ । ବଙ୍ଗୋପ ସାଗରଠାରୁ ଏହାର ଦୂରତା ପ୍ରାୟ ୩ କି.ମି । ଅନ୍ୟାନ୍ୟ ପୁଣ୍ୟକ୍ଷେତ୍ରପରି ପୁରାଣକାରମାନେ କୋଣାର୍କକୁ ନାନା ଭାବରେ ଅଭିହିତ କରିଛନ୍ତି । ବ୍ରହ୍ମପୁରାଣ ଏହାକୁ କୋଣାଦିତ୍ୟ ଏବଂ ସ୍କନ୍ଦପୁରାଣ ଏହାକୁ ସୂର୍ଯ୍ୟକ୍ଷେତ୍ର ବୋଲି କହିଥାନ୍ତି । ପ୍ରାଚୀମାହାତ୍ମ୍ୟରେ ଏହା ଅର୍କକ୍ଷେତ୍ର ବା ରବିକ୍ଷେତ୍ର ନାମରେ ପରିଚିତ । ଭବିଷ୍ୟ ପୁରାଣରେ ମିତ୍ରବନ ଶାମ୍ବପୁରାଣରେ ମୈତ୍ରବନ ଏବଂ କପିଳସଂହିତାରେ ମୈତ୍ରେୟବନ ବା ରବିକ୍ଷେତ୍ର ଆଖ୍ୟାରେ କୋଣାର୍କ ଅଭିହିତ । ତେବେ ବର୍ତ୍ତମାନ ଏହା ମୁଖ୍ୟତଃ ଅର୍କକ୍ଷେତ୍ର, ରବିକ୍ଷେତ୍ର, ସୂର୍ଯ୍ୟକ୍ଷେତ୍ର ନାମରେ ପ୍ରସିଦ୍ଧ ।

ବ୍ୟାଖ୍ୟା କରିବାକୁଗଲେ ମିତ୍ର ବା ମୈତ୍ର ଶବ୍ଦର ଅର୍ଥ ବନ୍ଧୁ । ଶାମ୍ବଙ୍କର କୁଷ୍ଠରୋଗ ଆରୋଗ୍ୟରେ ଏହା ସହାୟ ହୋଇଥିବାରୁ ଏପରି ନାମକରଣ ହୋଇଥାଇପାରେ । ପୁଣି ମିତ୍ରର ଅର୍ଥ ସୂର୍ଯ୍ୟ ଏବଂ ସୂର୍ଯ୍ୟ ନିଜ ଗତିପଥରେ ଦ୍ୱାଦଶ ରାଶି ପାର ହୋଇ ଭ୍ରମଣ କରନ୍ତି । ପ୍ରତ୍ୟେକ ରାଶିରେ ଉପସ୍ଥିତ ହେଲାବେଳେ ସୂର୍ଯ୍ୟଙ୍କର ଭିନ୍ନଭିନ୍ନ ନାମ ଅଛି । ତେଣୁ ତାଙ୍କୁ ଦ୍ୱାଦଶ ଆଦିତ୍ୟ କୁହାଯାଏ । ମାର୍ଗଶିର ମାସରେ ସୂର୍ଯ୍ୟଙ୍କ ନାମ ମିତ୍ର ଓ ଦ୍ୱାଦଶ ଆଦିତ୍ୟଙ୍କ ମଧ୍ୟରୁ ସୂର୍ଯ୍ୟଙ୍କର ପ୍ରଥମ ନାମ ମିତ୍ର । ଅତଏବ ଏହି ସ୍ଥାନ ମିତ୍ର ବା ସୂର୍ଯ୍ୟଙ୍କର ପ୍ରିୟବନ ହୋଇଥିବାରୁ ଏହାର ନାମ ମିତ୍ରବନ ବା ମୈତ୍ରେୟବନ ହୋଇଥିବା ବିଶ୍ୱାସ କରାଯାଏ ।

ଶାମ୍ବ ପୁରାଣରେ ବର୍ଣ୍ଣିତ ଅଛି–ଶାମ୍ବ ଜାମ୍ବବତୀଙ୍କ ଗର୍ଭରେ କୃଷ୍ଣଙ୍କର ପୁତ୍ର । ସମୁଦାୟ ଯାଦବ କୂଳରେ ସେ ସବୁଠାରୁ ସୁନ୍ଦର ଏବଂ ତାଙ୍କର ଗର୍ବ ମଧ୍ୟ ଅସୀମ । ବୟସ, ଜ୍ଞାନ ଓ ପଦଗୌରବ ପ୍ରତି ତାଙ୍କର ଆଦୌ ଆସ୍ଥା ନଥିଲା । ଶ୍ରୀକୃଷ୍ଣ ଓ ତାଙ୍କର ପିତା ବସୁଦେବଙ୍କ ପର୍ଯ୍ୟନ୍ତ ସମସ୍ତ ଯାଦବମାନେ ବ୍ରହ୍ମର୍ଷି ନାରଦଙ୍କୁ ଅସାଧାରଣ ଭକ୍ତି କରୁଥିଲେ । କିନ୍ତୁ ଶାମ୍ବ ତାଙ୍କୁ ଉପହାସରେ ଉଡ଼େଇ ଦେଉଥିଲେ । ନାନା ଉପଦେଶ ଦ୍ୱାରା ନାରଦ ଶାମ୍ବଙ୍କର ସ୍ୱଭାବ ପରିବର୍ତ୍ତନ କରାଇବାକୁ ବହୁ ଚେଷ୍ଟାକଲେ, ମାତ୍ର ବିଫଳ ହେଲେ । ଶାମ୍ବ ଯେପରି ଦୁର୍ବୃତ୍ତ, ନାରଦ ସେହିପରି କଳହପ୍ରିୟ । ପରିଶେଷରେ ସେ ଶାମ୍ବଙ୍କର ସର୍ବନାଶ ସାଧନରେ କୃତସଂକଳ୍ପ ହେଲେ । କୃଷ୍ଣଙ୍କ ମନରେ ଶାମ୍ବଙ୍କ ପ୍ରତି ବିରକ୍ତି ଓ ବିଦ୍ୱେଷ ଜନ୍ମାଇବା ଆଶାରେ ନାରଦ ଦିନେ କୃଷ୍ଣଙ୍କୁ ଜଣାଇଲେ ଯେ, ତାଙ୍କର ଷୋଳସହସ୍ର ଗୋପନାରୀଙ୍କ ସହିତ ଶାମ୍ବଙ୍କର ପାପପ୍ରଣୟ ଅଛି ଏବଂ ତାଙ୍କର ଅଲୌକିକ ସୌନ୍ଦର୍ଯ୍ୟରେ ନାରୀମାନେ ସବୁ ଭୁଲି ଯାଉଛନ୍ତି । କୃଷ୍ଣ ଏ କଥାକୁ ହସି ଉଡ଼େଇ ଦେଲେ ଓ କହିଲେ ଶାମ୍ବଙ୍କର ବୟସ ଏତେଅଳ୍ପ ଓ ରୂପ,ଗୁଣ ଏଡ଼େ ମଧୁର, ସେ ନିଜ ବିମାତାମାନଙ୍କ ସହ ଅସଦାଚରଣ କରୁଥିବା ନିତାନ୍ତ ଅସମ୍ଭବ । ନାରଦ ଏହା ଶୁଣି ମନେ ମନେ ସ୍ଥିର କଲେ ଯେ କୃଷ୍ଣଙ୍କୁ ଦିନେ ସ୍ୱଚକ୍ଷୁରେ ଘଟଣାଟି ପରିଷ୍କାର ଦେଖାଇଦେବେ । କିଛି ଦିନପରେ ଦିନେ କୃଷ୍ଣ ରୈବତକ ପର୍ବତକୁ ଯାଇଥିଲେ । ଏତିକିବେଳେ ନାରଦ ଶାମ୍ବଙ୍କୁ କହିଲେ ରୈବତକ ପର୍ବତରେ କୃଷ୍ଣ ତୁମକୁ ଅପେକ୍ଷା କରିଛନ୍ତି, ତୁମେ ଶିଘ୍ର ମୋ ସହ ସେ ସ୍ଥାନକୁ ଆସ । ନାରଦଙ୍କ କଥା ଅନୁସାରେ ଶାମ୍ବ ରୈବତକ ପର୍ବତକୁ ଗଲେ । ସେଠାରେ ଗୋପବାଳାମାନେ ଗୋଟିଏ ପୋଖରୀ ମଧ୍ୟରେ ସ୍ନାନ ଓ ଜଳକେଳି କରୁଥିଲେ । ଶାମ୍ବଙ୍କୁ ଦେଖିବାମାତ୍ରେ ସେମାନେ ତାଙ୍କ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇଗଲେ । ନାରଦ ଇତିମଧ୍ୟରେ ହଠାତ୍ କୃଷ୍ଣଙ୍କ ନିକଟକୁ ଯାଇ ଗୋପୀଗଣଙ୍କ ଗହଣରେ ଶାମ୍ବଙ୍କୁ ଦେଖାଇଦେଲେ । କୃଷ୍ଣଙ୍କର ଆଉ କୌଣସି

ସନ୍ଦେହ ରହିଲା ନାହିଁ । 'କୁଷ୍ଠ ହୋଇ ତୋର ସମସ୍ତ ସୌନ୍ଦର୍ଯ୍ୟ ଲୁପ୍ତ ହେଉ' କହି ସେ ଶାମ୍ବଙ୍କୁ ଘୋର ଅଭିଶାପ ଦେଲେ । ଶାମ୍ବ ନିଜକୁ ନିର୍ଦ୍ଦୋଷ ବୋଲି ଯେତେ ପ୍ରମାଣ କଲେ ସୁଦ୍ଧା ସେ ଅଭିଶାପ ଆଉ ପ୍ରତ୍ୟାହାର ହେଲା ନାହିଁ । ପରେ ନାରଦଙ୍କ ଉପଦେଶକ୍ରମେ ଏହି କଠିନ ରୋଗରୁ ମୁକ୍ତି ପାଇବା ପାଇଁ ଶାମ୍ବ ମୈତ୍ରେୟବନଠାରେ ବାରବର୍ଷ ପର୍ଯ୍ୟନ୍ତ ତପସ୍ୟା କରିବାକୁ ବାହାରିଗଲେ ।

ଚନ୍ଦ୍ରଭାଗା ନଦୀ କୂଳରେ ସୁରମ୍ୟ ମୈତ୍ରେୟବନରେ ପ୍ରବେଶ କରି ଶାମ୍ବ କଠୋର ତପସ୍ୟା ଆରମ୍ଭ କଲେ । ସେ ଶାନ୍ତ, ଦାନ୍ତ, ନିରାହାର ଓ ଜିତେନ୍ଦ୍ରିୟ ହୋଇ ବାରବର୍ଷ ପର୍ଯ୍ୟନ୍ତ ସୂର୍ଯ୍ୟ ଧ୍ୟାନରେ ନିମଗ୍ନ ରହିଲେ । ତାଙ୍କର ନାନାବିଧ ପୂଜା ଉପାସନାଦି ଦ୍ୱାରା ପ୍ରସନ୍ନ ହୋଇ ଦିନେ ସୂର୍ଯ୍ୟ ଶାମ୍ବଙ୍କୁ ସ୍ୱପ୍ନରେ ଦେଖାଦେଇ ଅଚଳଭକ୍ତି ଓ ବିଶ୍ୱାସ ସହ ତାଙ୍କର 'ଏକ ବିଂଶତି ନାମ' ସ୍ମରଣ କରିବାକୁ ଆଦେଶ ଦେଇଗଲେ । ଏହିପରି ୧୨ ବର୍ଷ ତପସ୍ୟା ପରେ ଅତି ପ୍ରସନ୍ନ ହୋଇ ସୂର୍ଯ୍ୟ ଶାମ୍ବଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ଓ ତାଙ୍କୁ ବର ମାଗିବାକୁ କହିଲେ । ସେହି ଆଦେଶ ପାଇ ଶାମ୍ବ ପ୍ରାର୍ଥନା କଲେ, ''ନିତ୍ୟ ତୁମଠାରେ ମୋର ଭକ୍ତି ଥାଉ'' । ସୂର୍ଯ୍ୟ ଆହୁରି ସନ୍ତୁଷ୍ଟ ହୋଇ ଦ୍ୱିତୀୟ ବର ମାଗିବାକୁ କହିଥିଲେ । ଶାମ୍ବ ପୁଣି ପ୍ରାର୍ଥନା କଲେ । ତୁମ୍ଭ ପ୍ରସାଦରୁ ମୋର ଏହି ଶରୀର ରୋଗ ମୁକ୍ତ ହେଉ । ତତ୍‌କ୍ଷଣାତ୍ ଶାମ୍ବ ନିଜର ପୂର୍ବ ରୂପଲାବଣ୍ୟ ଫେରିପାଇଲେ । ସୂର୍ଯ୍ୟ ଶାମ୍ବଙ୍କୁ କହିଲେ ''ଆଜିଠାରୁ ମୋ ନାମରେ ଯିଏ ମର୍ତ୍ତ୍ୟରେ ମନ୍ଦିର ନିର୍ମାଣ କରି କ୍ଷେତ୍ର ସ୍ଥାପନ କରିବ, ସେ ସନାତନ ଲୋକ ପ୍ରାପ୍ତ ହେବ ।''

ଶାମ୍ବ ସୂର୍ଯ୍ୟଙ୍କ ଆଦେଶ ପାଳନ କରିବାକୁ ସ୍ଥିର ସଂକଳ୍ପ କଲେ । ପରଦିନ ପ୍ରାତଃକାଳରେ ସେ ଚନ୍ଦ୍ରଭାଗା ନଦୀରେ ସ୍ନାନ କରୁକରୁ ସୂର୍ଯ୍ୟଦେବଙ୍କର ଗୋଟିଏ ପଥର ପ୍ରତିମୂର୍ତ୍ତି ପଦ୍ମାସନରେ ନଦୀର ଗଭୀର ଜଳ ମଧ୍ୟରେ ବିରାଜମାନ ହୋଇଥିବାର ଦେଖିବାକୁ ପାଇଲେ । ସେ ସୁନ୍ଦର ମନ୍ଦିରଟିଏ ନିର୍ମାଣ କରି ଉକ୍ତ ବିଗ୍ରହଟିକୁ ସେଠାରେ ସ୍ଥାପନ କଲେ । ସୂର୍ଯ୍ୟଦେବଙ୍କ ଉପଦେଶ ଅନୁସାରେ କେତେକ ଭୈଷଜ (ବୈଦ୍ୟ) ଶାକଦ୍ୱୀପୀ ବ୍ରାହ୍ମଣଙ୍କୁ ସେବା କାର୍ଯ୍ୟରେ ନିଯୁକ୍ତି କଲେ । ସୂର୍ଯ୍ୟଙ୍କର ସେହି ମଣିବିଗ୍ରହ ସେହି ଦିନଠାରୁ ଯୁଗେ ଯୁଗେ ପୂଜାପାଇ ଆସୁଅଛି । ଅନ୍ୟ କେତେକ ଦୃଷ୍ଟିରୁ ମଧ୍ୟ ବିଚାର କରି ଆପାତତଃ ଅନୁମାନ କରିହୁଏ ଯେ ମୈତ୍ରେୟବନ ବା କୋଣାର୍କରେ ଖ୍ରୀଷ୍ଟପୂର୍ବ ଊନବିଂଶ ଶତାବ୍ଦୀରୁ ଶାମ୍ବଙ୍କ ଦ୍ୱାରା ସୂର୍ଯ୍ୟଦେବଙ୍କ ଅଧିଷ୍ଠାନ ହୋଇଅଛି ।

## ସୂର୍ଯ୍ୟ ଉପାସନା ଓ କୋଣାର୍କ ମାହାତ୍ମ୍ୟ



ସମଗ୍ର ଭାରତବର୍ଷରେ ଉତ୍କଳ ହିନ୍ଦୁମାନଙ୍କର ପରମ ପବିତ୍ର ଭୂମି । ନାନା ଦେବଦେବୀ ଓ ତୀର୍ଥମାନଙ୍କର ଅଧିଷ୍ଠାନ ହେତୁ ପ୍ରାଚୀନ ମହର୍ଷିମାନେ ଉତ୍କଳକୁ ଭାରତୀୟ ଧର୍ମ ସାମ୍ରାଜ୍ୟରେ ଅତି ଉଚ୍ଚସ୍ଥାନ ଦେଇଛନ୍ତି । ଓଡ଼ିଶାର ଦେବସ୍ଥଳୀମାନଙ୍କରେ ପ୍ରଶାନ୍ତଭାବ, ଉନ୍ନତ ଆଦର୍ଶ, ହିନ୍ଦୁଧର୍ମ ଯୁଗେ ଯୁଗେ ପୁଣ୍ୟାତ୍ମା ଆର୍ଯ୍ୟମାନଙ୍କର ଜୀବନକୁ ଅନୁପ୍ରାଣିତ କରିଛି । ଭାରତର ସୁବିଶାଳ ବକ୍ଷରେ ଯେତେ ନବଧର୍ମର ଆବିର୍ଭାବ ହୋଇଛି, ଯେତେ ନବ ନବ ଦୀକ୍ଷା ଭାରତୀୟମାନଙ୍କୁ ଯୁଗେ ଯୁଗେ ଦୀକ୍ଷିତ କରିଛି, ସେହି ପ୍ରତ୍ୟେକ ଧର୍ମ ଓ ଦୀକ୍ଷା ଉତ୍କଳ ଭୂମିରେ ଯଥାସମୟରେ ଦେଖାଦେଇଛି । ଏଣୁ ଧର୍ମ ବିଷୟରେ ଓଡ଼ିଶା ଭାରତବର୍ଷର ସଂକ୍ଷିପ୍ତ ସାର କହିଲେ ଅତ୍ୟୁକ୍ତି ହେବନାହିଁ । ବୌଦ୍ଧ, ଜୈନ, ଶୈବ, ସୌର, ଶାକ୍ତ, ବୈଷ୍ଣବ ଓ ଗାଣପତ୍ୟ ପ୍ରଭୃତି ଯେଉଁ ଧର୍ମସବୁ ଭାରତରେ ଉଦୟ ହୋଇଅଛି, ସେସବୁ ଧର୍ମ ପ୍ରତ୍ୟେକେ ଯଥା ସମୟରେ ଏହି କ୍ଷୁଦ୍ର ଭୂମିଖଣ୍ଡରେ ଆବିର୍ଭୂତ ହୋଇ ଅଦ୍ୟାବଧି ନିଜର ଅବଶେଷ ମଧ୍ୟ ରଖିଯାଇଛନ୍ତି ।

ଏକଦା ସୌରଧର୍ମ ଓଡ଼ିଶାରେ ପ୍ରଚଳିତ ଥିଲା । ସୂର୍ଯ୍ୟ ଉପାସନା ଅତି ଆଦିମ କାଳରୁ ଆର୍ଯ୍ୟମାନଙ୍କ ମଧ୍ୟରେ ପ୍ରଚଳିତ

ଅଛି । ଆର୍ଯ୍ୟମାନଙ୍କର ପ୍ରଧାନ ଉପାସ୍ୟ ଦେବତା ରୂପେ ସୂର୍ଯ୍ୟଦେବ ସର୍ବଦା ଭକ୍ତିପ୍ରୀତି ଆକର୍ଷଣ କରି ଆସୁଛନ୍ତି । ପରେ ପୁଣି ଜ୍ଞାନ ଓ ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଦେବତାଙ୍କ ସହ ସୂର୍ଯ୍ୟ ଅନ୍ୟତମ ଉପାସ୍ୟ ଦେବତା ବୋଲି ପରିଗଣିତ ହୋଇଛନ୍ତି ।

କାଳକ୍ରମେ ସୂର୍ଯ୍ୟ ଆଉ ଏକ ଅଦ୍ୱିତୀୟ ପରମେଶ୍ୱର ହୋଇ ରହିଲେ ନାହିଁ । ସୂର୍ଯ୍ୟଙ୍କ ସହ ସମଶକ୍ତିଶାଳୀ ମନେକରି ଅଗ୍ନି ଓ ବାୟୁଙ୍କୁ ଉପାସନା କରାଗଲା । ଭାରତୀୟ ଆର୍ଯ୍ୟମାନଙ୍କ ମତରେ ଏହି ତିନି ଶକ୍ତି ଆଦ୍ୟଦେବ ଥିଲେ । ପରେ ନୂତନ ଦେବତାମାନଙ୍କର କଳ୍ପନା କରାଯାଇ ପୌରାଣିକ ଯୁଗବେଳକୁ ସେମାନଙ୍କ ସଂଖ୍ୟା ତେତିଶକୋଟି ହୋଇଥିଲା ।

ଓଡିଶାରେ ସୌର ଉପାସନା କେବେ ପ୍ରବେଶ କରିଥିଲା, ତାହା ନିଶ୍ଚୟ କରି କୁହାଯାଇ ନପାରେ । ତେବେ ଏହି ପ୍ରଦେଶରେ ଆର୍ଯ୍ୟ ବସତି ସହିତ ଏହା ପ୍ରବେଶ କରିଥାଇପାରେ । ସୂର୍ଯ୍ୟ ଉପାସନା ସୌର ସମ୍ପ୍ରଦାୟଙ୍କର ଆହ୍ନିକ କାର୍ଯ୍ୟ ଥିଲା । ଆଜି ମଧ୍ୟ ସ୍ନାନାଦି ନିତ୍ୟକର୍ମମାନଙ୍କରେ ଅନ୍ୟାନ୍ୟ ଦେବତାମାନଙ୍କ ମଧ୍ୟରେ ସୂର୍ଯ୍ୟଦେବତାଙ୍କ ଉପାସନା ବିଶେଷ ଭାବରେ ଦେଖାଯାଏ । ବ୍ରହ୍ମା ସୃଷ୍ଟି କରନ୍ତି, ବିଷ୍ଣୁ ପାଳନ କରନ୍ତି, ଶଙ୍କର ସଂହାର କରନ୍ତି । କିନ୍ତୁ ସୂର୍ଯ୍ୟଦେବ ଏକା ଏହି ତିନି କାର୍ଯ୍ୟ ପ୍ରତ୍ୟହ କରୁଛନ୍ତି । ତେଣୁ ସୂର୍ଯ୍ୟଙ୍କୁ ବର୍ତ୍ତମାନ ଆହ୍ନିକ କର୍ମରେ ସମସ୍ତ ଦେବତାଙ୍କ ମଧ୍ୟରେ ସର୍ବୋଚ୍ଚ ସ୍ଥାନ ଦିଆଯାଇଛି । ସୁତରାଂ ହିନ୍ଦୁମାନେ ବୈଷ୍ଣବ ହୁଅନ୍ତୁ ବା ଶୈବ, ଉଦୟଠାରୁ ଅସ୍ତ ଯାଏ ସୂର୍ଯ୍ୟଙ୍କୁ ଏକମାତ୍ର ଦେବତା ଜ୍ଞାନ କରି ପୂଜାକରି ଆସୁଛନ୍ତି ।

କୋଣାର୍କ ମନ୍ଦିରର ନିର୍ମାତା ଲାଙ୍ଗୁଳା ନରସିଂହଦେବଙ୍କଠାରୁ ଆରମ୍ଭ କରି ପରବର୍ତ୍ତୀ ଗଙ୍ଗବଂଶୀୟ ରାଜାମାନେ ସୂର୍ଯ୍ୟଙ୍କର ଯେପରି ଭକ୍ତ ଥିଲେ, କେଶରୀ ବଂଶର ରାଜାମାନେ ମଧ୍ୟ ସେହିପରି ସୂର୍ଯ୍ୟ ମନ୍ଦିର ନିର୍ମାଣ ଓ ସୂର୍ଯ୍ୟ ଉପାସନା କରୁଥିଲେ । କୋଣାର୍କ ଓଡ଼ିଶାରେ ସୂର୍ଯ୍ୟ ଉପାସନାର କେନ୍ଦ୍ର ଥିଲା । ସମୁଦାୟ ହିନ୍ଦୁ ରାଜ୍ୟରେ ସୂର୍ଯ୍ୟ କ୍ଷେତ୍ର ବିରଳ ଥିବାବେଳେ କୋଣାର୍କ ମୈତ୍ରେୟ ବନରେ ଦେବାଧିଦେବ ସୂର୍ଯ୍ୟଙ୍କର ପ୍ରତିଷ୍ଠା ହୋଇଥିବା ଓଡ଼ିଶା ପକ୍ଷରେ ବିଶେଷ ଗୌରବର ବିଷୟ ।

ଯେଉଁ କ୍ଷେତ୍ରର ମାହାତ୍ମ୍ୟ ଯେତେ ପରିମାଣରେ ବର୍ଣ୍ଣିତ, ସେହି କ୍ଷେତ୍ରରେ ଯାତ୍ରୀ ପରିମାଣ ସେତେ ଅଧିକ । ପୁରୁଷୋତ୍ତମ ମାହାତ୍ମ୍ୟରେ ବର୍ଣ୍ଣିତ ଅଛି ବିଷ୍ଣୁ ଗୟାସୁରକୁ ବଧକରି ଆପଣାର ବିଜୟ ଚିହ୍ନ ସ୍ୱରୂପ ପୁରୁଷୋତ୍ତମରେ ଶଙ୍ଖ, ଭୁବନେଶ୍ୱରରେ ଚକ୍ର, ଯାଜପୁରରେ ଗଦା ଓ କୋଣାର୍କରେ ପଦ୍ମ ରଖିଥିଲେ । ଏହି ହେତୁରୁ କପିଳ ସଂହିତା ଅନୁସାରେ ଓଡ଼ିଶାର ସମସ୍ତ ତୀର୍ଥମାନଙ୍କ ମଧ୍ୟରେ ଏହି ଚାରୋଟି ସର୍ବପ୍ରଧାନ, ଯଥା– ଶଙ୍ଖକ୍ଷେତ୍ର ବା ପୁରୁଷୋତ୍ତମ, ଚକ୍ରକ୍ଷେତ୍ର ବା ଭୁବନେଶ୍ୱର, ଗଦାକ୍ଷେତ୍ର ବା ଯାଜପୁର ଏବଂ ପଦ୍ମକ୍ଷେତ୍ର ବା କୋଣାର୍କ । ସେଯୁଗରେ କୋଣାର୍କର ମାହାତ୍ମ୍ୟ ଏତେ ଅଧିକ ଥିଲା ଯେ ଚନ୍ଦ୍ରଭାଗାର ଲୁପ୍ତପ୍ରାୟ କ୍ଷୀଣସତ୍ତା ଆଜି ମଧ୍ୟ ବହୁ ନରନାରୀଙ୍କ ହୃଦୟ ଆକର୍ଷଣ କରିବାରେ ଯଥେଷ୍ଟ ମହିମାଶାଳୀ ହୋଇଛି । ବ୍ରହ୍ମ ପୁରାଣରେ ଲେଖାଅଛି ଏହି ସୂର୍ଯ୍ୟ କ୍ଷେତ୍ରରେ ଦେହତ୍ୟାଗ କଲେ ମଣିଷ ସୂର୍ଯ୍ୟାଲୋକକୁ ଯାଏ ଓ ପରେ ମୋକ୍ଷ ପାଏ । କପିଳ ସଂହିତା ଅନୁସାରେ ପୁଣ୍ୟ ମୈତ୍ରେୟବନରେ ରଥଯାତ୍ରା ମହୋତ୍ସବ ଯିଏ ଭକ୍ତିରେ ଦର୍ଶନ କରନ୍ତି, ସେ ସୂର୍ଯ୍ୟଙ୍କର ବାସ୍ତବ ଶରୀର ଦର୍ଶନ ପାଆନ୍ତି । ପଦ୍ମପୁରାଣ ଅନ୍ତର୍ଗତ 'ପ୍ରାଚୀମାହାତ୍ମ୍ୟ' ରେ ଏହାକୁ ଅର୍କକ୍ଷେତ୍ର ଆଖ୍ୟା ଦିଆଯାଇଛି ଓ ଚନ୍ଦ୍ରଭାଗାକୁ ଅର୍କତୀର୍ଥ । ମାଘମାସ ଶୁକ୍ଳପକ୍ଷ ସପ୍ତମୀ ଦିନ ଅର୍କତୀର୍ଥରେ ସ୍ନାନକରି ଦାନ ଭୋଜନ ଦେଲେ ଲୋକ ନିରୋଗୀ ହୁଏ ବୋଲି ଏଯାଏ ବିଶ୍ୱାସ ରହିଛି ।

କେବଳ ହିନ୍ଦୁ ନୁହନ୍ତି, ମୁସଲମାନମାନେ ମଧ୍ୟ ଏ ସ୍ଥାନକୁ ଆପଣାର ମନେକରି ଅତି ପବିତ୍ର ଜ୍ଞାନ କରୁଥିଲେ । 'ଆଇନୀଆକବରୀ' ଅନୁସାରେ ଆବୁଲଫଜଲ ଲେଖିଛନ୍ତି ଯେ ଏହି ସ୍ଥାନରେ ମହାତ୍ମା କବରୀଙ୍କ ସମାଧି ଥିବାର ଶୁଣାଯାଏ ।

ଭଗବାନଙ୍କ ସହ ଏକ ହେବା ପାଇଁ ମଣିଷ ହୃଦୟରେ ଚିରକାଳ ପ୍ରବଳ ଆକାଂକ୍ଷା ଜାଗ୍ରତ ଅଛି । ସେ ହିନ୍ଦୁ ହେଉ ବା ଖ୍ରୀଷ୍ଟିୟାନ, ଇହୁଦୀ ହେଉ ବା ମୁସଲମାନ୍ ଏହି ଆକାଂକ୍ଷା ପୂରଣ କରିବା ପାଇଁ ମଣିଷ ତୀର୍ଥଯାତ୍ରା କରିବାକୁ ଅନ୍ୟତମ ଉପାୟ ମନେ କରେ । ଅର୍ଥପ୍ରତି ଭ୍ରୁକ୍ଷେପ ନକରି, ଶରୀର ପ୍ରତି ଆସ୍ଥା ନରଖି, ଏକ ବିଶ୍ୱାସରେ ବଳୀୟାନ ହୋଇ ପୁଣ୍ୟତୀର୍ଥ ଦର୍ଶନ ନିମନ୍ତେ ହିନ୍ଦୁଯାତ୍ରୀ ଆବହମାନ କାଳରୁ ସହସ୍ର କୋଶ ପର୍ଯ୍ୟନ୍ତ ଅକାତରେ ପର୍ଯ୍ୟଟନ କରି ଆସୁଅଛି । ଧର୍ମଭାବ ସହିତ ଏହି ତୀର୍ଥଯାତ୍ରା ମାନଙ୍କରେ ଗୋଟିଏ ଗୂଢ଼ ସାମାଜିକ ତତ୍ତ୍ୱ ମଧ୍ୟ ନିହିତ ଅଛି । ନାନା ଜାତି, ପ୍ରଥା ଓ ସମ୍ପ୍ରଦାୟରେ ଭାରତ ଚିରକାଳ ବିଭକ୍ତ । ତଥାପି ଏତେ ବିଭିନ୍ନତା ସତ୍ତ୍ୱେ ଏହି ତୀର୍ଥଯାତ୍ରା ଦ୍ୱାରା ବିଭିନ୍ନ ଜାତି ପରସ୍ପର ସହିତ ଏକ ଭାବ ଓ ଏକପ୍ରାଣ ରଖିପାରୁଥିଲେ । ସୁତରାଂ ସଭା ସମିତି ବିନା ମଧ୍ୟ ଆବହମାନ କାଳରୁ ଭାରତରେ ଏକ ଜାତୀୟ ଜୀବନ ଅକ୍ଷୁଣ୍ଣଭାବେ ରହି

ଆସୁଅଛି । ଓଡ଼ିଶାର ବିଶେଷତ୍ୱ ଏହି ଯେ – ଏକଦା ନିଜର ସ୍ୱାତନ୍ତ୍ର୍ୟ ସଂରକ୍ଷଣ ସଙ୍ଗେ ସଙ୍ଗେ ଏହି ତୀର୍ଥାଦିମାନଙ୍କ ଦ୍ୱାରା ସମୁଦାୟ ଭାରତ ବ୍ୟାପୀ ଜାତୀୟ ମହାଜୀବନ ସହିତ ନିଜକୁ ଅତି ସୁନ୍ଦର ଭାବେ ମିଶାଇ ଦେଇଥିଲା ।

ମନ୍ଦିର ବର୍ଣ୍ଣନା – ଓଡ଼ିଶାର ପ୍ରଧାନ ପ୍ରଧାନ ଦେବାଳୟ ପ୍ରାୟ ଗୋଟିଏ ଛାଞ୍ଚରେ ଗଢ଼ା । ଆକାରଗତ ପାର୍ଥକ୍ୟ କାହାର ନାହିଁ କହିଲେ ଚଳେ ଏବଂ ଆକୃତିରେ ସମସ୍ତ ମନ୍ଦିର ପ୍ରାୟ ସମାନ । ପୁରୀ ଓ ଭୁବନେଶ୍ୱର ମନ୍ଦିରମାନଙ୍କର ଆକାର ଓ ଗଠନ ଏବଂ ବିଭିନ୍ନ ଅଂଶମାନଙ୍କର ଆକାର ଓ ଗଠନ ଏବଂ ବିଭିନ୍ନ ଅଂଶମାନଙ୍କର ପରସ୍ପର ସହିତ ଅନୁପାତ କୋଣାର୍କରେ ପ୍ରାୟ ସମାନ । କୋଣାର୍କ ଏକ ଦେଉଳ ବା ବିମାନ ଏବଂ ତାହାର ସମ୍ମୁଖରେ ମୁଖଶାଳା ବା ଜଗମୋହନ ଅଛି । ହେଲେ ପ୍ରଭେଦ ଏତିକି ଯେ ପୁରୀ, ଭୁବନେଶ୍ୱର ପ୍ରଭୃତିରେ ନାଟମନ୍ଦିର ଯେପରି ମୁଖଶାଳା ଓ ଦେଉଳ ଉପରେ ଲାଗି ଏକ ପୀଠ ଉପରେ ଗଢା ହୋଇଛି, କୋଣାର୍କରେ ସେପରି ନୁହେଁ । ଏଠାରେ ନାଟମନ୍ଦିର, ଦେଉଳ ଓ ମୁଖଶାଳା ସମ୍ମୁଖରେ କିଛି ଦୂରରେ ଅନ୍ୟଏକ ପୀଠ ଉପରେ ଅବସ୍ଥିତ ।

କୋଣାର୍କ ଦେଉଳ ଓ ମୁଖଶାଳା ଉଭୟ ଗୋଟିଏ ରଥ ଆକାରରେ ଗଢ଼ା ହୋଇଛି । ପୀଠ ଦେହରେ ୨୪ଟି ଚକ ଏବଂ ମୁଖଶାଳା ସମ୍ମୁଖରେ ୭ଟି ଘୋଡ଼ା ରଖାଯାଇଛି । ଶାସ୍ତ୍ରରେ ବର୍ଣ୍ଣିତ ଅଛି – ସୂର୍ଯ୍ୟଦେବ ଏକ ସପ୍ତାଶ୍ୱ ରଥ ଉପରେ ବସି ପୃଥିବୀ ପରିଭ୍ରମଣ କରୁଛନ୍ତି । କେହି କେହି ଆଧୁନିକ ସମାଲୋଚକ ଏହି ସପ୍ତାଶ୍ୱକୁ ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ପଦକ୍ଷିଣ କରୁଥିବା ସପ୍ତଗ୍ରହ ମନେ କରିଥାନ୍ତି । କେହି କେହି କହନ୍ତି ସୂର୍ଯ୍ୟଙ୍କର ଶୁକ୍ଳ ଆଲୋକ ସାତୋଟି ମୌଳିକ ବର୍ଣ୍ଣର ସମଷ୍ଟି ହୋଇଥିବାରୁ ସୂର୍ଯ୍ୟଙ୍କ ରଥରେ ସପ୍ତାଶ୍ୱ କଳ୍ପନା କରି ଖଞ୍ଜାଯାଇଛି । ଶାସ୍ତ୍ରରେ ପୁଣି ଲେଖାଅଛି ସୂର୍ଯ୍ୟଙ୍କ ରଥରେ ଗୋଟିଏ ମାତ୍ର ଚକ । ଏକ ଚକ ଉପରେ ରଥଟିଏ କଳ୍ପନା କରାଯାଇପାରେ, ମାତ୍ର ବାସ୍ତବ କ୍ଷେତ୍ରରେ ଏକ ଚକ ଉପରେ ଗୋଟିଏ ରଥ ବା ମନ୍ଦିର ନିର୍ମାଣ କରିବା ଅସମ୍ଭବ ଅଟେ । ସୁତରାଂ କୋଣାର୍କରେ ଶିଳ୍ପୀମାନେ ଏକ ଚକ ପରିବର୍ତ୍ତେ ୨୪ଟି ଚକ ତିଆରି କରିଛନ୍ତି । ଏପରି ମଧ କୁହାଯାଇପାରେ ଯେ, ୧୨ଟି ରାଶି ଦ୍ୱାରା ଆକାଶପଥ ବିଭକ୍ତ । ବିଶ୍ୱଭ୍ରମଣ ନିମନ୍ତେ ସୂର୍ଯ୍ୟଙ୍କୁ ଏହି ୧୨ଟି ବିଭାଗ ଦେଇ ପାର ହେବାକୁ ହୁଏ । କୋଣାର୍କ ମନ୍ଦିରର ୧୨ଯୋଡ଼ା ଚକ ସୂର୍ଯ୍ୟଙ୍କ ପଥର ଏହି ୧୨ଭାଗକୁ ବ୍ୟକ୍ତ କରେ ।

କୋଣାର୍କ ମନ୍ଦିରର ଆମୂଳଚୂଳ ଗଠନ ବର୍ଣ୍ଣନା କରିବା ଯେକୌଣସି ଲେଖକ ପକ୍ଷରେ ଅତି ଅସାଧ୍ୟ ବ୍ୟାପାର । ପ୍ରାଚୀନ ଶିଳ୍ପ ବିଷୟରେ ଅଜ୍ଞାତ ପୂର୍ବ–ପୁରୁଷମାନଙ୍କର କଳାକୌଶଳକୁ ଆମର ବୋଲି କହିବାକୁ ଆମେ କେବଳ ସମ୍ପୂର୍ଣ୍ଣ ଅସମର୍ଥ ଓଡ଼ିଶାର ଯେକୌଣସି ମନ୍ଦିରର ଶିଳ୍ପରେ କେତେ ଜ୍ଞାନ, ଅନୁଭବ ଓ ଚିନ୍ତାର ବିକାଶ ଗୁନ୍ଥା ଯାଇଛି ତାହାର କଳ୍ପନା କରିବା ମଧ ଆମ ପକ୍ଷେ ଅସମ୍ଭବ । ସେଥିରେ ପୁଣି କୋଣାର୍କ ମନ୍ଦିର ଶିଳ୍ପ ମଧରେ ସର୍ବଶ୍ରେଷ୍ଠ ବୋଲି ବିବେଚିତ ତଥା ପ୍ରଶଂସିତ ହୋଇଅଛି । ସୁତରାଂ ତାହାର କଳାକୌଶଳ ବର୍ଣ୍ଣନା କରିବାରେ ଯେ କୌଣସି ଲେଖକର ଚେଷ୍ଟା ବିଫଳ ହେବା ସ୍ୱାଭାବିକ ।

ଏହି କୋଣାର୍କ ଗୋଟିଏ ଯୁଗ ବା ଶତାବ୍ଦୀର କାର୍ଯ୍ୟ ନୁହେଁ, ଏହା ଯୁଗ ଯୁଗ ବ୍ୟାପୀ ସାଧନାର ଫଳ । ଏଥିରେ ଓଡ଼ିଆ ଶିଳ୍ପର ଉନ୍ନତି ଓ ବିକାଶର ପରାକାଷ୍ଠା ଦୃଶ୍ୟମାନ । ଏହାର ପ୍ରତ୍ୟେକ କାମରେ ଇତିହାସର ଆରମ୍ଭଠାରୁ ବହୁଜ୍ଞାନ ଓ ଅନୁଭବ ଏକତ୍ର ପୁଞ୍ଜିଭୂତ । ଏହାର ପ୍ରତ୍ୟେକ ଲତାପତ୍ର କାମ ଦେଖିଲେ ଦର୍ଶକର ମନ ଆଉ ସେହି ଖଣ୍ଡ ପ୍ରସ୍ତରରେ ଆବଦ୍ଧ ନରହି କଳ୍ପନାର ଅନନ୍ତ ସ୍ରୋତରେ ଭାସମାନ ହୋଇଥାଏ । ଶିଳ୍ପର କ୍ରମିକ ଉନ୍ନତି, ଶିଳ୍ପୀର କଠୋର ସାଧନା, ଗଭୀର ଚିନ୍ତା ଓ ଯୁଗଯୁଗର ଅନୁଭବ ମାନସପଟ୍ଟରେ ଉଦୟ ହୋଇ ଦର୍ଶକର ହୃଦୟକୁ ଏକାବେଳକେ ସ୍ତବ୍ଧ କରିଦିଏ । କୋଣାର୍କରେ ଯେଉଁ ଗୋଟିଏ ଗୋଟିଏ କାରୁକାର୍ଯ୍ୟ ଦେଖିବାକୁ ମିଳେ, ତାହାର ପଶ୍ଚାତ୍‌ରେ ଅସୀମ ଜ୍ଞାନରାଶି ଭାରତୀୟ ଚିନ୍ତା ଚେତନାରେ ଆରମ୍ଭ କାଳରୁ ବିସ୍ତୃତ ହୋଇ ରହିଥିବାର ଦେଖାଯାଏ । କେତେକେତେ ଜାତୀୟପ୍ରଥା, କେତେ ପାରିବାରିକ ଉତ୍ସବ, କେତେ ଧର୍ମ ସମସ୍ୟା ଓ ନିଭୃତ ସାଧନା ଯେ କୋଣାର୍କର କାରୁକାର୍ଯ୍ୟରେ ପ୍ରତିଫଳିତ ହୋଇଛି, ସେସବୁର ବର୍ଣ୍ଣନା ଦେବାକୁ ଏ ଦୁର୍ବଳ କାଗଜ କଲମ ପକ୍ଷରେ ଆଦୌ ସମ୍ଭବ ନୁହେଁ । ଏତଦ୍ ବ୍ୟତୀତ ଆହୁରି ବିଶେଷ କଥା ହେଉଛି କୋଣାର୍କ ମନ୍ଦିରର ସବିଶେଷ ବିବରଣୀ ଦେବା ବେଶ୍ କଷ୍ଟସାଧ ବ୍ୟାପାର ।

ପୀଠ, ପୃଷ୍ଠ ବା ଉପାନ – କୋଣାର୍କ ଦେଉଳ ଓ ମୁଖଶାଳା ଗୋଟିଏ ପୀଠ ଉପରେ ନିର୍ମିତ । ଏପରି ସୁନ୍ଦର ଓ ଉଚ୍ଚ ପୀଠ ଭୁବନେଶ୍ୱର, ପୁରୀରେ ଦେଖାଯାଏ ନାହିଁ । କୋଣାର୍କ ମନ୍ଦିରର ସୌନ୍ଦର୍ଯ୍ୟ ଯେପରି ବୃଦ୍ଧିପାଏ ସେହିପରି ତାହା ଦୃଢ଼ ଓ ଶକ୍ତ ମନେହୁଏ । ଏକ ଫୁଟ ଉଚ୍ଚ ଗୋଟିଏ ତଳ ପତ୍ତନ ଉପରେ ଏହି ପୀଠ ନିର୍ମିତ । ଚତୁର୍ଦ୍ଦିଗରେ ସେହି ତଳ ପତନ ମୁଖରେ

ଏକାଦିକ୍ରମେ ଏକ ଶ୍ରେଣୀ ଅତି ସୁନ୍ଦର ହାତୀମୂର୍ତ୍ତି ଖୋଳା ହୋଇଅଛି । ସ୍ଥାନେ ସ୍ଥାନେ ଦୁଇହାତୀ ମଧ୍ୟରେ ଶିକାର ଓ ମନୁଷ୍ୟର ପାରିବାରିକ ଦୃଶ୍ୟ ମଧ୍ୟ ଶୋଭା ପାଉଛି । ଏହି ତଳ ପଭନ ଉପରେ ପୀଠ, ଚକ ଓ ଘୋଡ଼ା ମାନ ସ୍ଥାପିତ । ଏହି ପୀଠ ଦୁଇ ଭାଗରେ ବିଭକ୍ତ, ଯଥା-ତଳ ପୀଠ-୧୩ ଫୁଟ ୩ଇଞ୍ଚି ଉଚ୍ଚ, ଉପର ପୀଠ ବା ଖୁରପୃଷ୍ଠ ୨ଫୁଟ ୩ଇଞ୍ଚି ଉଚ୍ଚ ଓ ମୋଟ ୧୫ ଫୁଟ ୬ ଇଞ୍ଚି ।

ଅତଏବ ତଳ ପଭନ ସହିତ ସମୁଦାୟ ପୀଠର ଉଚ୍ଚତା (୧ଫୁଟ ଯୁକ୍ତ ୧୫ ଫୁଟ ୬ ଇଞ୍ଚ) ୧୬ ଫୁଟ ୬ଇଞ୍ଚ । ଅର୍ଥାତ ଭୂମିରୁ ୧୬ଫୁଟ ୬ଇଞ୍ଚରେ ଦେଉଳର ମୁଖଶାଳା ନିର୍ମିତ । ଦେଉଳ ଓ ମୁଖଶାଳାର ଚତୁର୍ଦ୍ଦିଗରେ ତଳପୀଠ ଉପରେ ଏକ ବିସ୍ତୃତ ବାରଣ୍ଡା ଅଛି । ଏହାର ଓସାର ୮ଫୁଟ ଓ ୧୨ଫୁଟ ମଧ୍ୟରେ । ତଳପୀଠ ୫ଭାଗରେ ବିଭକ୍ତ । ଯଥା- ଜଙ୍ଘା, ବରାଣ୍ଡି, ବନ୍ଧନା, ଉପର ବରାଣ୍ଡି ଓ ଉପରଜଙ୍ଘା । ତଳ ଜଙ୍ଘା- ୨ଫୁଟ ୧୧ଇଞ୍ଚ, ତଳ ବରାଣ୍ଡି- ୨ଫୁଟ ୯ଇଞ୍ଚ, ବନ୍ଧନା - ୧ ଫୁଟ, ଉପର ବରାଣ୍ଡି-୩ ଫୁଟ ୧୦ଇଞ୍ଚ, ଉପର ଜଙ୍ଘା - ୨ ଫୁଟ ୯ଇଞ୍ଚ, ମୋଟ- ୧୩ ଫୁଟ ୩ ଇଞ୍ଚ ।

ଜଙ୍ଘା ସାଧାରଣତଃ ୫ଭାଗରେ ବିଭକ୍ତ । ଏହାକୁ ପଞ୍ଚକର୍ମ ବା ପାଞ୍ଚକାମ କହନ୍ତି । ତଳଆଡୁ ଆରମ୍ଭ କରି ୫ ବିଭାଗର ନାମ- ପାଦ, କୁମ୍ଭ, ପଟା, କଣି ଓ ବସନ୍ତ । ପ୍ରତ୍ୟେକ କାମର ଗଠନ ଅନୁସାରେ ଏପରି ନାମକରଣ ହୋଇଛି । ପାଦର ମୁଖରେ ସୁନ୍ଦର ଲତା କାମ, ଉପରେ ମାରଣୀ ଓ ତହିଁରେ ଓଲଟା ପଦ୍ମପାଖୁଡ଼ା କାମ । ପାଦ ଉପରେ କୁମ୍ଭ । କୁମ୍ଭରେ କୌଣସି କାମ ନାହିଁ । ଏହା ପାଦ ଓ ପଟା ମଧ୍ୟରେ ଗୋଟିଏ ସୁନ୍ଦର ବ୍ୟବଧାନ ସ୍ୱରୂପ ରହିଛି । ପଟାରେ ପତ୍ର ଲତାର କାମ ଏବଂ ଏହି ଲତା ମଧ୍ୟରେ ସ୍ଥାନେ ସ୍ଥାନେ ନାନା ଜୀବଜନ୍ତୁଙ୍କ ଦୃଶ୍ୟ ରହିଛି । କଣିରେ କୌଣସି କାମନାହିଁ ଓ ବସନ୍ତରେ ପାଦ ପରି ଫୁଲର କାମ । ସମୁଦାୟ ଜଙ୍ଘାରେ ସମାନ ସମାନ ବ୍ୟବଧାନରେ ନାନା ଲତାକାମ ମଣ୍ଡିତ ସୁନ୍ଦର ଖମ୍ବମାନ ଅଛି ।

ତଳ ଜଙ୍ଘା ଉପରେ ତଳବରାଣ୍ଡି । ଜଙ୍ଘା ଓ ବନ୍ଧନା ମଧ୍ୟରେ ଭିତରକୁ ପଶି ଯାଇଥିବା ଅଂଶକୁ ବରାଣ୍ଡି କହନ୍ତି । ବରାଣ୍ଡିପାଗ ବା ଖମ୍ବ ଦ୍ୱାରା କେତେଗୁଡ଼ିଏ କ୍ଷୁଦ୍ରକ୍ଷୁଦ୍ର କୋଠରୀରେ ବିଭକ୍ତ । ଏହି ପାଗଗୁଡ଼ିକ ପୀଢ଼ ଦେଉଳ ଆକାରରେ ନିର୍ମିତ । ଏଥି ମଧ୍ୟରୁ କେତେକ ଶାର୍ଦ୍ଦୂଳ ସ୍ତମ୍ଭ ଏବଂ ପ୍ରତ୍ୟେକ ଶାର୍ଦ୍ଦୂଳସ୍ତମ୍ଭ ପାଖରେ ନାଗସ୍ତମ୍ଭ । ନାଗସ୍ତମ୍ଭରେ ନାଗକନ୍ୟାମାନଙ୍କର ଅଣ୍ଟାଠାରୁ ସର୍ପାକାର ହୋଇଛି ଓ ସର୍ପ ଶରୀର ଅତି ସୂକ୍ଷ୍ମ କାମରେ ବିମଣ୍ଡିତ । ଏହା ବ୍ୟତୀତ ଆଉ କେତେକ ପାଖରେ ସ୍ତ୍ରୀ ମୂର୍ତ୍ତି ଅଛି । ଦୁଇ ପାଖର ମଝିରେ ଜାଲିକାମ । ଏହି ପରି ଭାବରେ ବରାଣ୍ଡିର ପ୍ରତ୍ୟେକ ଇଞ୍ଚ ନାନା କାରୁକାର୍ଯ୍ୟରେ ପୂର୍ଣ୍ଣ ହୋଇଅଛି ।

ବରାଣ୍ଡି ଉପରକୁ ବନ୍ଧନା । ଏହି ବନ୍ଧନା ଏକ ବନ୍ଧ ସଦୃଶ । ପୀଠରେ ଚତୁର୍ଦ୍ଦିଗରେ ବୁଲି ଉପର ବରାଣ୍ଡି ଓ ତଳ ବରାଣ୍ଡିର ଲମ୍ୱାକାର କାମ ମଧ୍ୟରେ ଏକ ସୁନ୍ଦର ବ୍ୟବଧାନ ସ୍ୱରୂପ ହୋଇଅଛି । ବନ୍ଧନାକୁ ତ୍ରିକର୍ମ କହନ୍ତି । କାରଣ ଏଥିରେ ପାଦ, ଡ଼ୋରୀ ଓ ପଟା ଏହି ତିନି କାମ ଥାଏ । ପାଦରେ ଲତାକାମ ଓ ମଝିରେ ମଝିରେ ଜୀବଜନ୍ତୁଙ୍କ ଦୃଶ୍ୟ । ଡ଼ୋରୀରେ ମାଳାକାମ ଓ ତଳ ତଥା ଉପର ପାଖରେ ପଦ୍ମ ପାଖୁଡ଼ାର କାମ । ପଟାରେ ପାଦପରି ଲତା ଏବଂ ଜୀବଜନ୍ତୁଙ୍କ କାମ । ଡ଼ୋରୀ ଗୋଟିଏ ସୂକ୍ଷ୍ମ ଧାରପରି ପଟା ଓ ପାଦର କାମକୁ ଅଲଗା କରୁଛି ।

ବନ୍ଧନା ଉପରକୁ ଉପର ବରାଣ୍ଡି । ଏହା ମଧ୍ୟ ତଳ ବରାଣ୍ଡି ପରି କେତେଗୁଡ଼ିଏ ପାଗଦ୍ୱାରା ଅନେକ କୋଠରୀରେ ବିଭକ୍ତ ହୋଇଛି । ପ୍ରଭେଦ ଏହି ଯେ ଏଥିରେ କୋଠରୀଗୁଡ଼ିକ ଅପେକ୍ଷାକୃତ ପ୍ରଶସ୍ତ ଏବଂ ପାଗଗୁଡ଼ିକ ତଳବରାଣ୍ଡି ପରି ମନ୍ଦିର ଆକାରରେ ନହୋଇ ଆୟତାକାରରେ ହୋଇଛି ଏବଂ ସେମାନଙ୍କ ଉପରିଭାଗରେ ନାନା ଲତା ଓ ଫୁଲର ଚମତ୍କାର ସୂକ୍ଷ୍ମ କାମମାନ ରହିଅଛି । ଲତାକାମ ମଧ୍ୟରେ ହରିଣ ଆଦି ଜୀବଜନ୍ତୁଙ୍କ ମୂର୍ତ୍ତି ମଧ୍ୟ ଦେଖିବାକୁ ମିଳେ । ପ୍ରତ୍ୟେକ ପାଖର ତଳଭାଗରେ ମାରଣୀର କାମ । ତାହା ପଦ୍ମପାଖୁଡ଼ାରେ ଚିତ୍ରିତ । ଏହାକୁ ପାଗର ପାଦ କୁହାଯାଇପାରେ । ପାଦ ଉପରେ ପ୍ରତ୍ୟେକ ପାଗ ବା ଖମ୍ବ ଦେହରେ ପୁଣି କୁମ୍ଭ ଓ ବସନ୍ତ ମଧ୍ୟ ରହିଛି । ପାଦ ଓ ବସନ୍ତ ଉଭୟର ସାମ୍ନାପଟ ଲତା କାମରେ ପୂର୍ଣ୍ଣ । ଦୁଇପାଗ ମଧ୍ୟବର୍ତ୍ତୀ କୋଠରୀ ବା ଖୋପରେ ତିନି ଚାରିଟି ଲେଖାଏଁ ମୂର୍ତ୍ତି ଅଛି । ସେହି ମୂର୍ତ୍ତିଗୁଡ଼ିକ ଏତେ ସୁନ୍ଦର ଯେ ଦେଖିଲେ ମନ ମୁଗ୍ଧ ହୁଏ । ଅଧିକାଂଶ ମୂର୍ତ୍ତି ଅଶ୍ଳୀଳ ମଧ୍ୟ । ଯେଉଁଗୁଡ଼ିକ ଅଶ୍ଳୀଳ ନୁହେଁ, ସେଗୁଡ଼ିକରେ ଶିକାରର ଦୃଶ୍ୟ, ରାଜ ଦରବାରର ଦୃଶ୍ୟ, ଉପାସନାର ଦୃଶ୍ୟ ଦେଖିବାକୁ ମିଳେ ।

ବରାଣ୍ଡି ଉପରକୁ ଉପର ଜଙ୍ଘାର କାମ । ଏହା ୭ ଭାଗରେ ବିଭକ୍ତ । ତେଣୁ ଏହାକୁ ସପ୍ତକର୍ମ କହନ୍ତି । ମାତ୍ର ସବୁଠାରେ ଏହି ୭କାମ ଦେଖାଯାଏ ନାହିଁ । ମୁଖଶାଳା ବାଡ଼ର ଉପରଜଙ୍ଘାରେ୧୦କାମ ଓ ପୀଠର ଉପର ଜଙ୍ଘାରେ ୩ କାମ ଦେଖିବାକୁ ମିଳେ ।

ଚକ - କୋଣାର୍କ ମନ୍ଦିର ସୂର୍ଯ୍ୟଙ୍କ ରଥ ଆକାରରେ ନିର୍ମିତ । ଏହି ପୀଠ ଦେହରେ ୨୪ଟି ଚକ ରହିଛି । ବଡଦେଉଳ ଦକ୍ଷିଣ ପାଖରେ ୬ଟି ଚକ, ବଡଦେଉଳ ଉତ୍ତର ପାଖରେ ୬ଟି ଚକ, ମୁଖଶାଳା ଦକ୍ଷିଣ ପାଖରେ ୪ଟି ଚକ, ମୁଖଶାଳା ଉତ୍ତର ପାଖରେ ୪ଟି ଚକ, ମୁଖଶାଳା ପୂର୍ବ ପାହାଚର ଦକ୍ଷିଣକୁ ୨ଟି ଚକ, ମୁଖଶାଳା ପୂର୍ବ ପାହାଚର ଉତ୍ତରକୁ ୨ଟି ଚକ ରହିଛି । ଚକଗୁଡିକ ତଳପଭନ ଉପରେ ଅବସ୍ଥିତ ଓ ଚକର ବ୍ୟାସ ୯ଫୁଟ ୯ଇଞ୍ଚ । ଚକସବୁ ଅତି ସୁନ୍ଦର କାମରେ ବିମଣ୍ଡିତ ହୋଇଅଛି ।

ବଡଦେଉଳ- ଏହାକୁ ବିମାନ ବା ଦେଉଳ କୁହାଯାଏ । ଏହା ମୁଖଶାଳାର ପଶ୍ଚିମରେ ଅବସ୍ଥିତ । ଏହାର ସ୍ୱତନ୍ତ୍ର ଦ୍ୱାର ନାହିଁ । ମୁଖଶାଳାରୁ ଏହା ଭିତରକୁ ଯିବା ପାଇଁ କେବଳ ଗୋଟିଏ ମାତ୍ର ଦ୍ୱାର, ବଡଦେଉଳ ତ ଭାଙ୍ଗିଗଲାଣି । ଯାହା ଅଛି ତହିଁରୁ ଦେଉଳର ବିରାଟ ଆକାର, ସୁନ୍ଦର ଓ ସୁସ୍ପଷ୍ଟ କାରୁକାର୍ଯ୍ୟ ପରିଷ୍କାର ଅନୁମାନ କରାଯାଏ ।

ଦେଉଳର ତଳବରାଣ୍ଡି ବା ଶାକର ଦେହରେ ପାର୍ଶ୍ୱ ଦେବତା ସ୍ୱରୂପ ତିନୋଟି ମନୋହର ସୂର୍ଯ୍ୟନାରାୟଣ ମୂର୍ତ୍ତି ରହିଅଛି । ଦକ୍ଷିଣପାର୍ଶ୍ୱର ସୂର୍ଯ୍ୟନାରାୟଣ ମୂର୍ତ୍ତି କଳାମୁଗୁନି ପଥରରେ ଗଢା ଓ ମୂର୍ତ୍ତିଟି ଠିଆ ହୋଇରହିଛି । ସୂର୍ଯ୍ୟ ମୂର୍ତ୍ତିର ଦୁଇପାଖରେ ଦୁଇଦୁଇଟି ସ୍ତ୍ରୀ ମୂର୍ତ୍ତି ଅଛନ୍ତି । ଅନୁମାନ କରାଯାଏ ଏମାନଙ୍କ ମଧ୍ୟରୁ ଦୁଇଟି ସୂର୍ଯ୍ୟଙ୍କ ପତ୍ନୀ ଛାୟା ଏବଂ ସଞ୍ଜା ଓ ଅପରଦୁଇଟି ତାଙ୍କର ଦୁଇକନ୍ୟା ଗାୟତ୍ରୀ ଓ ସାବିତ୍ରୀ । ସମ୍ପୂର୍ଣ୍ଣ କାରୁକାର୍ଯ୍ୟର ବର୍ଣ୍ଣନା ଦେବା ଦୁରୂହ । ପଶ୍ଚିମ ଦିଗରେ ସୂର୍ଯ୍ୟନାରାୟଣ ମୂର୍ତ୍ତି ସେହିପରି କାରୁକାର୍ଯ୍ୟ ଖଚିତ ସୁନ୍ଦର ଲୁଗାପଟା ପିନ୍ଧିଛନ୍ତି । ତାଙ୍କ ମସ୍ତକରେ ଅତି ସୁନ୍ଦର ମୁକୁଟଟିଏ ଅଛି । ଉତ୍ତର ଦିଗର ମୂର୍ତ୍ତି ସିଂହାସନ ଉପରେ ଠିଆ ହୋଇ ନରହି ବୀରବେଶରେ ଏକ ଉନ୍ମତ୍ତ ଯୋଡା ଉପରେ ବସିଛନ୍ତି । ଘୋଡାଟି ସମ୍ପୂର୍ଣ୍ଣ ପ୍ରାକୃତିକ ଓ ଜୀବନ୍ତ ମନେହୁଏ । ସୂର୍ଯ୍ୟମୂର୍ତ୍ତି ଓ ଘୋଡା ଉଭୟ କଳା ମୁଗୁନି ପଥରରେ ତିଆରି । ଏମାନଙ୍କୁ ଯଥାକ୍ରମେ ମଧ୍ୟାହ୍ନ ସୂର୍ଯ୍ୟ(ଦକ୍ଷିଣ ମୂର୍ତ୍ତି), ସାୟାହ୍ନ ସୂର୍ଯ୍ୟ(ପଶ୍ଚିମ)ଓ ପ୍ରାତଃସୂର୍ଯ୍ୟ (ଉତ୍ତରମୂର୍ତ୍ତି)କହନ୍ତି । ମଧ୍ୟାହ୍ନ ସୂର୍ଯ୍ୟଙ୍କୁ ଶିବ, ସାୟାହ୍ନ ସୂର୍ଯ୍ୟଙ୍କୁ ବିଷ୍ଣୁ ଏବଂ ପ୍ରାତଃ ସୂର୍ଯ୍ୟଙ୍କୁ ବ୍ରହ୍ମା ରୂପେ ପରିକଳ୍ପନା କରାଯାଏ । ଦେଉଳ ଭିତରେ ଗୋଟିଏ ସୁଚାରୁ କାରୁଖଚିତ ଅତି ମନୋହର ସିଂହାସନ ବା ବେଦୀଟିଏ ଅଛି । ଏହା ମଧ୍ୟ କଳା ମୁଗୁନି ପଥରରେ ତିଆରି । ଏହା ଉପରେ ସୂର୍ଯ୍ୟ ନାରାୟଣଙ୍କ ବିଗ୍ରହ ପ୍ରତିଷ୍ଠା ହୋଇ ଥିଲା । ଭୂମି ଉପରୁ ଦେଉଳର ଉଚ୍ଚତା ୨୯୬ ଫୁଟ ୬ ଇଞ୍ଚ । ଏଠାରେ ଉଲ୍ଲେଖ କରାଯାଇ ପାରେ ଯେ ବଡ଼ଦାଣ୍ଡ ଉପରକୁ ବଡ଼ଦେଉଳର ଉଚ୍ଚତା ୨୧୪ ଫୁଟ ୮ଇଞ୍ଚ ଏବଂ ଭୂମି ଉପରୁ ଭୁବନେଶ୍ୱର ବଡ଼ଦେଉଳର ଉଚ୍ଚତା ୧୨୭ ଫୁଟ ୧ଇଞ୍ଚ ।

ଦେଉଳ ସହିତ ମୁଖଶାଳା ଏକ ପଦ୍ମ ପୃଷ୍ଠ ଉପରେ ଗଠିତ । ଏହାର ଅନ୍ୟନାମ ଜଗମୋହନ ବା ମୋହନ । ମୁଖଶାଳାର ଚାରି ଦିଗରେ ଚାରିଦ୍ୱାର ରହିଛି । ଦ୍ୱାରବନ୍ଧଗୁଡ଼ିକ ନାନା କାରୁକାର୍ଯ୍ୟରେ ଭୂଷିତ । ଏମାନଙ୍କ ସୌନ୍ଦର୍ଯ୍ୟ ଓ ଗଠନ ପ୍ରଣାଳୀ ଦେଖିଲେ ହୃଦୟ ମୁଗ୍ଧ ହୋଇଯାଏ । ମନେ ହୁଏ କୋଣାର୍କର ସମସ୍ତ ସୌନ୍ଦର୍ଯ୍ୟ ଯେପରି ଏହି ଦ୍ୱାରବନ୍ଧମାନଙ୍କରେ ଏକାଧାରରେ ଠୁଳ ହୋଇଛି । ମୁଖଶାଳାର ଦ୍ୱାରରେ ନବଗ୍ରହ ପାଟ ଦୀର୍ଘଦିନ ପଡ଼ିରହିବା ପରେ ବର୍ତ୍ତମାନ ଗୋଟିଏ ପକ୍କା ଘରେ ପାଟଟିକୁ ରଖାଯାଇଛି । ସେହି ନବଗ୍ରହ ହିଁ ବର୍ତ୍ତମାନ କୋଣାର୍କର ଉପାସ୍ୟ ଦେବତା । ମୁଖଶାଳାର ଭିତର ଅଂଶରେ ବାଲି ପୂର୍ଣ୍ଣ ହୋଇ ରହିଅଛି । ଏହାର ପୂର୍ବ, ଦକ୍ଷିଣ ଓ ଉତ୍ତର ଦ୍ୱାର ସମ୍ମୁଖରେ ଯେଉଁ ତିନୋଟି ପାହାଚ ଶ୍ରେଣୀ ଥିଲା ବର୍ତ୍ତମାନ ତାହା ଭାଙ୍ଗିଯାଇ ଆଉନାହିଁ । କେବଳ ପତ୍ତନ ମାତ୍ର ଅଛି । ପୂର୍ବ ପାହାଚରେ ଯେଉଁ ସାତୋଟି ସୁସଜ୍ଜିତ ଘୋଡ଼ା ରହିଥିଲା, ସେମାନଙ୍କର ମଧ୍ୟରୁ କେତେକର ଅବଶେଷ ମାତ୍ର ପଡ଼ି ରହିଥିବାର ଜଣାଯାଏ । ଦକ୍ଷିଣ ପାହାଚ ଶେଷରେ ଦୁଇଟି ଘୋଡ଼ା ଓ ଉତ୍ତର ପାହାଚ ଶେଷରେ ଦୁଇଟି ହାତୀ ଥିବାର ଜଣାପଡ଼େ ।ନାଟମନ୍ଦିର ମୁଖଶାଳା ପରି ଗୋଟିଏ ପଞ୍ଚରଥ ଦେଉଳ । ମୁଖଶାଳା ସମ୍ମୁଖରେ ଏକ ସ୍ୱତନ୍ତ୍ର ପୀଠ ଉପରେ ଏହି ନାଟମନ୍ଦିର ନିର୍ମିତ ହୋଇଥିଲା । ନାଟମନ୍ଦିର ଭିତରୁ ଚାରି ଦିଗରେ ଚାରୋଟି ଚଉଡ଼ା ବାଟ ଅଛି । ଏଥିରେ ଦ୍ୱାର କି ଦ୍ୱାରବନ୍ଧ ନଥିଲା । ପ୍ରତ୍ୟେକ ବାଟ ପାଖରେ ମନ୍ଦିର ଦେହରୁ ତିନୋଟି ଲେଖାଏଁ ପାହାଚ । ପ୍ରତ୍ୟେକ ଦ୍ୱାର ସମ୍ମୁଖରେ ଦୁଇଟି ଲେଖାଏଁ ଗୋଲାକାର ଖମ୍ଭ । ନାଟମନ୍ଦିରର ଦକ୍ଷିଣ ପଶ୍ଚିମ କୋଣରେ ଭୂମି ଉପରେ ଯେଉଁ ପ୍ରକାଣ୍ଡ ପଥରଟି ପଡ଼ିଅଛି, ତାହା ନାଟମନ୍ଦିରର 'ଗର୍ଭମୁଦ୍ରା' ସ୍ୱରୂପ ଥିଲା । ମନ୍ଦିର ଭାଙ୍ଗି ଯିବାରୁ ପଥରଟି ତଳେ ପଡ଼ିଛି ।

ରାମଚଣ୍ଡୀ ମନ୍ଦିର - ବିଶ୍ୱାସ କରାଯାଏ କୋଣାର୍କ ବଡ଼ ଦେଉଳର ଦକ୍ଷିଣ- ପଶ୍ଚିମ କୋଣରେ ମାୟାମୟୀ ରାମଚଣ୍ଡୀ ଅଧିଷ୍ଠାତ୍ରୀ ଦେବୀ ରୂପେ ପୂଜା ପାଉଥିଲେ । ରାମଚଣ୍ଡୀଙ୍କ ମନ୍ଦିର ଗୋଟିଏ ଦେଉଳ ବା ବିମାନ ଏବଂ ତାହା ସମ୍ମୁଖରେ ଏକ ମୁଖଶାଳା ବା ଜଗମୋହନ ଥିଲା । ମନ୍ଦିରର ସମ୍ପୂର୍ଣ୍ଣ ବର୍ଣ୍ଣନା ଏଠାରେ ଦିଆଯାଇ ପାରୁନାହିଁ । କୋଣାର୍କ ମନ୍ଦିର ବେଢ଼ା ମଧ୍ୟରେ

ପୂର୍ବ ବର୍ଣ୍ଣିତ ଦେଉଳ ମାନଙ୍କ ବ୍ୟତୀତ ଆଉ କେତେଗୁଡ଼ିଏ ମନ୍ଦିରର ପୀଠ ମଧ୍ୟ ଦେଖାଯାଏ । ସେ ସବୁ ବିଷୟରେ ସମସ୍ତ ପରିଚୟ ଦେବା ମଧ୍ୟ ଅସାଧ୍ୟ ଅଟେ ।

ନିର୍ମାଣକାଳ – ମାଦଳା ପାଞ୍ଜିରୁ ଜଣାଯାଏ ଶାମ୍ବ ଶାପମୁକ୍ତ ହୋଇ ଦ୍ୱାରକା ପ୍ରସ୍ଥାନ କରିବା ଦିନଠାରୁ କୋଣାର୍କ କ୍ଷେତ୍ରରେ ଚନ୍ଦ୍ରଭାଗା ଉପରେ ନିର୍ମିତ ମନ୍ଦିରରେ ମିତ୍ରାଦି ସୂର୍ଯ୍ୟ ପ୍ରତିଷ୍ଠିତ ହୋଇଥିଲେ । ତାପରେ ଯୁଗ ଯୁଗ ଧରି ରାଜାମାନେ ସେହିଠାରେ ସୂର୍ଯ୍ୟଦେବଙ୍କୁ ଉପାସନା କରି ଆସୁଥିଲେ । ମନ୍ଦିର ନିର୍ମାଣ ସମ୍ବନ୍ଧରେ ସେହି ମାଦଳା ପାଞ୍ଜିରେ ଲେଖାଅଛି ଅନଙ୍ଗଭୀମଦେବଙ୍କ ଉତ୍ତାରୁ ତାଙ୍କ ପୁଅ ଲାଙ୍ଗୁଳା ନରସିଂହ ଦେବ ୧୨୮୨ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ୪୫ ବର୍ଷ ରାଜତ୍ୱ କରିଥିଲେ । ସେ ଅର୍କକ୍ଷେତ୍ରରେ କୋଣାର୍କ ଦେବଙ୍କ ନିମନ୍ତେ ଦେଉଳ ତୋଳାଇଥିଲେ । ଏହି ରାଜାଙ୍କ ମୋହରରେ ଲେଖାଥିଲା, ପୃଥିବୀଶ୍ୱର ଲାଙ୍ଗୁଳା ନରସିଂହଦେବଙ୍କ ଦ୍ୱାରା ୧୨୭୮ ଖ୍ରୀଷ୍ଟାବ୍ଦରେ ଅଂଶୁମାଳୀଙ୍କ ମନ୍ଦିର ନିର୍ମିତ ହୋଇଥିଲା ।

ଶିଳ୍ପ ଓ ସ୍ଥାପତ୍ୟ – ଓଡ଼ିଶାର ଅନ୍ୟାନ୍ୟ ମନ୍ଦିର ମାନଙ୍କଠାରୁ କୋଣାର୍କ ଯେ କେତେ ଉତ୍କୃଷ୍ଟ ତାହା ବର୍ଣ୍ଣନା କରି ପ୍ରକାଶ କରିବା ସମ୍ଭବ ନୁହେଁ । ବର୍ତ୍ତମାନ ଯାହାକିଛି ଅଛି ସେଥିରୁ ସମସ୍ତ ମନ୍ଦିରର କାରୁକାର୍ଯ୍ୟ କଳ୍ପନା କରି କେବଳ ଅନୁମାନ ରାଜ୍ୟରେ ବହୁ ପରିମାଣରେ ସୌନ୍ଦର୍ଯ୍ୟ ଅନୁଭବ କରିହୁଏ । ଏହି ଅନୁମାନ ମଧ୍ୟ ସମସ୍ତଙ୍କ ପକ୍ଷେ ସହଜସାଧ୍ୟ ନୁହେଁ । ତଥାପି ଆବୁଲଫଜଲଙ୍କଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ କୋଣାର୍କର ଦର୍ଶକ ବୃନ୍ଦ ସମସ୍ୱରରେ ଏହାର ଭୂୟସୀ ପ୍ରଶଂସା କରି ଆସିଛନ୍ତି । କୋଣାର୍କର ପ୍ରଧାନ ବିଶେଷତ୍ୱ ତାହାର ଗଠନ ପ୍ରଣାଳୀ ଓ ଶିଳ୍ପଛଟା ।

କୋଣାର୍କର ସ୍ଥାପତ୍ୟରେ ଶିଳ୍ପୀମାନେ ମାନବ ଜୀବନର ଦୃଶ୍ୟ ନାନା ବିଭାଗରେ ଦେଖାଇଛନ୍ତି । ରାଜାଙ୍କ ଦରବାର, ଆମୋଦ ପ୍ରମୋଦ, ଆଡ଼ମ୍ବରମୟ ସମର ସଜ୍ଜା,ଗୁରୁର ଗଭୀର ଶାସ୍ତ୍ରାନୁଶୀଳନ, ଶିଷ୍ୟର ଗୁରୁପରିଚର୍ଯ୍ୟା, ଜ୍ଞାନପିପାସା ଓ ପ୍ରଗାଢ଼ ଅଧ୍ୟୟନାଭିନିବେଶ , ସନ୍ନ୍ୟାସୀର କଠୋରତପ, ସାଧନା, ଭକ୍ତର କରୁଣ ଭାବରାଶି, ଗାୟକର ସୁମଧୁର ସଙ୍ଗୀତ ତାନରେ ମୁଖଭଙ୍ଗୀ, ବୀରର ଅଦ୍ଭୁତ ବୀରତ୍ୱ ପ୍ରଦର୍ଶନ, ମୁମୂର୍ଷୁର ବ୍ୟାକୁଳ ମୁଖମଣ୍ଡଳ, ନାୟକ ନାୟିକାର ପ୍ରଣୟ ଚେଷ୍ଟା ଏବଂ ଗୃହସ୍ଥର ନାନା ସାଂସାରିକ କ୍ରିୟା କଳାପ ଆଦି ମନୁଷ୍ୟ ଜୀବନର ଦୃଶ୍ୟାବଳୀ କୋଣାର୍କ ମନ୍ଦିରର ସର୍ବତ୍ର ଅତି ସୁନ୍ଦର ଭାବରେ ଖୋଦିତ ହୋଇଅଛି । ଜନ୍ମଠାରୁ ମୃତ୍ୟୁଯାଏ ମନୁଷ୍ୟ ନାନା କ୍ଷେତ୍ରରେ ଯାହା ଯାହା କରିପାରେ, ସେ ସମୁଦାୟ ଦୃଶ୍ୟ ମନ୍ଦିର ଗାତ୍ରରେ ପ୍ରକଟନ କରିବାର ପ୍ରୟାସ କରିଛନ୍ତି କଳିଙ୍ଗର ଶିଳ୍ପୀବୃନ୍ଦ ।

ନିର୍ମାଣ କୌଶଳ– ଶିଳ୍ପ ଓ ସ୍ଥାପତ୍ୟ ପରି କୋଣାର୍କ ମନ୍ଦିରର ନିର୍ମାଣ କୌଶଳ ବା ଇଞ୍ଜିନିୟରିଂ ଆହୁରି ଆଶ୍ଚର୍ଯ୍ୟଜନକ । ଓଡ଼ିଆମାନେ କେଉଁ ଉପାୟରେ ସେ ଯୁଗରେ ଏତେ ବଡ଼ ବଡ଼ ପଥରମାନ ଶତ ଶତ ମାଇଲ ଦୂରରୁ ବୋହିଆଣି ଏତେ ଉଚ୍ଚମନ୍ଦିର ଉପରକୁ ଅବଲିଳାକ୍ରମେ ନେଇ କାମ କରିପାରିଥିଲେ ପ୍ରଧାନ ପ୍ରଧାନ ବିଦେଶୀ ଇଞ୍ଜିନିୟରମାନେ ତାହାର କଳ୍ପନା ସୁଦ୍ଧା କରିପାରୁନାହାନ୍ତି । ତେଣୁ ସାଧାରଣ ଦର୍ଶକ ମନେକରେ ଯେ କୌଣସି ଦୈବୀ ସାହାଯ୍ୟ ବିନା କୋଣାର୍କ ମନ୍ଦିରର ନିର୍ମାଣ ଅସମ୍ଭବ ।

କୋଣାର୍କ ଯେ ଓଡ଼ିଆ ଜାତିର ଗୌରବ ସ୍ତମ୍ଭ, ଓଡ଼ିଆ ଶିଳ୍ପ ପ୍ରତିଭାର ଅକ୍ଷୟ ପ୍ରମାଣ, ଓଡ଼ିଆ ମାନସିକ ଉନ୍ନତି ଓ ଜାତୀୟ ଗରିମାର ଉଜ୍ଜ୍ୱଳ ନିଦର୍ଶନ ଉତ୍କଳ ସନ୍ତାନ ଏପର୍ଯ୍ୟନ୍ତ ଏହା ଉପଲବ୍ଧି କରିଛନ୍ତି । ଆଜି ନାନା ବିପର୍ଯ୍ୟୟ ମଧ୍ୟରେ ଭାରତୀୟ ଆର୍ଯ୍ୟଜାତିର ସତ୍ତାରେ ଜାତୀୟ ସାହିତ୍ୟ, ଜାତୀୟ କଳା, ଜାତୀୟ ଶିଳ୍ପ ହିଁ ଦେଖିବାକୁ ମିଳେ । ଶିଳ୍ପରେ ଶିଳ୍ପୀଙ୍କ ବ୍ୟକ୍ତିତ୍ୱ ଆଜି ମଧ୍ୟ ଓଡ଼ିଆ ଜାତିର କୀର୍ତ୍ତିସ୍ତମ୍ଭ କୋଣାର୍କର ଜାତୀୟ ଭାବର ଅଭିବ୍ୟଞ୍ଜନା ପ୍ରକାଶ ପାଉଛି ।

ପ୍ରାଧ୍ୟାପିକା
ବି.ଜେ.ବି. (ସ୍ୱୟଂଶାସିତ) ମହାବିଦ୍ୟାଳୟ
ଭୁବନେଶ୍ୱର



# ଓଡ଼ିଶାର ନୈସର୍ଗିକ ଅଟ୍ଟାଳିକା : କନିକା

ପ୍ରଫୁଲ୍ଲ କୁମାର ଦାସ

ଓଡ଼ିଶାର ନୌବାଣିଜ୍ୟ ଇତିହାସ ଓ ଆଧ୍ୟାତ୍ମିକ ପରମ୍ପରାର ପରିସର କଥା ଚିନ୍ତା କଲାବେଳେ ଓଡ଼ିଶାର ନୈସର୍ଗିକ ଅଟ୍ଟାଳିକା କନିକା ସ୍ୱତଃ ସ୍ମରଣୀୟ । ଯେଉଁଠି ସାଧବ ଓ ସୌଦାଗର ଜାତି ସାଗର ଯାତ୍ରା ପାଇଁ ନଦୀ, ସାଗର ଏବଂ ସାମୁଦ୍ରିକ ବେଳା ଭୂମିରେ ଦେବାଦେବୀ, ଧର୍ମପୀଠ, ମଠ ମନ୍ଦିର ନିର୍ମାଣ କରିଥିଲେ, ଯାହାର ପ୍ରାକୃତିକ ଓ ନୈସର୍ଗିକ ଶୋଭା ସୌନ୍ଦର୍ଯ୍ୟର କମ୍ର ନମ୍ର ମନ୍ଦ୍ର ମାଧୁରିମାରେ ସୁନାର ବୋଇତ ବି ସୁନୀଳ ଜଳରାଶିରେ ନାଚି କୁଦି ପଡ଼େ । ହେଲେ ଆଜି ସେ ବୋଇତ ନାହିଁ କି ସେ ନୌବାଣିଜ୍ୟ ନାହିଁ, ହେଲେ ସେମାନଙ୍କ ସୁମଧୁର ସ୍ମୃତି ଶତାବ୍ଦୀ ଶତାବ୍ଦୀ ଧରି ଆଜିର ସାଂସ୍କୃତିକ ଇତିହାସକୁ ଉତ୍ସବ ମହୋତ୍ସବରେ ବାରବାର ନିରୀକ୍ଷଣ କରୁଛି । ସେଇ ବେଳା, ସେଇ କୂଳ, ସେଇ ଦେଉଳ, ସେଇ ସଉଧ କାଲି ଆଜି ବି ସାହିତ୍ୟିକ ଗବେଷଣାର ନୂତନ ଦିଗ ଉନ୍ମୋଚନ କରେ ।

କନକ କନିକା ୬୦୯ ଦେବାଦେବୀଙ୍କୁ କୋଳରେ ଧାରଣ କରି ପୁରାଣ ଓ ଇତିହାସର ବହୁ ନୈସର୍ଗିକ ଉପାଦାନ ଯୁଗ ଯୁଗ ଧରି ସାଇତି ରଖିଛି ଗଣ୍ଠିଧନ କରି । ଉତ୍କଳୀୟ ନୌବାଣିଜ୍ୟକୁ କେନ୍ଦ୍ରକରି କନିକାର ଅଧିକାଂଶ ଅଞ୍ଚଳରେ ବହୁ ପ୍ରାଚୀନ ଓ ପୁରାଣ ପ୍ରସିଦ୍ଧ ଦେବାଦେବୀଙ୍କ ସୁନ୍ଦର ବିଗ୍ରହ ଓ ମନୋରମ ଦେବାଳୟ ପରିଲକ୍ଷିତ ହୁଏ । ସମୟର କରାଳ ଗ୍ରାସରେ ବହୁ ଦେବାଦେବୀଙ୍କ ବିଗ୍ରହ ଓ ମନ୍ଦିର ଧ୍ୱଂସାଭିମୁଖୀ । ଓଡ଼ିଶାର ଆଧ୍ୟାତ୍ମିକ ଇତିହାସରେ କନିକା ସର୍ବ ଧର୍ମର ସମନ୍ୱୟ ପୀଠସ୍ଥଳୀ । ଯାହାର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ରୂପଲାବଣ୍ୟରେ ପ୍ରତ୍ନତାତ୍ତ୍ୱିକ ଶୋଭା ସମ୍ଭାର ଆଭାସ ମିଳେ । ସେଗୁଡ଼ିକ ମଧ୍ୟରୁ କେତେକ ପ୍ରସିଦ୍ଧ ସ୍ମୃତି ପୀଠର ସୁବର୍ଣ୍ଣ ଆଲେଖ୍ୟ ସମ୍ପର୍କରେ ଏକ ଆଲୋକପାତ ଉପସ୍ଥାପନା କରାଗଲା ।

ନୌବାଣିଜ୍ୟର ଅଧିଷ୍ଠାତ୍ରୀ ଦେବୀ–ପାଟଣମଙ୍ଗଳା

କନିକାର ପାଞ୍ଚମୁକାସ୍ଥିତ ଭିନ୍ନ ଏକ ଅବନ୍ତୀନଗର ନରେନ୍ଦ୍ରପୁର ଯେଉଁଠି ଧନେଶ୍ୱର ସାଧବର ଇଷ୍ଟଦେବୀ ଲଙ୍କେଶ୍ୱରୀ ପାଟଣମଙ୍ଗଳା ପୂଜା ପାଉଛନ୍ତି । ଏହି ଦେବୀଙ୍କୁ ସିଂହଳରୁ ବୋଇତରେ ଅଣାଯାଇଥିବା ଖୁଲଣାସୁନ୍ଦରୀ ଉପାଖ୍ୟାନରୁ ସଂଗ୍ରହ କରାଯାଇଛି । କବିବର ରାଧାନାଥ ରାୟଙ୍କ ଭାଷାରେ ''ପାଟଣ ମଙ୍ଗଳା ପ୍ରତିଷ୍ଠିତ ଯହିଁ ପୟୋଧି ତଟେ ବୈତାଳିକ ପ୍ରାୟେ ଶ୍ରୀପଦେ ପୟୋଧି ନିରତେ ଖଟେ।'' ତଅପୋଇ ଯୁଗରୁ ପାଟଣମଙ୍ଗଳା ନୌବାଣିଜ୍ୟ ସଂସ୍କୃତି ସହ ଓତଃପ୍ରୋତଃ ଭାବେ ଜଡ଼ିତ । ଦେବୀ ରାଜଲୀଳାସନ ଭଙ୍ଗୀରେ ସିଂହ ପୃଷ୍ଠରେ ବିରାଜିତା । ଏହା ୩ ଫୁଟ ଉଚ୍ଚତା ବିଶିଷ୍ଟ କଳାମୁଗୁନି ପଥରରେ ନିର୍ମିତ । ଦେବୀ ଚତୁର୍ଭୁଜା ଓ ସନ୍ତାନ ଧାରିଣୀ । ଏଭଳି ମୂର୍ତ୍ତି ବିଶ୍ୱର ବିରଳ । ଗଡ଼ଜାତର ଝାମୁଯାତ୍ରା ପରି ଏଠାରେ ମହାବିଷୁବ ସଂକ୍ରାନ୍ତିରେ ପାଟୁଆଯାତ୍ରା ଏବଂ ଐତିହାସିକ କଳିଙ୍ଗ ବାଲିଯାତ୍ରା ପରି ବିଶାଳ ବାଣିଜ୍ୟ ମେଳା ଅନୁଷ୍ଠିତ ହୁଏ । ଦେବୀଙ୍କ ପୀଠରେ ଦିନରେ ଖେଚଡ଼ି ଭୋଗ ଓ ରାତିରେ କ୍ଷୀରିପିଠା ଭୋଗ ଲାଗେ । କନିକା ରାଜବଂଶ ଦ୍ୱାରା ଦେବୀଙ୍କ ପୂଜା ଅର୍ଚ୍ଚନା କରାଯାଏ ।

ବାଣିଜ୍ୟ ଈଶ୍ୱରୀ ଧାମରାଈ

ଉତ୍କଳର ବହିଃଦ୍ୱାର ଓ ବିଶ୍ୱ ବିସ୍ମୟ ଭିତର କନିକାର ପ୍ରବେଶ ଦ୍ୱାର ତେଜଃଧାମ ଧାମରାର ଇଷ୍ଟଦେବୀ ମା ଧାମରାଈ । ଐତିହାସିକ କିମ୍ବଦନ୍ତୀ ଅନୁସାରେ ସାଧବ ସମ୍ରାଟ ଧନେଶ୍ୱର ସୌଦାଗର ପାଟଣ ମଙ୍ଗଳାଙ୍କୁ ବୋଇତରେ ଆଣିବା ବାଟରେ ବୋଇତରାଣୀ ବୈତରଣୀ ଗର୍ଭରୁ ଦେବୀ ଧାମରାଈଙ୍କୁ ପାଇ ଧାମରାଠାରେ ପ୍ରତିଷ୍ଠା କରିଥିଲେ । ଧାମରାରେ ପ୍ରତିଷ୍ଠା ହେବାରୁ ବା ଧୀବରମାନେ ସମୁଦ୍ର ଗର୍ଭରେ ପାଇଥିବାରୁ ଧାମରାଈ ନାମ କରଣ କରାଯାଇଥିବା କିମ୍ବଦନ୍ତୀରୁ ଜଣାଯାଇଛି । ଦେବୀ ଧାମରାଈ ଧୀବରୀ ପୂଜିତା ଓ ପରମ ବୈଷ୍ଣବୀ । ଦେବୀଙ୍କଠାରେ ଲକ୍ଷ୍ମୀ ଓ ମଙ୍ଗଳାଙ୍କ ସମନ୍ୱୟ ପରିଦୃଶ୍ୟ ହୁଏ । ଭକ୍ତର ମନସ୍କାମନା

ପାଇଁ ଦେବୀଙ୍କ ନିକଟରେ ଗୁଆ ଓ ତାଙ୍କ ମସ୍ତକରେ ଫୁଲ ଚଢ଼ାଯାଏ । ଦେବୀଙ୍କର ପ୍ରିୟ ବସ୍ତୁ କଳା ଶାଢ଼ୀ ଓ ପ୍ରିୟ ବସ୍ତୁ ସିନ୍ଦୂର । ମୁଖ୍ୟ ପର୍ବ ମକର ସଂକ୍ରାନ୍ତି ଏବଂ ପ୍ରିୟ ଭୋଗ ଉଖୁଡ଼ା । ଭୌମ ଯୁଗର ସପ୍ତମ ଶତାବ୍ଦୀରେ ଦେବୀଙ୍କୁ ପୂଜା କରାଯାଇଥିବା ଜଣାଯାଏ । କବି ବିନୋଦ ଚନ୍ଦ୍ର ଦାସଙ୍କ ଭାଷାରେ ''ଧାମରାଇ ଦେବୀ କଲରାଇ ତବ ସମୀପେ ସାଗର ନିତ୍ୟ କିଙ୍କର, ଦୁଃଖ ଦୁର୍ବିପାକେ ଧରେ ଯେହୁ ନାମ ପଲକେ ତାହାକୁ ଉଦ୍ଧାର କର ।''

ଐତିହ୍ୟ ଈଶ୍ୱରୀ ଡାକେଶ୍ୱରୀ

କନିକାର ପ୍ରାଣ କେନ୍ଦ୍ର ଐତିହାସିକ ବନ୍ଦର ସହର ଚାନ୍ଦବାଲି ସ୍ଥିତ ଓରାସାହିର କାଣ୍ଡଗରଡ଼ିଠାରେ ଐତିହ୍ୟ ଈଶ୍ୱରୀ ଦେବୀ ଡାକେଶ୍ୱରୀ ବିରାଜିତା । ଭଞ୍ଜକନିକାର କବି ପଣ୍ଡିତ ଦାମୋଦର ମିଶ୍ରଙ୍କ ଭାଷାରେ– କାଣ୍ଡଗରଡ଼ିରେ ବିଜେ ଡାକେଶ୍ୱରୀ, ଯାର ନାମେ ଭୟ ଯାଏ ଅପସରି । ନୌଯାତ୍ରା ପ୍ରିୟ ନାବିକ ଅଧିଷ୍ଠାତ୍ରୀ ଦେବୀ ଭାବରେ ଡାକେଶ୍ୱରୀ ପରିଚିତା । କିମ୍ବଦନ୍ତୀ ଅନୁସାରେ ଗୋପାଳ ବାଳକମାନେ ମଇଁଷି ଗୋଠରେ ବଂଶୀ ବାଦନ କରୁଥିବାବେଳେ ବଂଶୀର ସୁମଧୁର ମୂର୍ଚ୍ଛନାରେ ମହାଦେବୀ ଆକୃଷ୍ଟ ହୋଇ ଗୋପାଳ ବାଳକମାନଙ୍କୁ ପାଖକୁ ଡାକିଲେ । କିନ୍ତୁ ବାଳକମାନେ ସେ କଥାକୁ ଭ୍ରୂକ୍ଷେପ ନକରି ବଂଶୀର ସ୍ୱର ଯାହାର ଶୁଣିବାକୁ ମନ ସେ ତାଙ୍କ ପାଖକୁ ଆସୁ ବୋଲି କହିବାରୁ ଦେବୀ ରାଗ ଅଭିମାନରେ ସେମାନଙ୍କୁ ଚାହିଁଦେଲେ ଓ ବାଳକମାନେ ତତ୍‌କ୍ଷଣାତ୍ ମୃତ୍ୟୁ ବରଣ କଲେ । ତା'ପରେ ଗାଁ ଲୋକଙ୍କ ଆକୁଳ ପ୍ରାର୍ଥନା ଶୁଣି ଦେବୀ ମୃତ ବାଳକମାନଙ୍କୁ ଜୀବନ୍ୟାସ ଦେଇ ବକ୍ରମୁଖୀ ହୋଇ ଗଲେ । 'ତେଣୁ ବକ୍ରମୁଖ ଶମି ନାହିଁ ଭୀମ ଡାକିବାରୁ ହେଲା ଡାକେଶ୍ୱରୀ ନାମ ।' ନାବିକମାନେ ସମୁଦ୍ରରେ ନୌଯାତ୍ରା କଲାବେଳେ ଦେବୀଙ୍କୁ ସ୍ମରଣ କରିଥାନ୍ତି । କାଳକ୍ରମେ ଦେବୀ ନୌବାଣିଜ୍ୟ ସଂସ୍କୃତି ସହିତ ଜଡ଼ିତ ହୋଇଥିବା ଜଣାଯାଏ । ଡାକେଶ୍ୱରୀ ଦ୍ୱାଦଶଭୁଜା ଦୁର୍ଗା । ଦେବୀଙ୍କ ଦକ୍ଷିଣ ହସ୍ତ ସମୂହରେ ଖଡଗ, ଦଣ୍ଡ, ଶୂଳ, ତୀର, ଚକ୍ର ମହିଷିର ପୁଛ ଏବଂ ବାମ ହସ୍ତ ସମୂହରେ ଢ଼ାଲ, ଧନୁ, ଘଣ୍ଟି, ଛିନ୍ନ ଶିର, ପାଶ ଏବଂ ରାକ୍ଷସର ଗ୍ରୀବା ଶୋଭା ପାଏ । ମସ୍ତକ ବିହୀନ ମହିଷିର ଗ୍ରୀବା ଅଂଶରୁ ରାକ୍ଷସ ନିର୍ଗତ ହୋଇ ଖଡ଼ଗ୍ ଓ ଢ଼ାଲ ସାହାଯ୍ୟରେ ଦେବୀଙ୍କୁ ଆକ୍ରମଣ କରୁଛି ଏବଂ ଦେବୀ ଶୂଳ ଦ୍ୱାରା ବଧ କରୁଛନ୍ତି । ଦେବୀଙ୍କୁ ତାନ୍ତ୍ରିକ ମନ୍ତ୍ରରେ ପୂଜା କରାଯାଏ । ତାଙ୍କ ପୀଠରେ ପାର୍ଶ୍ୱ ଦେବତା ଗଣେଶ, ଭୈରବ, ଅବଲୋକିତେଶ୍ୱର, ରାଧାକୃଷ୍ଣ, ଅନନ୍ତ ନାରାୟଣ ଓ ହନୁମାନ ବିରାଜମାନ । ଏହି ପୀଠ ଶାକ୍ତ, ବୌଦ୍ଧ ଏବଂ ବ୍ରାହ୍ମଣ ଧର୍ମର ସମନ୍ୱୟ ବାର୍ତ୍ତା ପ୍ରଚାର କରେ । ଦେବୀ ଡାକେଶ୍ୱରୀ ନୃମୁଣ୍ଡମାଳିନୀ ଓ ଚାମୁଣ୍ଡା ସ୍ୱରୂପା ଦେବୀ ଅଷ୍ଟମ ଶତାବ୍ଦୀର ବୋଲି କିମ୍ବଦନ୍ତୀରୁ ଜଣାଯାଇଛି ।

ଦେବୀ ପଞ୍ଚ ବାରାହୀ

ବଙ୍ଗୋପ ସାଗର ସାତଭାୟାସ୍ଥିତ ପଞ୍ଚବାରାହୀ ସେଠାକାର ଅଧିଷ୍ଠାତ୍ରୀ ଦେବୀ । ଦେବୀଙ୍କ ଶରୀର ଗଠନ ନାରୀ ପରି ଏବଂ ମୁଖ ମଣ୍ଡଳ ବରାହ ସଦୃଶ । ପଞ୍ଚବାରାହୀ, ଜଞ୍ଜାଳୀ, କମଳିନୀ, ସରଳାବାଳୀ, ବାଟକୁମାରୀ ଏହିପରି ପାଞ୍ଚଟି ବରାହ ବଦନା ନାରୀ ମୂର୍ତ୍ତି । ତେଣୁ ଦେବୀଙ୍କ ନାମ ପଞ୍ଚବାରାହୀ । ସାତଭାୟା ପ୍ରାଚୀନ ଉତ୍କଳର ଏକ ସୁପ୍ରସିଦ୍ଧ ତନ୍ତ୍ରପୀଠ । ଦେବୀଙ୍କୁ କୈବର୍ତ୍ତମାନେ ପୂଜା କରନ୍ତି । ସାଧବ କନ୍ୟା ତଅପୋଇର ସାତଭାଇଙ୍କ ନାମାନୁସାରେ ଏ ସ୍ଥାନର ନାମ ସାତଭାୟା ହୋଇଥିବା କିମ୍ବଦନ୍ତୀ ରହିଛି । 'କନିକା ଦର୍ଶନ' ପୁସ୍ତକରେ ପ୍ରାବନ୍ଧିକ ଶଶୀଭୂଷଣ ରାୟ ସାତଭାୟା ଓ ପଞ୍ଚବାରାହୀ ଦେବୀଙ୍କ ସମ୍ପର୍କରେ ବହୁ ଲୁକାୟିତ ତଥ୍ୟ ପ୍ରଦାନ କରିଛନ୍ତି । ଦେବୀଙ୍କୁ ଅତି କମ୍‌ରେ ୫ଟି ଦ୍ରବ୍ୟ ଉପହାର ପ୍ରଦାନ କରାଯାଏ । ଦେବୀଙ୍କୁ ଖଦାଲୁଣୀ ପୂଜା କରିଥାନ୍ତି । ପ୍ରତିମାସ ଦେବୀ ଋତୁମତୀ ହୋଇ ଶୁଦ୍ଧ ସ୍ନାନ କରନ୍ତି । ଚୈତ୍ର ମାସରେ ଚୈତ୍ର ପାର୍ବଣ ଏଠାରେ ପାଳନ କରାଯାଏ । ପ୍ରତି ମଙ୍ଗଳବାରରେ ଦେବୀଙ୍କୁ ଦର୍ଶନ କରିବା ମନା । 'କନିକା' କାବ୍ୟରେ କବି ଦୟାନିଧି ମିଶ୍ର ପଞ୍ଚବାରାହୀ ସମ୍ପର୍କରେ କହିବାକୁ ଯାଇ ଗାଇ ଉଠିଛନ୍ତି– ''ଚିର ଯଉବନା ପ୍ରକୃତି କାମିନୀ, ସଦା ବୀର୍ଯ୍ୟବତୀ ସୁଷମାମାଳିନୀ, ରହିଛନ୍ତି ପଞ୍ଚବାରାହୀଙ୍କ ସଙ୍ଗେ ବଢ଼ାଇ କନିକା ଆନନ୍ଦ ସୁରଙ୍ଗେ ।''

ମାଟିଆ ମଙ୍ଗଳା

କନିକାସ୍ଥିତ ବାରଗାଁର ଅଧିଷ୍ଠାତ୍ରୀ ଦେବୀ ମାଟିଆ ମଙ୍ଗଳା । ଯାହାଙ୍କୁ ସୁମରଣା କରି ନାଉରୀ ଜାତି ନାବ ଅନୁକୂଳ କରେ । ବ୍ରାହ୍ମଣୀ ଓ ଖରସ୍ରୋତା ମିଳନ ସ୍ଥଳୀରେ ଦେବୀ ମାଟିଆ ମଙ୍ଗଳା ବିରାଜିତା । ଦେବୀଙ୍କ ମୁଖ୍ୟ ପର୍ବ ବିଷୁବ ସଂକ୍ରାନ୍ତି ଓ ପ୍ରିୟ ଭୋଗ ଗୁଡ଼ ନଡ଼ିଆ । ନାଉରୀମାନେ ନୌତରୀରେ ନୌଯାତ୍ରା କରିବାବେଳେ ଦେବୀଙ୍କ ପୀଠରେ ନଡ଼ିଆଟିଏ ଅର୍ପଣ କରିଥାନ୍ତି । କବି ପିତାମ୍ବର ମିଶ୍ରଙ୍କ ଭାଷାରେ– ''ମାଟିଆ ମଙ୍ଗଳା ମଙ୍ଗଳା ଗରୀରେ ଖେଳେ ନଦୀରେ ଯେ ଭୀମ ଭଉଁରୀ ତବ ନାମ ସ୍ମରି ପଲକ ମାତରେ ପାରି ହୋଇ ଯାଏ ସିନା ନାଉରୀ ।'' 'ମୁକୁନ୍ଦ ଦେବ' କାବ୍ୟରେ କବି ଶେଖର ଚିନ୍ତାମଣି ମହାନ୍ତି ମାଟିଆ ମଙ୍ଗଳା ପୀଠ ୧୫୬୮ ମସିହାରେ ପ୍ରତିଷ୍ଠା ହୋଇଛି ବୋଲି ଉଲ୍ଲେଖ କରିଛନ୍ତି ।

ଜୟଦୁର୍ଗା

ବିଶ୍ୱ ବିସ୍ମୟ ଭିତର କନିକା ମଧରେ ଡାଙ୍ଗମାଳ ବୋଲି ଗୋଟିଏ ଗାଁ । ସେଠାରେ ଦେବୀ ଜୟଦୁର୍ଗା ବିଦ୍ୟମାନ । ଏଠାରେ ମହାଦେବ, ଭୈରବୀ ନାଗା, ଅନନ୍ତ ବିଷ୍ଣୁ ପ୍ରଭୃତି ବୌଦ୍ଧ, ଜୈନ ଏବଂ ବ୍ରାହ୍ମଣ ଧର୍ମର ପ୍ରତିମୂର୍ତ୍ତି ଦୃଷ୍ଟିଗୋଚର ହୁଏ । ଦେବୀ ସମରଦେବୀ ଭାବରେ ବିଜୟର ପ୍ରତୀକ । ଦେବୀଙ୍କୁ ପୂଜା କରାଯାଇ ଭଞ୍ଜ ରାଜବଂଶ ଯୁଦ୍ଧାନୁକୂଳ କରିଥାନ୍ତି । ଦେବୀ ଜୟଦୁର୍ଗାଙ୍କ ଦୁଇ ପାର୍ଶ୍ୱରେ ୨ଟି ଖଣ୍ଡା ପୂଜା ପାଏ । 'ଭଞ୍ଜକନିକା' କାବ୍ୟରେ ପଣ୍ଡିତ କବି ଦାମୋଦର ମିଶ୍ରଙ୍କ ଭାଷାରେ ''ଦୟାମୟୀ ଜୟଦୁର୍ଗା ଦେବୀ ଚତୁର୍ଭୁଜା ରାଜଗୃହେ ରହି ନିତ୍ୟ ପାଉଛନ୍ତି ପୂଜା ।'' କନକ କନିକାର ଅଧିଷ୍ଠାତ୍ରୀ ଦେବୀ ଜୟଦୁର୍ଗା । ଦେବୀଙ୍କ ଉଚ୍ଚତା ୪ଫୁଟ ଓ ପ୍ରସ୍ଥ ୩ ଫୁଟ । ଦେବୀ ଶାକ୍ତ ମତରେ ପୂଜା ପାଆନ୍ତି । ପ୍ରତ୍ୟହ ସକାଳ ୬ ଟାରୁ ମଧ୍ୟାହ୍ନ ୧୨ଟା ଭିତରେ ତାଙ୍କୁ ପୂଜା କରାଯାଏ । ସନ୍ଧ୍ୟା ୬ଟା ପରେ ତାଙ୍କୁ ଦର୍ଶନ କରିବା ମନା । ଦେବୀ କରାଳ ବଦନୀ । ବୈଶାଖ ମାସ ବୁଦ୍ଧ ପୂର୍ଣ୍ଣିମାରେ ସାତଦିନ ବ୍ୟାପି ସପ୍ତା ବସେ, ଭାଗବତ ପାରାୟଣ ହୁଏ ।

ଖରାଖାଇ

ରାଜକନିକା ସ୍ଥିତ ଶିଆଳିଆ ଗ୍ରାମରେ ମା' ଖରାଖାଇ ଦଶଭୁଜା ଦୁର୍ଗା ଓ ମହାଶକ୍ତି ସ୍ୱରୂପା । କବାଟ ନଥିବା ଗାଁ ଶିଆଳିଆ ଏବଂ ମନ୍ଦିର ନଥିବା ମା' ଖରାଖାଇ । ଯେଉଁ ଦେବୀ ହୃଦୟରେ ତ୍ରିଭୁବନକୁ ଧାରଣ କରିଛନ୍ତି ତାଙ୍କର ପାର୍ଥିବ ଭବନ ମନ୍ଦିରର ଆବଶ୍ୟକତା ନାହିଁ । ଦେବୀଙ୍କ ପ୍ରତିମୂର୍ତ୍ତି ୪ ଫୁଟ ଉଚ୍ଚ ଓ କଳାଶ୍ରୀ ମଣ୍ଡିତ । ଶ୍ୱାନ ଶୃଗାଳ ପରିବେଷ୍ଟିତ ଶବ ଉପରେ ପଦ୍ମ ପାଖୁଡ଼ା ବିମଣ୍ଡିତ ପୀଠ । ଦୁର୍ଗା ଓ କାଳୀଙ୍କ ସମନ୍ୱୟ ରୂପ ଖରାଖାଇ । ତାଙ୍କର ପ୍ରଧାନ ପର୍ବ ବିଷୁବ ସଂକ୍ରାନ୍ତି ଓ କାର୍ତ୍ତିକ ପୂର୍ଣ୍ଣିମା । ମାଟି ଘୋଡ଼ା ଅର୍ପଣ କରି ମା'ଙ୍କୁ ବାଲ୍ୟ ଭୋଗ ଦିଆଯାଏ । ମା'ଙ୍କ ଦୟାରୁ ଗାଁରେ କବାଟ ନ ଥିଲେ ବି ଚୋର ଭୟ ନାହିଁ ।

କାଳିକାଇ

ମା' କାଳିକାଇ କନିକାର ଅନ୍ୟତମ ଶକ୍ତିପୀଠ । ଦେବୀଙ୍କ ପ୍ରଚ୍ଛଦ ପଟରେ ଏକ ବିସ୍ମୟକର ମନୋରମ କାହାଣୀ ଜନଶ୍ରୁତି ହୋଇ ରହିଛି । ଗଙ୍ଗାଧର ନାମକ ସାଧବ ଚିଲିକାରୁ ଏହି ଦେବୀଙ୍କୁ ବୋଇତରେ ଆଣି ପ୍ରତିଷ୍ଠା କରିଛନ୍ତି । କାଳିକାପୁର ଓ କାଳିଜାଇଙ୍କୁ କେନ୍ଦ୍ରକରି ଦେବୀଙ୍କ ନାମ କାଳିକାଇ ରଖାଯାଇଥିବା ଅନୁମାନ କରାଯାଏ । ଦେବୀ ସାଗର କନ୍ୟା ଓ ନାବିକା ପୂଜିତା । କାଳିକାଇ ଉତ୍କଳୀୟ ନୌବାଣିଜ୍ୟ ସଂସ୍କୃତି ସହିତ ଜଡ଼ିତ । କବି ପିତାମ୍ବର ମିଶ୍ରଙ୍କ ଭାଷାରେ କାଳିକାଇ ଆଜି କାଳିକା ଦିନ ଯାଇଛି ଚାଲି ନ ଯାଏ ବୋଇତ ଆଉ ତ ଜାଭା ସୁମାତ୍ରା, ବାଲି । ଦେବୀ ଚତୁର୍ଭୁଜା, ଲୋଳ ଜିହ୍ୱା, ମୁକ୍ତକେଶୀ, ମେଘ ବର୍ଣ୍ଣା, କରାଳ ବଦନା ଏବଂ ତାନ୍ତ୍ରିକ ମତରେ ପୂଜାପାଏ । ହସ୍ତରେ ଛିନ୍ନ ଶିର ଖଡଗ ଖର୍ପର ଧାରଣ କରି ନୌକା ମଙ୍ଗରେ ବିରାଜିତା । ଦେବୀଙ୍କ ଉଚ୍ଚତା ୨ ଫୁଟ ଓ କଳା ମୁଗୁନି ପଥରରେ ଦେବୀଙ୍କ ପ୍ରତିମୂର୍ତ୍ତି ନିର୍ମିତ । ମହାଦେବୀ କନକ କନିକାର ଗୌରବୋଜ୍ଜ୍ୱଳ ଆଧ୍ୟାତ୍ମିକ ପରମ୍ପରାର ମୂକସାକ୍ଷୀ ।

ଓଡ଼ିଶାର ଦେବାଦେବୀ ଇତିହାସରେ କନିକାର ସ୍ଥାନ ଓ ଦାନ ସ୍ୱତନ୍ତ୍ର । ଏହି ପୀଠର ସ୍ଥାପତ୍ୟ, କଳା, ସଂସ୍କୃତି ଓ ପର୍ବ ପର୍ବାଣି ଧାର୍ମିକ, ସାମାଜିକ, ସାଂସ୍କୃତିକ ଚେତନାର ଐକାନ୍ତିକ ଏବଂ ଅଲୌକିକ ଧାରା । ଇତିହାସ ବକ୍ଷରେ ବହୁ କିମ୍ବଦନ୍ତୀର ପ୍ରଚୁର ଉପାଦାନ କନିକାରେ ସାଇତା ହୋଇ ରହିଛି । କଳିଙ୍ଗ-ଉତ୍କଳ-ଓଡ଼ିଶାର ସୁବିସ୍ତୃତ ସୁବିଶାଳ ମନୋରମ ବେଳାଭୂମିରେ ନୌବାଣିଜ୍ୟ ସଭ୍ୟତା ସଂସ୍କୃତିର ଅତରଦାନୀ । ଓଡ଼ିଆ ସାଧବ ପୁଅର ବାଣିଜ୍ୟିକ ସ୍ୱାଭିମାନ ଓ ନୌବାଣିଜ୍ୟର ଆରାଧ୍ୟ ଦେବୀ ମଙ୍ଗଳାଙ୍କ ଅଲୌକିକ କାହାଣୀର ସ୍ୱରନ୍ତ୍ର ଆଲେଖ୍ୟ ତଅପୋଇ ଏବଂ ଖୁଲଣା ସୁନ୍ଦରୀ ଉପାଖ୍ୟାନର ଐତିହାସିକ ପୃଷ୍ଠଭୂମି କନିକା । ''ଯୁଗେ ଯୁଗେ କନିକା'' ଓ ''ସୁନାର କନିକା'' ପୁସ୍ତକରେ କନିକାର ଧାର୍ମିକ ସ୍ଥିତି ଭିତ୍ତି ଓ ଭାରତୀ ବିଶ୍ୱ ପର୍ଯ୍ୟଟନ ମାନଚିତ୍ରରେ ନିଆରା ।

କନିକା ଗବେଷକ ପ୍ରାଧ୍ୟାପକ ଶାନ୍ତନୁ ମହାନ୍ତି ଓ ଭାଷା ଭାସ୍କର ପ୍ରଫୁଲ୍ଲ ଦାସଙ୍କ କର୍ମ ଭୂମି କନିକା ଆଜି ଯେତେବେଳେ ସମୟ ଓ ଶତାବ୍ଦୀ କୋଳରେ ସେ ସୁବର୍ଣ୍ଣ ଐତିହ୍ୟ ଏବଂ ଐତିହାସିକ ଚିତ୍ର ଓ ଚେହେରାକୁ ଆଖି ସାମ୍ନାରେ ବାରବାର ଦେଖେ, ସେତେବେଳେ କନିକାର ନୌବାଣିଜ୍ୟର ଦୁଃସାହସିକ ବହୁ ବିସ୍ମୟକର ଉଜ୍ଜ୍ୱଳ ସ୍ମାରକୀ ସିନେମାର ଛାୟାଛବି ପରି ଦୃଶ୍ୟମାନ ହୁଏ । ଓଡ଼ିଶାର ନୈସର୍ଗିକ ଆକାଶରେ ଶତାବ୍ଦୀ ଶତାବ୍ଦୀ ସୁମଧୁର ସ୍ମୃତି ମନ୍ଦ ମନ୍ଦ ମୃଦୁ ହିଲ୍ଲୋଳରେ ପହଁରି ଆସେ ସମୁଦ୍ରର ସୁନୀଳ ଜୁଆର ପାଣି ପରି । ଫଳରେ ଆଜି ସାହିତ୍ୟ ନିଃଶ୍ୱାସରୁ ଚନ୍ଦନ ବାସ୍ନା ଚହଟି ଯାଏ ଓ ଉଚ୍ଛଳ ତାରୁଣ୍ୟ ଢ଼େଉ ଭାଙ୍ଗେ । କଳିଙ୍ଗ ବାଲିଯାତ୍ରା ନାଁ ଶୁଣିଲେ କନିକା ମାଟିରେ ପ୍ରବାହିତ ହୁଏ ବସନ୍ତର ମଧୁମଳୟ । ଦେବାଦେବୀ ସ୍ମୃତି ପୀଠରେ ଶୁଭେ ଆଧ୍ୟାତ୍ମିକ କୋଇଲିର କୁହୁତାନ..... ।

ସମ୍ପାଦକ
ଗୋପବନ୍ଧୁ ସାହିତ୍ୟ ସଂସଦ
ଚାନ୍ଦବାଲି, ଭଦ୍ରକ

# ପକ୍ଷୀତୀର୍ଥ ଚିଲିକା

ଡକ୍ଟର ଶରତ କୁମାର ବିଶ୍ୱାଳ

ଓଡ଼ିଶା ଇତିହାସର ମୂକସାକ୍ଷୀ, ପ୍ରକୃତିରାଣୀର ଶୋଭାର ଭଣ୍ଡାର, ଉତ୍କଳର ଚାରୁ ଅଳଙ୍କାର, କବି ଭାବୁକଙ୍କର ପ୍ରେରଣାର ଉତ୍ସ ଓ ଲକ୍ଷାଧିକ ଗରିବ ଲୋକଙ୍କ ଭାତହାଣ୍ଡି ହେଉଛି ଏହି ମରାଳାମାଳିନୀ ନୀଳାମ୍ବୁ ଚିଲିକା । ପୃଥିବୀରେ ଥିବା ୫୨୭ଟି ବୃହତ୍ତମ ହ୍ରଦ ମଧ୍ୟରୁ ଚିଲିକା ଅନ୍ୟତମ ଅଟେ । ମଧୁର ଅମ୍ଳଜଳ ଧାରଣ କରିଥିବା ହ୍ରଦମାନଙ୍କ ମଧ୍ୟରେ ଚିଲିକା ହେଉଛି ଆମ ଦେଶର ବୃହତ୍ତମ ସାମୁଦ୍ରିକ ହ୍ରଦ । ପ୍ରାୟ ପାଞ୍ଚ ହଜାର ବର୍ଷ ତଳେ ଚିଲିକାର ଜନ୍ମ ହୋଇଥିଲା ବଙ୍ଗୋପ ସାଗରରୁ । ସମୁଦ୍ର ବିଜ୍ଞାନୀମାନଙ୍କ ମତରେ ପ୍ରଥମେ ଚିଲିକାର ଶଯ୍ୟା ଏକ ଶୁଷ୍କ ଭୂମି ଥିଲା । ବଙ୍ଗୋପ ସାଗରରେ ଜଳରାଶି କୌଣସି କାରଣରୁ ସେହି ଅଞ୍ଚଳ ଭିତରକୁ ପଶି ଆସିଲା । ଫଳରେ ଚିଲିକା ହ୍ରଦର ସୃଷ୍ଟି ହେଲା । ଓଡ଼ିଶାର ଗଞ୍ଜାମ ଓ ଅବିଭକ୍ତ ପୁରୀ ଜିଲ୍ଲାର ସମୁଦ୍ର ଉପକୂଳରେ ଏହି ହ୍ରଦ ଅବସ୍ଥିତ । ଚିଲିକା ସୁମଦ୍ର ଉପକୂଳ ସହିତ ସମାନ୍ତରାଳ ଭାବେ ରହିଛି । ଚିଲିକା ଦେଖିବାକୁ ମୂଳରୁ ଓସାରିଆ ହୋଇ ଡେଙ୍ଫ ଆଡ଼କୁ ସରୁ ହୋଇଯାଇଥିବା ନାସ୍‌ପାତି ଫଳର ଆକାର ପରି । ଏକ ବିରାଟ ବାଲିସ୍ତୂପ ଦ୍ୱାରା ଏହାର ଜଳରାଶି ବଙ୍ଗୋପ ସାଗରଠାରୁ ବିଚ୍ଛିନ୍ନ ହୋଇଅଛି ।

ଚିଲିକା ଜଳର ଲବଣ ଅଂଶ ବର୍ଷର ବିଭିନ୍ନ ସମୟରେ ପରିବର୍ତ୍ତନ ହୋଇ ମଧୁର ଖାରଯୁକ୍ତ ଓ  ମଧୁର ଅମ୍ଳ ମିଶ୍ରିତ ଅବସ୍ଥାକୁ ଆସୁଥାଏ । ବିସ୍ତୀର୍ଣ୍ଣ ବାଲୁକା ସ୍ତୂପ ଏହାର ଜଳରାଶିକୁ ସମୁଦ୍ର ଢେଉରୁ ଦୂରେଇ ରଖୁଥିବାରୁ ଚିଲିକାର ବିପୁଳ ଜଳରାଶି ପ୍ରାୟ ଶାନ୍ତ ଅବସ୍ଥାରେ ରହେ । ଏହାର ଅଗଭୀର ଜଳରାଶି ଉପରେ ପ୍ରବାହିତ ହେଉଥିବା ପବନ ଯୋଗୁଁ ଛୋଟ ଛୋଟ ଢେଉ ସୃଷ୍ଟି ହୋଇଥାଏ । ସାଧାରଣତଃ ଏହି ଢେଉଗୁଡ଼ିକ ଖୁବ୍ ଅଳ୍ପ ସେ.ମି ଉଚ୍ଚତାରେ ଆସିଥାଏ । ଝଡ଼ପବନ ହେଲେ ଢେଉର ଉଚ୍ଚତା ୦.୨୫ ମିଟର ପର୍ଯ୍ୟନ୍ତ ହୋଇଥାଏ । ସମୁଦ୍ରର ପ୍ରବେଶ ପଥରେ ଜୁଆର ସାଧାରଣତଃ ୦.୩୬ ମିଟରରୁ ୦.୮୫ ମିଟର ପର୍ଯ୍ୟନ୍ତ ହୋଇଥାଏ ।

ଚିଲିକା ହ୍ରଦର ପ୍ରସ୍ଥ ୩୨.୨ କିଲୋମିଟର ଓ ଲମ୍ବ ୭୨ କିଲୋମିଟର ଅଟେ । ଏହାର ଜଳର ଗଭୀରତା ବିଭିନ୍ନ ସ୍ଥାନରେ ଓ ବିଭିନ୍ନ ଋତୁରେ ଭିନ୍ନ ଭିନ୍ନ ଅଟେ । ବର୍ଷାଋତୁରେ ଚିଲିକା ଜଳର ଗଭୀରତା ୧.୭୩ ମିଟରରୁ ୩.୭ ମିଟର ପର୍ଯ୍ୟନ୍ତ ରହେ । କିନ୍ତୁ ଖରାଦିନେ ଏହା କମି ୦.୯୩ ମିଟରରୁ ୨.୬ ମିଟର ଭିତରେ ରହେ । ହାରାହାରି ଚିଲିକା ଜଳର ଗଭୀରତା ୧.୫ ମିଟର । ଚିଲିକା ହ୍ରଦକୁ ସାଧାରଣତଃ ୩ ଭାଗରେ ବିଭକ୍ତ କରାଯାଇଅଛି । ଯଥା–

୧)ସମୁଦ୍ରକୁ ପ୍ରବେଶପଥ– ଏହାକୁ ମଗର ମୁହଁ କୁହାଯାଏ । ୯୦ ରୁ ୧୩୦ ମିଟର ମଧ୍ୟରେ ଏହାର ଓସାର ।

୨) ବାହାର ଜଳ ପ୍ରଣାଳୀ– ଏହାର ଲମ୍ବ ହେଉଛି ୨୯ କିଲୋମିଟର ଏବଂ ଓସାର ୦.୩୬୫ କିଲୋମିଟର ।

୩) ହ୍ରଦର ମୁଖ୍ୟ ଅଂଶ– ବର୍ଷାଦିନେ ଏହାର କ୍ଷେତ୍ରଫଳ ୧୧୬୫ ବର୍ଗ କିଲୋମିଟର ରହେ । ଖରାଦିନେ ଜଳ ସଂକୁଚିତ ହୋଇ ମୁଖ୍ୟ ଅଂଶର କ୍ଷେତ୍ରଫଳ ୯୦୬ ବର୍ଗ କିଲୋମିଟରକୁ ଖସି ଆସେ । ହାରାହାରି ଏହା ୧୦୩୫ ବର୍ଗ କିଲୋମିଟର ପରିମିତ ଅଞ୍ଚଳରେ ଜଳ ପ୍ଲାବିତ କରି ରହିଥାଏ ।

ଚିଲିକାରେ ପ୍ରାୟ ୧୩ଟି ନଦୀ ନାଳ ମିଶିଛନ୍ତି । ସେମାନଙ୍କ ମଧ୍ୟରେ ଦୟା, ଭାର୍ଗବୀ, କୁସୁମୀ, ମକରା, ଶାଳିଆ, ଲୁଣା, ଖରିଆ, କଂସାରୀ ଓ ଭୁବନିଆ ପ୍ରଭୃତି ମୁଖ୍ୟ ଅଟନ୍ତି । ଦକ୍ଷିଣ ପାର୍ଶ୍ୱରେ ଚିଲିକାକୁ ଋଷିକୁଲ୍ୟା ମୁହାଣ ସହ ସଂଯୁକ୍ତ କରୁଥିବା ପାଲୁର

କେନାଲର ସତ୍ତା ଲୋପ ପାଇଯିବା ଉପରେ ବସିଲାଣି । ଏତଦ୍‌ବ୍ୟତୀତ ଚିଲିକାର ଦକ୍ଷିଣ-ପଶ୍ଚିମରେ ଘଣ୍ଟିଶିଳା ପାହାଡ଼ ଜଳ ପତନର ୧୪୬ ମିଟର ଉପରେ ଅଛି । ବାଲୁଗାଁର ଉତ୍ତର ଓ ଦକ୍ଷିଣକୁ ଅବସ୍ଥିତ ଶୋଲରୀ ଓ ଭାଲେରୀ ପାହାଡ଼ର ଉଚ୍ଚତା କ୍ରମାନ୍ୱୟରେ ୪୬୦ ଓ ୪୬୨ ମିଟର ଅଟେ । ବାଲୁଗାଁଠାରୁ ପୂର୍ବକୁ ୧୫ କିଲୋମିଟର ଦୂରରେ ଚିଲିକା ମଝିରେ ପାରିକୁଦ ଦ୍ୱୀପ । ଏହାଛଡ଼ା ଚିଲିକା ମଝିରେ ପ୍ରସିଦ୍ଧ କାଳିଜାଈ ଠାକୁରାଣୀ ମନ୍ଦିର, ମାଲୁଦ ଦ୍ୱୀପ ଅବସ୍ଥିତ । ଚଢ଼େଇ ହଗା ଓ ଜଟିଆ ପାହାଡ଼, ନଳବଣ, ନୌବାହିନୀ ତାଲିମ କେନ୍ଦ୍ର ଇତ୍ୟାଦି ଦର୍ଶନୀୟ ସ୍ଥାନ ଅଛି । ଚିଲିକା ଉପକୂଳରେ ବାଲୁଗାଁ, ମଙ୍ଗଳା ଯୋଡ଼ି, ଭୂଷଣ୍ଡପୁର, ବାଲିପାଟପୁର, ଦେଇପୁର, ସୁନ୍ଦରପୁର, ଅଭିମାନପୁର, ସୋରଣ, ବାଲିନାସି, କାଳୁପଡ଼ା, ବରକୁଳ, ଚିଲିକା ସାହି ଇତ୍ୟାଦି ଗ୍ରାମଗୁଡ଼ିକ ଚିଲିକାକୁ ଘେରି ରହିଛନ୍ତି ।

ପକ୍ଷୀମାନେ ହେଉଛନ୍ତି ଚିଲିକାର ମୁଖ୍ୟ ଆକର୍ଷଣ । ସେମାନଙ୍କ ପାଇଁ ଚିଲିକା ତୀର୍ଥଭୂମି ସଦୃଶ୍ୟ । ଶୀତ ଋତୁରେ ଦେଶ ବିଦେଶରୁ ବହୁ ସଂଖ୍ୟାରେ ପକ୍ଷୀମାନେ ଚିଲିକାକୁ ଆସନ୍ତି । ଭାରତର ଲାଦାଖ ଅଞ୍ଚଳ, ହିମାଳୟର ପାର୍ବତ୍ୟାଞ୍ଚଳ ଓ କାଶ୍ମୀର ପ୍ରଭୃତି ରାଜ୍ୟରୁ ପକ୍ଷୀମାନେ ଚିଲିକାକୁ ଆସିଥାନ୍ତି । ବିଦେଶରୁ ଆସୁଥିବା ପକ୍ଷୀମାନେ ସାଧାରଣତଃ ସାଇବେରିଆ, କାସ୍ପିଆନ ସାଗର, ବୈକାଲ ହ୍ରଦ, ମଙ୍ଗୋଲିଆର ଷ୍ଟେଫି, ଲେବାନନ, ସ୍ପେନ, ତିବ୍ବତ ଓ ଇରାକ ପ୍ରଭୃତି ଅଞ୍ଚଳରୁ ଆସିଥାନ୍ତି । ପକ୍ଷୀ ବିଶେଷଜ୍ଞ ଓ ପରିବେଶବିତ୍‌ମାନଙ୍କ ମତ ଅନୁସାରେ ଚିଲିକାକୁ ପ୍ରାୟ ୧୫୧ ପ୍ରଜାତିର ପକ୍ଷୀ ଆସନ୍ତି । ଶୀତଦିନେ ଏମାନଙ୍କର ସଂଖ୍ୟା ବୃଦ୍ଧି ହୁଏ । ରଙ୍ଗ ବେରଙ୍ଗର ଦଳ ଦଳ ପକ୍ଷୀ ଚିଲିକାର ବକ୍ଷକୁ ବିଭିନ୍ନ ରଙ୍ଗରେ ସୁଶୋଭିତ କରିଦିଅନ୍ତି । ୯୩ ପ୍ରଜାତିର ପକ୍ଷୀ ଭାରତ ବାହାରୁ ବିଶେଷ କରି ହିମାଳୟର ଉତ୍ତର-ପଶ୍ଚିମ ଦେଶ ସମୂହରୁ ଆସିଥାଆନ୍ତି । ଚା ଚଢ଼େଇ, ବତକ, ହଂସ, ଇଗଲ ଜାତିର ବିଭିନ୍ନ ପକ୍ଷୀ, ବଗ, ଗଙ୍ଗୋଇ, ଦଦରାହଣା, କଙ୍କ, କାମ ଚଢ଼େଇ ଦଳପିମ୍ପି ଚଢ଼େଇ ଓ ସମୁଦ୍ର କାକ ପ୍ରଭୃତି ଚିଲିକାରେ ଦେଖାଯାଆନ୍ତି । ବିଦେଶାଗତ ପକ୍ଷୀମାନଙ୍କ ମଧ୍ୟରେ ଲଞ୍ଜାହଂସ କାସ୍ପିଆନ ହ୍ରଦ ଅଞ୍ଚଳରୁ ଆସିଥାନ୍ତି । ପୂର୍ବ କିରଗିଜ୍‌ରୁ ହଂସରାଳି ଓ ତିବ୍ବତର ବିଭିନ୍ନ ସ୍ଥାନରୁ ଦଦରାହଣା, ଚନ୍ଦ୍ରବାକ୍ ବା ପାଣ୍ଡାହଂସ ପ୍ରମୁଖ ଆସନ୍ତି । ପଦ୍ମନାଡ଼ି ବା ଏରା ଚଢ଼େଇମାନେ ଇରାକର ରୋଜାଇୟେ ହ୍ରଦରୁ ଚିଲିକାକୁ ଆସିଥାନ୍ତି । ଚନ୍ଦନା, ଚଟୁଆ, କେଦାରପାଣ୍ଡିଆ, କଳାହଂସ, ମାଟିଆ ଗେଣ୍ଡା, ଜଟିଆ ହଂସ, ପାତିହଂସ, ଚାମଚ ଦାଢ, ଚକୁଆ ଚକୋଇ, ଧଣ୍ଡଗିଳା ବଗ, କଳାବାଜେଣି, ଘଣ୍ଟୁଆ ଓ ଶଙ୍ଖଚିଲ ପ୍ରଭୃତି ପକ୍ଷୀମାନେ ଚିଲିକା ବକ୍ଷରେ ଦେଖାଯାଆନ୍ତି । ମାଛ ଖାଉଥିବା ଏକ ପ୍ରକାର ପେଚା ମଧ୍ୟ ଚିଲିକାରେ ଦେଖିବାକୁ ମିଳନ୍ତି । ସ୍ଥାନୀୟ ବାସିନ୍ଦାମାନେ କେତେକ ପକ୍ଷୀଙ୍କୁ ସେମାନଙ୍କ ଆକୃତି, ଖାଇବା ପ୍ରଣାଳୀ ଓ ରଙ୍ଗ ଇତ୍ୟାଦିକୁ ଦେଖି ସ୍ଥାନୀୟ ନାମକରଣ କରିଛନ୍ତି । ବଗଜାତିର ଏକ ପ୍ରକାର ବଡ଼ପକ୍ଷୀ ପାଣିରେ ଥିବା ଧଣ୍ଡସାପକୁ ଗୋଟିକିଆ ଗିଳିପକାନ୍ତି । ତେଣୁ ସେମାନଙ୍କୁ ଧଣ୍ଡଗିଳା ବଗ ବୋଲି କୁହାଯାଏ । ଚା' ଚଢ଼େଇମାନଙ୍କୁ ବ୍ରିଟିଶ ଅଫିସରମାନେ ଶିକାର କରି ସକାଳେ ଓ ସନ୍ଧ୍ୟାରେ ଚା' ସହିତ ଖାଉଥିଲେ ବୋଲି ଲୋକମାନେ ସେ ଚଢ଼େଇମାନଙ୍କୁ ଚା' ଚଢ଼େଇ ନାମ ଦେଇଛନ୍ତି । ପଦ୍ମନାଡ଼ି ପକ୍ଷୀମାନଙ୍କର ପରର ରଙ୍ଗ ପଦ୍ମପାଖୁଡ଼ାର ରଙ୍ଗ ପରି ଈଷତ୍ ଗୋଲାପି ଓ ବେକ ଖୁବ୍ ଲମ୍ବା ଏବଂ ସରୁ ଅଟେ । ତେଣୁ ଏମାନଙ୍କୁ ସ୍ଥାନୀୟ ଲୋକମାନେ ପଦ୍ମନାଡ଼ି ପକ୍ଷୀ କୁହନ୍ତି ।

ଚିଲିକାକୁ ଶୀତଦିନେ ଅଧିକ ପକ୍ଷୀ ଆସିଥାନ୍ତି । ଏହାର କାରଣ ହେଲା– ଉତ୍ତରାଞ୍ଚଳ ସ୍ଥାନମାନଙ୍କରେ ଶୀତର ମାତ୍ରା ବଢ଼ିବା ପରେ ପରେ ପ୍ରବଳ ତୁଷାରପାତ ହୁଏ । ଶୀତ ଋତୁରେ ପକ୍ଷୀମାନଙ୍କର ଶରୀରର କେତେକ ଅଙ୍ଗ ଏହା ଫଳରେ ଅକାମୀ ହୋଇପଡ଼େ । ତେଣୁ ଏହି ସ୍ଥାନ ପରିବର୍ତ୍ତନ ସକାଶେ ପକ୍ଷୀମାନେ ଦେଶାନ୍ତର ଗମନ କରିଥାନ୍ତି । ପକ୍ଷୀ ବିଶେଷଜ୍ଞମାନଙ୍କ ମତରେ ପର୍ଯ୍ୟଟନ ଋତୁରେ ପକ୍ଷୀମାନଙ୍କର ଦେଶାନ୍ତର ପର୍ଯ୍ୟଟନ ଏକ ସହଜାତ ପ୍ରବୃତ୍ତି । ଏତଦ୍‌ବ୍ୟତୀତ ଚିଲିକାର ଶାନ୍ତ, ଶୁଭ୍ର ଓ ମଧୁରାମ୍ଳ ଜଳରାଶି ପକ୍ଷୀମାନଙ୍କର ବିଚରଣ ପାଇଁ ଅନୁକୂଳ ଅଟେ । ଉଭୟ ତୃଣଭୋଜୀ ଓ ମାଂସାସୀ ପକ୍ଷୀମାନଙ୍କ ପାଇଁ ପ୍ରଚୁର ପରିମାଣରେ ଖାଦ୍ୟ ଯଥା– ଜଳ ଗୁଳ୍ମ, ମାଛ, କଙ୍କଡ଼ା, ଚିଙ୍ଗୁଡ଼ି, ଦଳ, କୀଟ ଓ ପତଙ୍ଗ ଇତ୍ୟାଦି ମିଳୁଥିବାରୁ ଏଠାକୁ ପକ୍ଷୀମାନେ ଆସିଥାନ୍ତି । ଅକ୍ଟୋବର ଓ ନଭେମ୍ବର ମାସରୁ ପକ୍ଷୀମାନଙ୍କର ଆଗମନ ହୁଏ ଓ ମାର୍ଚ୍ଚ ମାସ ଶେଷ ବେଳକୁ ପୁଣି ସେମାନେ ନିଜ ନିଜ ସ୍ଥାନକୁ ଫେରିଆନ୍ତି ।

ପକ୍ଷୀମାନେ ହଜାର ହଜାର କିଲୋମିଟର ପଥ ଅତିକ୍ରମ କରି ଚିଲିକାକୁ ଆସୁଥିଲାବେଳେ କିପରି ସଠିକ୍ ଦିଗ ନିର୍ଣ୍ଣୟ କରିପାରୁଛନ୍ତି ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ପକ୍ଷୀମାନଙ୍କର ଦୃଷ୍ଟିଶକ୍ତି ଅତ୍ୟନ୍ତ ପ୍ରଖର । ବହୁ ଉଚ୍ଚରେ ଉଡୁଥିଲାବେଳେ ନିମ୍ନ ଭାଗର ସମସ୍ତ ଦୃଶ୍ୟପଟ, ସେମାନେ ଭଲ ଭାବରେ ଦେଖିପାରନ୍ତି । କମ୍ ଯାତ୍ରା ପଥ ସହ ସଠିକ୍ ଦିଗ ନିର୍ଣ୍ଣୟ କରିପାରନ୍ତି । ପକ୍ଷୀମାନଙ୍କର ଆଖି ଓ ମସ୍ତିଷ୍କ ଭିତରେ ଏଭଳି

ଏକ କୋଷଗୁଚ୍ଛ ରହିଛି, ଯାହା ପୃଥିବୀର ଚୁମ୍ବକ କ୍ଷେତ୍ରୀୟ ସୂଚନା ଆହରଣ କରିବାରେ ସାହାଯ୍ୟ କରେ । କେତେକ ପକ୍ଷୀ ବିଶେଷଜ୍ଞଙ୍କ ମତ ଯେ, ସୂର୍ଯ୍ୟଙ୍କ ଦ୍ୱାରା ପକ୍ଷୀମାନେ ଦିଗ ନିର୍ଣ୍ଣୟ କରିଥାନ୍ତି । ସକାଳେ ସୂର୍ଯ୍ୟୋଦୟ ମଧ୍ୟାହ୍ନରେ ମୁଣ୍ଡ ଉପରେ ଥିବା ସୂର୍ଯ୍ୟ ଓ ସୂର୍ଯ୍ୟାସ୍ତକୁ ଚାହିଁ ଏମାନେ ଦିଗ ନିର୍ଣ୍ଣୟ କରିଥାନ୍ତି । ବଡ଼ ଦିନ ଓ ଛୋଟ ଦିନରୁ ମଧ୍ୟ ପକ୍ଷୀମାନେ ସମୟ ଜାଣି ପାରନ୍ତି ବୋଲି ବିଶ୍ୱାସ । କେତେକ ପକ୍ଷୀଙ୍କର ସ୍ୱତନ୍ତ୍ର ଗ୍ରନ୍ଥି ତାଙ୍କୁ ଏହା ଜାଣିବାରେ ସାହାଯ୍ୟ କରେ । ପକ୍ଷୀମାନେ ଦଳ ଦଳ ହୋଇ ଘଣ୍ଟାକୁ ୪୬ରୁ ୬୪ କିଲୋମିଟର ବେଗରେ ଓ ପ୍ରାୟ ୯୦୦ ମିଟର ଉଚ୍ଚରେ ଉଡ଼ି ଉଡ଼ି ଆସନ୍ତି । ବୁଢ଼ିଆ ଓ ପୁରୁଖା ପକ୍ଷୀ ଦଳର ଅଗ୍ରଭାଗରେ ରହି ବାଟ ବତାନ୍ତି ଓ ବିପଦରେ ସତର୍କ କରାନ୍ତି । ପର୍ଯ୍ୟଟନ କରିବା ପୂର୍ବରୁ ଅଧିକ ଖାଦ୍ୟ ଖାଇ ପକ୍ଷୀମାନେ ଦେହରେ ଚର୍ବି ବଢ଼ାଇଥାନ୍ତି । ଏହା ଯାତ୍ରା ସମୟରେ ସେମାନଙ୍କୁ ଭୋକରୁ ରକ୍ଷା କରେ । ଶୀତଦିନରେ ଚିଲିକା ବକ୍ଷରେ ରଙ୍ଗ ବେରଙ୍ଗର ପକ୍ଷୀମାନଙ୍କୁ ଦେଖିବା ପାଇଁ ଦେଶ ବିଦେଶରୁ ଲକ୍ଷ ଲକ୍ଷ ପର୍ଯ୍ୟଟକ ଚିଲିକାକୁ ଆସିଥାନ୍ତି ।

ଚିଲିକାର ମାଛ, ଚିଙ୍ଗୁଡ଼ି ଓ କଙ୍କଡ଼ା ସାରା ଦେଶରେ ପ୍ରସିଦ୍ଧି ଲାଭ କରିଛି । ଏହା ଉପରେ ନିର୍ଭର କରି ହଜାର ହଜାର ଲୋକ ଜୀବିକା ନିର୍ବାହ କରୁଛନ୍ତି । ଚିଲିକାକୁ ଗରିବ ଲୋକଙ୍କର ଭାତହାଣ୍ଡି କୁହାଯାଏ । ମାତ୍ର ମଣିଷର ମାତ୍ରାଧିକ କାର୍ଯ୍ୟକଳାପ ଯୋଗୁଁ ଚିଲିକାର ପରିବେଶ ଅଶାନ୍ତ ହୋଇ ଉଠୁଛି । ଚିଲିକା ପୋତି ହୋଇଯିବା ଫଳରେ ଏହାର କ୍ଷେତ୍ରଫଳ ସଂକୁଚିତ ହୋଇଯାଉଛି । ଚିଲିକାରେ ଦଳରାଜି ଓ ଗୁଳ୍ମ ବୃଦ୍ଧି ପାଉଛି । ନଦୀନାଳଗୁଡ଼ିକର ଉପରମୁଣ୍ଡରୁ ବ୍ୟାପକ ଗଛକଟା ହେବା ଯୋଗୁଁ ମୃତ୍ତିକା କ୍ଷୟ ହୋଇ ପଙ୍କ, କାଦୁଅ ଓ ବାଲି ଚିଲିକା ଗର୍ଭରେ ପଶୁଛି । କେତେକ ଲୋକ ଚିଲିକାକୁ ପୋତି ବାସଗୃହ, ଚାଷ ଜମି ଓ ଚିଙ୍ଗୁଡ଼ି ଚାଷ ଇତ୍ୟାଦି କରୁଛନ୍ତି । ଫଳରେ ଚିଲିକାର ବକ୍ଷ ସଂକୁଚିତ ହେବାରେ ଲାଗିଛି । ଦିନକୁ ଦିନ ଚିଲିକାରୁ ଉତ୍ପାଦନ ହେଉଥିବା ମାଛ, ଚିଙ୍ଗୁଡ଼ି ଓ କଙ୍କଡ଼ାର ପରିମାଣ କମିବାରେ ଲାଗିଛି । କଙ୍କଡ଼ାମାନଙ୍କର ପୂର୍ବ ଆକୃତି ମଧ୍ୟ ଆଉ ନାହିଁ । ଏବେ ଛୋଟ ଛୋଟ ଆକୃତିର କଙ୍କଡ଼ା ଚିଲିକାରୁ ମିଳୁଛି । ଉପକୂଳ ଚାଷ ଜମିରେ ବ୍ୟବହୃତ ରାସାୟନିକ ସାର, କୀଟନାଶକ ଔଷଧର ପ୍ରତିକ୍ରିୟା ଓ ମତ୍ସଜୀବୀମାନଙ୍କ ଦ୍ୱାରା ଖିଅଜାଲ ବ୍ୟବହାର ଯୋଗୁଁ ମାଛ,ଚିଙ୍ଗୁଡ଼ି ଓ କଙ୍କଡ଼ାର ଉତ୍ପାଦନ ହ୍ରାସ ପାଉଛି । ଚିଲିକା ଜଳ ପ୍ରଦୂଷିତ ହୋଇଯାଉଛି ।

ପକ୍ଷୀ ଶିକାରୀମାନେ ଲୁଚିଛପି ପକ୍ଷୀମାନଙ୍କୁ ମାରି ଦେଉଛନ୍ତି । ଏତଦ୍‌ବ୍ୟତୀତ ଚିଲିକା ବକ୍ଷରେ ବହୁ ସଂଖ୍ୟାରେ ଡଙ୍ଗା ଓ ବୋଟ୍ ଚଳପ୍ରଚଳ ଯୋଗୁଁ ଶବ୍ଦ କୋଳାହଳ, ନୌ ତାଲିମ କେନ୍ଦ୍ରର ସମରାଭ୍ୟାସ ଓ ପକ୍ଷୀମାନଙ୍କର ବିଶ୍ରାମସ୍ଥଳୀ ନଳବଣର ଅବକ୍ଷୟ ଇତ୍ୟାଦି ଚିଲିକାରେ ପକ୍ଷୀ ହ୍ରାସର ମୁଖ୍ୟ କାରଣ । ଚିଲିକା ଜଳରେ ଲବଣ ଅଂଶ ବୃଦ୍ଧି ମଧ୍ୟ ପକ୍ଷୀ ହ୍ରାସର କାରଣ ହେଉଛି ।

ସୁଖର କଥା, ଚିଲିକା ହ୍ରଦର ସୁରକ୍ଷା ପାଇଁ ସରକାର ସମସ୍ତ ପଦକ୍ଷେପ ନେଉଛନ୍ତି । ସେଥିପାଇଁ ଚିଲିକା ଉପକୂଳରେ ବାସ କରୁଥିବା ଲୋକମାନଙ୍କୁ ସଚେତନ କରାଯାଉଛି । ଚିଲିକା ମୁହାଁଣକୁ ଖୋଲାଇ ଜଳ ନିଷ୍କାସନ କରିବାର ବ୍ୟବସ୍ଥା ହୋଇଛି । ଚିଲିକା ଉନ୍ନୟନ ସଂସ୍ଥା ସ୍ଥାପନ କରାଯାଇ ଏହାର ରକ୍ଷଣାବେକ୍ଷଣ ଭାର ନ୍ୟସ୍ତ କରାଯାଇଛି । ସରକାର ନଳବଣର ପ୍ରାୟ ପାଞ୍ଚବର୍ଗ କିଲୋମିଟର ଅଞ୍ଚଳକୁ ପକ୍ଷୀ ଅଭୟାରଣ୍ୟ ଭାବେ ଘୋଷଣା କରି ପକ୍ଷୀ ଶିକାରକୁ ନିଷିଦ୍ଧ କରିଛନ୍ତି । ଜବରଦଖଲକାରୀଙ୍କୁ କ୍ରମେ କ୍ରମେ ଉଚ୍ଛେଦ କରାଯାଉଛି । ପର୍ଯ୍ୟଟକମାନଙ୍କ ପାଇଁ ବିଭିନ୍ନ ଯୋଜନା କାର୍ଯ୍ୟକାରୀ କରାଯାଉଛି । ଫଳରେ ପର୍ଯ୍ୟଟକମାନଙ୍କର ସଂଖ୍ୟା ଚିଲିକାରେ ବୃଦ୍ଧି ପାଉଛି । ପକ୍ଷୀମାନଙ୍କର ସୁରକ୍ଷା ପାଇଁ ଜନସାଧାରଣଙ୍କ ସହଯୋଗ ନିଆଯାଉଛି । ଚିଲିକା ଉପକୂଳର ବିଭିନ୍ନ ସ୍ଥାନରେ କ୍ୟାମ୍ପମାନ ସ୍ଥାପନ କରାଯାଇ ପକ୍ଷୀ ଶିକାରୀମାନଙ୍କ ଉପରେ ତୀକ୍ଷ୍ଣ ନଜର ରଖାଯାଇଛି । ପେଟ୍ରୋଲିଂ ବ୍ୟବସ୍ଥା ମାଧ୍ୟମରେ ପକ୍ଷୀମାନଙ୍କର ସୁରକ୍ଷା ଓ ଚିଲିକା ବକ୍ଷରେ ଅବାଧ ବିଚରଣ ପାଇଁ ବନ୍ଦୋବସ୍ତ କରାଯାଇଛି । ଏହା ସହିତ ଜନସଚେତନତା ମଧ୍ୟ ସୃଷ୍ଟି କରାଯାଉଛି । ପ୍ରକୃତି ସହିତ କ୍ରୂରତା ଆଚରଣ କଲେ ମଣିଷର ସ୍ଥିତି ବିପନ୍ନ ହୋଇପଡ଼ିବ । ପ୍ରକୃତି ସହିତ ସହଯୋଗ କରି ଅବସ୍ଥାନ କରିବା ହେଉଛି ପ୍ରତ୍ୟେକ ମଣିଷର କର୍ତ୍ତବ୍ୟ । ଆମେ ସମସ୍ତେ ଏଥିପ୍ରତି ଧ୍ୟାନ ଦେବା ଉଚିତ । ଚିଲିକାର ସୁରକ୍ଷା ପାଇଁ ସହଯୋଗ କରିବାକୁ ସମସ୍ତେ ଆଗେଇ ଆସିବା ଆବଶ୍ୟକ ।

୬/ମ, ୫୧– ବୀଣା ନିଳୟ
ଶୈଳଶ୍ରୀ ବିହାର, ଭୁବନେଶ୍ୱର–୨୧

# ଧାମରା ଅଧିଷ୍ଠାତ୍ରୀ ଦେବୀ ଧାମରାଈ

**ପ୍ରାଧ୍ୟାପକ ଶାନ୍ତନୁ କୁମାର ମହାନ୍ତି**



ଧାମରାଈ ପୀଠକୁ ଲାଗି ରହିଛି ଚିରସ୍ରୋତା ପୁଣ୍ୟତୋୟା ନଦୀ ବୈତରଣୀ, ଯାହାର ଅନ୍ୟ ନାମ 'ଉତ୍କଳ ଗଙ୍ଗା' ଅଶାନ୍ତ ମହାସମୁଦ୍ର ଯାହାର ନାମ ବଙ୍ଗୋପସାଗର, ଚିରହରିତ ସବୁଜବନାନୀ ଯାହାର ନାମ ଭିତରକନିକା ଓ କାଳିଭଞ୍ଜଡିଆଁ, ସୁବିସ୍ତୀର୍ଣ୍ଣ ତଳମାଳ ଗହୀର ପାଟବିଲ, ଯାହାର ନାମ ସୀମାନ୍ତ ଉପକୂଳ ଦୁଇ କି.ମି ବ୍ୟାପୀ, ସୁଦୀର୍ଘ ନଦୀ ମୁହାଣ ଯାହାର ନାମ 'କଳିଙ୍ଗ ପ୍ରବେଶ ପଥ' । ତେଣୁ ଧାମରା ଭୂମି ବହୁ ଘଟଣା ବହୁଳ ଇତିହାସର ମୂକସାକ୍ଷୀ–ଉତ୍‌ଥାନ ଓ ପତନର ନୀରବଦ୍ରଷ୍ଟା– ପରମ୍ପରା ଓ ପ୍ରଗତିର ମିଳନସ୍ଥଳୀ । ଏହି ଭୂମିର ଅଧିଷ୍ଠାତ୍ରୀ ଦେବୀ ମା' ଧାମରାଈ କେଉଁ ଏକ ସ୍ମରଣାତୀତ କାଳରୁ ଓଡ଼ିଶା ଉପକୂଳରେ ବିରାଜିତା ।

ଗ୍ରୀକ୍ ନାବିକ ଟୋଲେମି ଖ୍ରୀଷ୍ଟାବ୍ଦ ୨ୟ ଶତାବ୍ଦୀରେ ଭାରତର ଯେଉଁ ଭୂଗୋଳ ଲେଖିଛନ୍ତି, ସେଥିରେ ପୂର୍ବ ଉପକୂଳର କେତୋଟି ବନ୍ଦରର ନାମ ଅଛି । ତନ୍ମଧ୍ୟରେ 'ଆଦାମ୍‌ସ' ନାମକ ଏକ ବନ୍ଦର ଥିଲା ବୋଲି ସେ ଦର୍ଶାଇଛନ୍ତି । ସେହି ଆଦାମ୍‌ସ ବନ୍ଦରକୁ କେହି କେହି ଐତିହାସିକ, ଗବେଷକ ଆଜିର ଧାମରା ବୋଲି ଚିହ୍ନିତ କରନ୍ତି । ପ୍ରାଚୀନ ଗ୍ରନ୍ଥଗୁଡ଼ିକରେ ତାମ୍ରଲିପ୍ତି, ଧାମରା, ଚେଲିତାଲୋ, ପାଲୁର, ଦନ୍ତପୁର, ପିହୁଣ୍ଡ ଆଦି ବନ୍ଦରଗୁଡ଼ିକର ନାମୋଲ୍ଲେଖ ମିଳେ । ଧାମରା ମୁହାଣ ପ୍ରାଚୀନ କଳିଙ୍ଗର ଦ୍ୱାର ସ୍ୱରୂପ କାର୍ଯ୍ୟ କରୁଥିଲା । ଏହା ମଧ୍ୟ କନିକା ରାଜ୍ୟର ମୁହାଁଣ ରୂପେ ଖ୍ୟାତ ଏବଂ କନିକାର ପୂର୍ବରେ ଅବସ୍ଥିତ । 'ଭଞ୍ଜ କନିକା' ଶିଳ୍ପୀ କବିରତ୍ନ ଦାମୋଦର ମିଶ୍ର ଧାମରା ମୁହାଣର ପ୍ରସିଦ୍ଧି ବର୍ଣ୍ଣନା କରିଯାଇଛନ୍ତି ।

ଧାମରା ଗାଁ ଧାମରାଈ ମା' । ଗାଁ ଅଛି ତ ମା' ଅଛି । ଓଡ଼ିଶାରେ ଏମିତି ଗ୍ରାମ କି ନଗର ନାହିଁ, ଯେଉଁଠି ଗ୍ରାମଦେବୀ ବା ଶକ୍ତିଦେବୀଙ୍କୁ ଆରାଧନା କରା ନଯାଏ । ବନ୍ଦରନଗରୀ ଚାନ୍ଦବାଲିଠାରୁ ୨୦ କି.ମି. ଦୂର ବ୍ରାହ୍ମଣୀ–ବୈତରଣୀ ଓ ବଂଗୋପ ସାଗର ସଂଗମସ୍ଥଳୀରେ ଅବସ୍ଥିତ ପୁରାତନ ବନ୍ଦର ଓ ମତ୍ସ୍ୟନଗରୀ ଧାମରାର ଅଧୀଶ୍ୱରୀ ମା' ଧାମରାଈ ଯୁଗ ଯୁଗ ଧରି ରାମଚଣ୍ଡୀ, ହରଚଣ୍ଡୀ ପରି ଓଡ଼ିଶା ଉପକୂଳ ସୀମାନ୍ତରେ ଆସୀନ । ସେ ପ୍ରଚଣ୍ଡ ଶକ୍ତିର ଅଧିକାରିଣୀ, ବାତ୍ୟା ସଂହାରିଣୀ, ବନ୍ୟା ପ୍ରକୋପ ନାଶିନୀ, ଅକୂଳ ପାରାବାରରେ ଚରଣାଶ୍ରିତ ଶରଣାଗତ ବଣିକ ନାବିକମାନଙ୍କର ବିପତ୍ତିହାରିଣୀ ।

ଏହାର ପୂର୍ବ ଦିଗରେ ଧାମରା ମୁହାଣ<br>
ଭଇରବ ରବ ଯଥା ଗରଜେ କମାଣ ।

ଏକ କୋଶରୁ ଅଧିକ ମୁହାଣ ଓସାର
ଭୀଷଣତାରେ ଧୈର୍ଯ୍ୟର କରେ ଅପହାର ।
X X X
ଏହି ପଥେ ମଙ୍ଗଳାଙ୍କୁ ବସାଇ ବୋଇତେ
ଆଣିଥିଲେ ଧନେଶ୍ୱର ଭକ୍ତିପୂତ ଚିତ୍ତେ ।
କରିବାକୁ ଉତ୍କଳରେ ଘୋର ରଣ ରଙ୍ଗ
ଯାଇଥିଲେ ଏହି ବାଟେ ବୀର ଚୋଡଗଙ୍ଗ ।
ଓଡ଼ିଶାକୁ ମାନସିଂହ ହୁଣ ସେନାପତି
କରିଥିଲେ ଏହି ମାର୍ଗେ ବହିତ୍ରେ ଆଗତି ।
ଏହି ବାଟେ ବୋଇତରେ ବୀର ମରହଟ୍ଟା
ବଙ୍ଗଦେଶ ଯାଇଥିଲେ ନେଇ ସୈନ୍ୟ ଘଟା ।
ଇଂରେଜ ସେନାନୀ ରିଘାଗଡ ଘୁମା ଘାଟେ
ନେଇ ଯାଇଥିଲେ ତରି ଦିନେ ଏହି ବାଟେ ।
କଲିକତାରୁ ବାଷ୍ପୀୟ ପୋତ ଆଜିକାଲି
ଏହି ପଥେ ଗତାଗତ କରେ ଚାନ୍ଦବାଲି ।

ଆମ ସମାଜ, ସଭ୍ୟତା ଏବଂ ସଂସ୍କୃତି ସହିତ ସାଗରର ସମ୍ପର୍କ ଅତି ନିବିଡ । ଓଡ଼ିଶାର ବେଳାଭୂମି ଅନେକ କାହାଣୀ ଓ କିମ୍ବଦନ୍ତୀର ଭିତ୍ତିଭୂମି । ବେଳାଭୂମି ଓ ବନ୍ଦର– ଏମାନେ ଉଭୟ ପରିପୂରକ । ଓଡ଼ିଶାର ଅନେକ ନଦୀ ଯଥା ମହାନଦୀ, ବ୍ରାହ୍ମଣୀ, ବୈତରଣୀ ଓ ଋଷିକୁଲ୍ୟା ବଙ୍ଗୋପସାଗରରେ ମିଶ୍ରିତ ହୋଇଛନ୍ତି । ଫଳତଃ ଅନେକ ସ୍ଥାନରେ ବେଳାଭୂମିରେ ମୁହାଣ ସୃଷ୍ଟି ହୋଇଛି । ବେଳାଭୂମିରେ ଅନେକ ମୁହାଣ ନିକଟରେ ଦେବୀପୀଠ ରହିଛି– ଯଥା– ଚନ୍ଦ୍ରଭାଗା ସନ୍ନିକଟ କୁଶଭଦ୍ରା ନଦୀ ମୁହାଣରେ ମା' ରାମଚଣ୍ଡୀ, ଚିଲିକାରେ ବାଲି ହରଚଣ୍ଡୀ ଓ ଧାମରାରେ ଧାମରାଈ ପରି । ତେଣୁ ଧାମରାର ଆଂଶିକ ପରିଧି ମଧ୍ୟରେ ଏକ ଆତ୍ମିକ ସତ୍ତା ବିଦ୍ୟମାନ । ମା' ଧାମରାଈ ଏହି ମାଟିକୁ ସ୍ମୃତିବିଜଡିତ କରି ରଖିଛନ୍ତି । ଧାମରା ସମୁଦ୍ର କୂଳର କୌଣସି ଗାଁ ନୁହେଁ, ଏହା ଏକ ପ୍ରାଚୀନ ବନ୍ଦର– ନଦୀ ଉପତ୍ୟକା–ସମୁଦ୍ର ପ୍ରବେଶ ପଥ– ଦେବୀପୀଠ–ସାଗର ସଙ୍ଗମ ତୀର୍ଥ–ବେଳାଭୂମି ଓ ପବିତ୍ର ଧାମ ।

ଗୋଟିଏ ସ୍ଥାନର ନାମ ସହିତ ସେହି ସ୍ଥାନର ଇତିହାସ ଜଡିତ ଥାଏ । ଧାମରା ନାମଟି 'ଧାମ' ଶବ୍ଦରୁ ଆସିଥିବା ସମ୍ଭବ । ଧାମ ଅର୍ଥ ବାସସ୍ଥାନ, ଦେବଭୂମି ବା ତୀର୍ଥକ୍ଷେତ୍ର । ଧାମରୁ ଧାମରା ଏବଂ ଧାମରାରୁ ଧାମରାଈ । ଗଙ୍ଗାନଦୀ ମୁହାଣ ଏବଂ ତଟ ଗଙ୍ଗାଧାମ ରୂପେ ଅବିଦିତ । ବୈତରଣୀ ମର୍ତ୍ତ୍ୟଗଙ୍ଗା ବା ଉତ୍କଳ ଗଙ୍ଗା ରୂପେ ଖ୍ୟାତ । ଏହି ନଦୀ କୂଳରେ ଅବସ୍ଥିତ ଧାମଗୁଡିକ ମଧ୍ୟରୁ ବିରଜା ଧାମ, ଆରଡି ଧାମ ପ୍ରସିଦ୍ଧ । ସେହିଭଳି ଆଉ ଏକ ଧାମ ହେଉଛି ଧାମରା, କବିବର ରାଧାନାଥ ରାୟ ଯାହାକୁ 'ତେଜୋଧାମ' ଆଖ୍ୟା ଦେଇଛନ୍ତି । ବୈତରଣୀ ନଦୀର ଗୌରବ ଏହିସବୁ ଧାମ ଲାଭ କରିଅଛି । ମକର ସଂକ୍ରାନ୍ତି ଦିନ ଗଙ୍ଗାନଦୀ ମୁହାଣରେ ଯେମିତି ଗଙ୍ଗାସାଗର ମେଳା ଅନୁଷ୍ଠିତ ହୁଏ, ଓଡ଼ିଶାରେ ଚିଲିକାତୀର କାଳିଜାଈ ପୀଠ, ବୈତରଣୀ ମୁହାଣ ଧାମରାଈ ପୀଠରେ ସେହିଭଳି ମକର ମେଳା ପାଳିତ ହୁଏ । ତେଣୁ ଧାମରା ନାମର ସୃଷ୍ଟି ସହିତ ଧର୍ମଧାରଣା ତଥା ଦେବାଦେବୀ ଆରାଧନାର ସମ୍ପର୍କ ନିହିତ ।

### ବୈତରଣୀ ନଦୀର ତଳଭାଗ

ଧାମରାର ପରିଚିତି ସହ ବୈତରଣୀ ନଦୀ ସଂଶ୍ଳିଷ୍ଟ । କେନ୍ଦୁଝରର ଗୋନାସିକା ପର୍ବତରୁ ବୈତରଣୀ ନିର୍ଗତ ହୋଇ ପ୍ରାୟ ତିନିଶହ ମାଇଲ ପଥ ଅତିକ୍ରମ କରି ଘଟଗାଁ ତାରିଣୀ, ଶକ୍ତିପୀଠ ଯାଜପୁର, ଶିବପୀଠ ଆଖଣ୍ଡଳମଣି ଭୂମି ଶେଷରେ ଚାନ୍ଦବାଲି ବନ୍ଦର ପୂର୍ବପଟେ ଧାମରାଈଙ୍କ ପୀଠସ୍ଥଳୀ ଧାମରା ମୁହାଣରେ ସମୁଦ୍ର ସଙ୍ଗମ ଲଭିଅଛି । ବୈତରଣୀ ନଦୀର ତଳଭାଗକୁ ଆରଡିର ଉପରମୁଣ୍ଡ ଠାରୁ ଧାମରା ପର୍ଯ୍ୟନ୍ତ ପ୍ରତିଦିନ ଜୁଆର ଭଟ୍ଟା ପାଣି ଦେଖାଯାଏ । ସମୁଦ୍ରର ଲୁଣିପାଣି ନଦୀ ଦେଇ ଯେତେବେଳେ ଜୁଆର ଉଠେ, ସେତେବେଳେ ଏହି ନଦୀ ଏବଂ ମୁହାଣ ଅତି ଭୟଙ୍କର ଥାଏ । ଏଥିରେ ଡଙ୍ଗା ନେବା ପାଇଁ ନାଉରୀମାନେ ଭୟ କରନ୍ତି । ପାଣିତଳେ ସମୁଦ୍ରର ଗୋଟିଏ ପ୍ରବଳ ସ୍ରୋତ ବହେ ଏବଂ ଜଳର ଗଭୀରତା ତିରିଶରୁ ଚାଳିଶ ଫୁଟ ଥାଏ । ଚାନ୍ଦବାଲିଠାରେ ବୈତରଣୀ ସସମ୍ମାନେ ବଙ୍କେଇ ଯାଇଛି ଓ ସୃଷ୍ଟି କରିଛି ବିଶାଳ ଗଣ୍ଡ । ଉପର ଭାଗକୁ ବୈତରଣୀ–ସାଳନ୍ଦୀ ମିଳନସ୍ଥଳର ଗଣ୍ଡ 'ତିନିତର' । ତଳଭାଗକୁ ବ୍ରାହ୍ମଣୀ ନଦୀ ଯେଉଁଠାରେ ବୈତରଣୀ ସଙ୍ଗେ ମିଶେ ସେହି ସ୍ଥାନର ଗଣ୍ଡକୁ 'ନଳିତାପାଟିଆ' ଓ ମନ୍ତେଇ ନଦୀ ଯେଉଁଠାରେ ବୈତରଣୀ ସହ ମିଶିଛି ସେହି ସ୍ଥାନର ଗଣ୍ଡକୁ 'ସୁନାଦରିଆ' କୁହାଯାଏ । ନଳିତାପାଟିଆ ଠାରୁ ମୁହାଣ ପର୍ଯ୍ୟନ୍ତ ପ୍ରଶସ୍ତ, ଗଭୀର ଜଳଭାଗରେ ପ୍ରଚୁର କୁମ୍ଭୀର ଓ ଜଳଚର ଜୀବ ରହନ୍ତି । ବୈତରଣୀର ଶେଷାଂଶ ଧାମରା ଆଡକୁ ଦକ୍ଷିଣ ତାରରେ 'କାଳିଭଞ୍ଜଡିଆଁ' ଟାପୁ ଓ ଅଦୂରରେ 'ଭିତରକନିକା' ଜଙ୍ଗଲ ଏବଂ ଉତ୍ତରତୀରେ 'ସୁନାଦରିଆ' ମୁହାଣ ନିକଟରେ ମା' ଧାମରାଈଙ୍କ ବିଜେସ୍ଥଳୀ ଧାମରା ।

ସାହିତ୍ୟ ପୃଷ୍ଠାରେ ଧାମରା

କବିବର ରାଧାନାଥ, କବିଶେଖର ଚିନ୍ତାମଣି, କାନ୍ତକବି ଲକ୍ଷ୍ମୀକାନ୍ତ, ବ୍ୟାସକବି ଫକୀରମୋହନ ପ୍ରଭୃତି ଦିଗ୍‌ଗଜ ସାହିତ୍ୟିକମାନେ ଧାମରାର ଭୀମକାନ୍ତ ଦୃଶ୍ୟ, ନୈସର୍ଗିକ ଗରିମା, ପ୍ରାକୃତିକ ଶୋଭା ବର୍ଣ୍ଣନାରେ ଲେଖନୀ ଚାଳନା କରିଯାଇଛନ୍ତି । କବିଶେଖର ଚିନ୍ତାମଣିଙ୍କ ଭାଷାରେ–

ନାବିକ ପୂଜିତା ଧାମରୀ ଦେବୀଙ୍କ
ପାଳିତ ଭୂମି ଧାମରା
ସିନ୍ଧୁ ଅଙ୍ଗେ ଯହିଁ ମିଶାନ୍ତି ସଲିଳେ
ଏକତ୍ରେ ନଦୀ ପ୍ରଖରା ।

ବୈତରଣୀ ମୁହାଣ ଧାମରାରେ ବ୍ରାହ୍ମଣୀ, ବୈତରଣୀ, ସାଳନ୍ଦୀ, ମନ୍ତେଇ ନଦୀର ମିଳିତ ଜଳରାଶି ପ୍ରଖର ବେଗରେ ପ୍ରବାହିତ ହୋଇ ସମୁଦ୍ରରେ ମିଶେ । ଧାମରାଇ ଧାମରା ମୁହାଣର ପ୍ରତିଷ୍ଠିତା ଦେବୀ ଓ ଧାମରାର ଗ୍ରାମଦେବତୀ । ତାଙ୍କ ଅଧିଷ୍ଠିତ ଭୂମିରୁ ବୀରପୁଙ୍ଗବମାନେ 'ମୁକୁନ୍ଦଦେବ'ଙ୍କ ସୈନ୍ୟବାହିନୀରେ ଯୋଗଦେବା ନିମିତ୍ତ କଟକ ଅଭିମୁଖେ ଯାତ୍ରା କରିଥିଲେ ବୋଲି କବିଶେଖର ଚିନ୍ତାମଣି ବ୍ୟକ୍ତ କରିଛନ୍ତି ।

ଧାଇଁଲେ ଧାମରୀ ଧାମୁ କୈବର୍ତ୍ତବାହିନୀ
ଜଳଯୁଦ୍ଧ ବିଶାରଦ ପିନ୍ଧି ପକ୍ଷଟୋପି
ଯହିଁ ବହୁ ସିନ୍ଧୁ ବଧୂ ମିଳି ସିନ୍ଧୁ ସଙ୍ଗେ
ରତ ହୋଇ କଳିଗୋଳେ ଭୁଞ୍ଜାନ୍ତି ତାହାକୁ
ବହୁ ବିବାହର ତିକ୍ତ ବିଷମୟ ଫଳ
ସେ ଜଞ୍ଜାଳେ କାନ୍ଦେ ସିନ୍ଧୁ ସଦା ଉଚ୍ଚରୋଳେ
ସେ ମୁହାଣ ଗର୍ଜନରେ ପୋଷନ୍ତି ଆଶଙ୍କା
ପଶ୍ଚିମ ପ୍ରଦେଶବାସୀ, ମଦଉତ୍ପାତର ।

କବିବର ରାଧାନାଥ ରାୟ 'ଉଷା' କାବ୍ୟରେ ବାଲେଶ୍ୱର ଜିଲ୍ଲାର ବହୁ ଅଖ୍ୟାତ ସ୍ଥାନକୁ ବିଖ୍ୟାତ କରି ଯାଇଛନ୍ତି । ଧାମରାର ପ୍ରାକୃତିକ ଦୃଶ୍ୟ ବିଭବର ଆଲେଖ୍ୟ ଆଙ୍କି ଦେବାର ସୁଯୋଗ ତାଙ୍କୁ ମିଳିଛି । ଉଷା ସ୍ୱୟମ୍ବର ସଭାରେ ଧାମରାର ଭୂମିପୁତ୍ରମାନେ ଯୋଗଦାନ କରିଥିଲେ ବୋଲି ସେ ଦର୍ଶାଇଛନ୍ତି ।

ତେଜୋଧାମ ଯେଉଁ ଧାମରୀ ଦେବୀଙ୍କ କଞ୍ଜପୟରେ
ତାଙ୍କ ଅଧିଷ୍ଠିତ ଭୂମିରୁ ଆସିଲେ ଭୂପ କୁମରେ ।

କନିକା ରାଜପଣ୍ଡିତ କବିରତ୍ନ ଦାମୋଦର ମିଶ୍ରଙ୍କୁ ମୁଗ୍ଧ କରି ଧାମରା ତା'ର ପ୍ରାପ୍ୟ ମାଗି ନେଇଛି । କନିକାର ଐତିହାସିକ ବିଭବ, ଶ୍ରୀ ସମ୍ପଦ ବର୍ଣ୍ଣନାରେ ସେ ସିଦ୍ଧହସ୍ତ । ସେ କହନ୍ତି–

ନକ୍ର ଚକ୍ରେ ଭୀମ ମନ୍ତେଇ ସହିତ
ବ୍ରାହ୍ମୀ ପୁଣି ବଇତରଣୀ ମିଳିତ ।
ଏ ସଲିଳେ କରେ ଯେ ମାନବ ସ୍ନାନ
ତାକୁ ତରଙ୍ଗିଣୀ ଦିଏ ଧାମ ଦାନ ।
ଏଣୁ ଏହି ନାମେ ବିଖ୍ୟାତ ଧାମରା
ଗାମ୍ଭୀର୍ଯ୍ୟେ ପ୍ରଶସ୍ତ୍ୟେ ମତି ଧୃତି ହରା ।
ଏହାର ଭୀଷଣ ଦୃଶ୍ୟ ବିଲୋକନେ
କମ୍ପିତ ହୁଅନ୍ତି ପୋତଯାତ୍ରୀ ଜନେ ।

କନିକା ରାଜ୍ୟ ଅନ୍ତର୍ଗତ ଧାମରା ଏକ ପବିତ୍ର ଧାମ । ଏହି ଘାଟରେ ସ୍ନାନ କଲେ ମୋକ୍ଷ ମିଳେ ବୋଲି ପ୍ରବାଦ ଅଛି । କିନ୍ତୁ ଏମିତି ନଦୀ ଯେ ଗୋଡ ବଢାଇଲେ ବିପଦ । ଯାହାହେଉ ଏହାର କମନୀୟ ଗାମ୍ଭୀର୍ଯ୍ୟ ମନରେ ଯେତିକି ପୁଲକ ଆଣେ ସେତିକି ଭୀତି ସଞ୍ଚାର କରେ । ଧାମରାରେ ଠିଆ ହୋଇ ଭୟଙ୍କର ନଦୀ, ସମୁଦ୍ର, ଜଙ୍ଗଲକୁ ଚାହିଁଲେ ଲାଗିବ ଯେମିତି ଦଳ ଦଳ ଉତ୍‌ଫେଣ ସର୍ପ ଲହ ଲହ ଜିହ୍ୱା ବିସ୍ତାରକରି ମାଡି ଆସୁଛନ୍ତି । ଧାମରା ସମ୍ମୁଖସ୍ଥ କାଳିଭଞ୍ଜଡିଆଁ ଜଙ୍ଗଲରେ କେତେ ନାମହୀନ ପଶୁପକ୍ଷୀ, ବୃକ୍ଷଲତା ମର୍ଯ୍ୟାଦାଲାଭ କରିଛନ୍ତି । ସମୁଦ୍ର ଜୁଆର ଜଙ୍ଗଲକୁ ପ୍ଲାବିତ କରେ ।

ଉତ୍ତରଦିଗେ ବିଶାଳ କାଳିଭଞ୍ଜଡିଆଁ
ତରୁଲତାପୂର୍ଣ୍ଣ ତିଳେ ନ ଦିଶେ ପଡିଆ ।
ଜଣାପଡେ ସିନ୍ଧୁଗୀତି ଶ୍ରୁତି ପରାୟଣା
ଧାମରା ସର୍ପୀର ଯଥା ବିସ୍ତାରିତ ଫଣା ।

(କବିରତ୍ନ ଦାମୋଦର ମିଶ୍ର)

ସାହିତ୍ୟିକମାନେ ଛବିଳ ଉତ୍କଳର ପ୍ରକୃତି ମଧ୍ୟରେ ଧାମରାକୁ ସନ୍ଦର୍ଶନ କରିଛନ୍ତି । ଗୋଦାବରୀଶ ମହାପାତ୍ରଙ୍କ 'ରାଜଦ୍ରୋହୀ' (୧୯୨୨) ଐତିହାସିକ ଉପନ୍ୟାସରେ ଧାମରା ମୁହାଣ ଏବଂ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ଐତିହାସିକ ଉପନ୍ୟାସ 'ଅଭାଗିନୀ' (୧୯୨୨)ରେ ଧାମରା ବନ୍ଦର ବିଷୟ ଉଲ୍ଲେଖ ଅଛି ।

ଧାମରା ମୁହାଣ ଅଞ୍ଚଳ

ଧାମରା ମୁହାଣ ସୁଦୀର୍ଘ, ସୁଗଭୀର ଏବଂ ତରଙ୍ଗ ସଙ୍କୁଳ । ଏହାର ଦୈର୍ଘ୍ୟ ପ୍ରାୟ ଏକ କୋଶରୁ ଅଧିକ । ସମୟର ଚୋରାବାଲିରେ ଓଡ଼ିଶା ଉପକୂଳର ଅନେକ ମୁହାଣ ନିଶ୍ଚିହ୍ନ ହୋଇଗଲାଣି । କିନ୍ତୁ ଯେଉଁ କେତୋଟି ମୁହାଣ ଏଯାବତ୍ ତିଷ୍ଠି

ରହିଛି ତନ୍ମଧ୍ୟରୁ ଧାମରା ଅଧିକ ଜୀବନ୍ତ ଓ କାର୍ଯ୍ୟକ୍ଷମ । କବିବର ରାଧାନାଥ ରାୟ ଲେଖିଲେ–

ଧାମରା ମୁହାଣେ ପାଣ୍ଡୁ ଜଳାରଣ୍ୟେ ବାହୁଁ ନୌଚର
ପୂର୍ବମୁଖେ ତରି ଦେଖଇ ସମ୍ମୁଖେ ମହାସାଗର ।

ସର୍ପ କୁମ୍ଭୀର ସଂକୁଳା କୂଳପ୍ଳାବିନୀ ନଈଟିଏ ନାବିକ ମନରେ ଭୀତି ସଞ୍ଚାର କରିବା ସ୍ୱାଭାବିକ । ତରଙ୍ଗ ତାଣ୍ଡବ ମଧ୍ୟରେ ଏଠାକାର ଜଳଯୁଦ୍ଧ ବିଶାରଦ ଅଧିବାସୀମାନେ ସତେଯେମିତି ପ୍ରଳୟକୁ ଅହରହ ଆବାହନ କରନ୍ତି । ଆହୁରି ମଧ୍ୟ–

ଭେଡା ଆଖ୍ୟାଧାରୀ ବୃକ୍ଷହୀନ ଭୂମି ସମୁଦ୍ର ଦାଢେ
ଦ୍ୱୀପପ୍ରାୟେ କ୍ଷୁଦ୍ର ଜଳପଦ ଯହିଁ ଭାସେ ଆଷାଢେ ।

ଭେଡା ଅଞ୍ଚଳ ସମୁଦ୍ର କୂଳ ପର୍ଯ୍ୟନ୍ତ ବିସ୍ତୃତ । ବର୍ଷାକାଳରେ ଏହି ଅଞ୍ଚଳର ଗ୍ରାମମାନ କ୍ଷୁଦ୍ର ଦ୍ୱୀପ ପ୍ରାୟ ବୋଧ ହୁଅନ୍ତି । ପୂର୍ବେ ଏହି ଅଞ୍ଚଳରେ ଆରଣ୍ୟ ମହିଷର ଉପଦ୍ରବ ଥିଲା । ଧାମରାର ଅଦୂରରେ ଆଡିଆ ଭୁଖଣ୍ଡ ଏବଂ ଜାଗୁଳା, କଇଥକୋହ୍ଲା, ଚନ୍ଦନୀପାଳ, ଦୋଶିଙ୍ଗା, ସରସ୍ୱତୀ ଭଳି କ୍ଷୁଦ୍ର କ୍ଷୁଦ୍ର ବେଣାପାଟ, ଝିଲୀପାଟ ଗ୍ରାମ ଥିଲା । ଏହା ମଧ୍ୟରେ ବହୁ ଜଳୀ ବିଦ୍ୟମାନ । ବର୍ଷାଦିନେ ଏହି ଅଞ୍ଚଳ ଗେଣ୍ଡାଳିଆଙ୍କ ଭିଡ । ସମୁଦ୍ର ଜୁଆର ମାଡି ଆସିଲେ ଏକ ପ୍ରକାର ଖଣ୍ଡପ୍ରଳୟ ସୃଷ୍ଟି ହୁଏ । ସମୁଦ୍ରର ଅବିଶ୍ରାନ୍ତ ଗର୍ଜନରେ ଅହରହ ଆନ୍ଦୋଳିତ ଏହି ଗଛଲତାଶୂନ୍ୟ ନିର୍ଜନ ଉପତ୍ୟକାରେ ଠାବେ ଠାବେ ମହିଷ ପଲ, କଳା କଳା ମଣିଷଙ୍କ ବିଚରଣ । ନଦୀରେ କୁମ୍ଭୀର, ଜଙ୍ଗଲରେ କୃଷ୍ଣସାର । ଏଠାରେ ମାଛ, ଦୁଧ, ଧାନ, ଚାଉଳର ଅଭାବ ନାହିଁ ।

ଅନନ୍ତର ଭେଡା ଆଙ୍କୁଡା ଆବର
ଗୋ ମହିଷ ଦଧି ଘୃତ ସରୋବର ।
ପାଣି ପ୍ରଜା ମାଛ ତିନିହେଁ ସେଠାରେ
ଅନ୍ଧ ବୋଲି ପରା ପ୍ରବାଦ ସେଠାରେ ।
ସେ ବିରାଟ ପାଟେ ପାଛ ହୁଏ ବଣା
ବେଣାମୁଟା ଯହିଁ ତରୁରୂପେ ଗଣା ।

(କବିଶେଖର ଚିନ୍ତାମଣି)

ଭେଡା ଆଙ୍କୁଡା ରାଜ୍ୟ ପ୍ରାଚୀନ କନିକାର ଉତ୍ତରସୀମା ନିର୍ଣ୍ଣିତ କରେ । ଭେଡା ଅଞ୍ଚଳରେ ସାମାନ୍ୟ ମେଘଖଣ୍ଡ ଦ୍ୱାରା ଅପର୍ଯ୍ୟାପ୍ତ ବୃଷ୍ଟି ହୁଏ । ପ୍ରଜାମାନଙ୍କଠାରୁ ବାରମ୍ବାର କର ନେଲେ ସୁଦ୍ଧା ସେମାନେ ଦେବାକୁ କୁଣ୍ଠାବୋଧ କରନ୍ତି ନାହିଁ । ଜଳପୂର୍ଣ୍ଣ ପାଟରେ ଅଞ୍ଜୁଳୀ, ଖଇଞ୍ଚି ବୁଡାଇ ଦେଲେ ମାଛ ପଡନ୍ତି ବୋଲି ପ୍ରାଚୀନ ପ୍ରବାଦ ଅଛି । ଧାମରା ମୁହାଣର ଗର୍ଜନ ବିପୁଳ ବୃଷ୍ଟିସୂଚକ ଓ ଭୀତି ସଞ୍ଚାରକ । ମୁହାଣ ଗର୍ଜନ ସହିତ ବିଜୁଳି ଚମକିଲେ ଏଠାକାର ଅଧିବାସୀମାନେ ମହାବିପ୍ଳବର ଆଶଙ୍କା କରନ୍ତି ।

୧୮୮୪ ମସିହାରେ ରାଧାନାଥ ରାୟ ଓ ଦଶପଲା ଦେବାନ ଫକୀର ମୋହନ ସେନାପତି ବାଲେଶ୍ୱର ବନ୍ଦରରୁ ଷ୍ଟିମରରେ କଟକ ଆସୁଥିଲେ । ଧାମରା ନଦୀରେ ଷ୍ଟିମର ପହଞ୍ଚନ୍ତେ ଘୋର ବର୍ଷା ଓ ତୋଫାନ ହେଲା । କ୍ଷୁଦ୍ର ଷ୍ଟିମ୍‌ର ଖଣ୍ଡିକ ଅସ୍ଥିର ଭାବରେ ଦୋହଲୁଥାଏ, କେତେବେଳେ ବୁଡିଯିବ । ଏଥିରେ ରାଧାନାଥ ବାବୁ ଜୀବନର ଆଶା ପରିତ୍ୟାଗ କରି ଦେଇଥିଲେ । କିନ୍ତୁ ଷ୍ଟିମରଟି ବିପଦରୁ ପାର ହୋଇଯାଇଥିଲା । ମା’ ଧାମରାଈଙ୍କ ଅପାର କରୁଣାରୁ ଓଡ଼ିଶାର ଦୁଇ ବରପୁତ୍ର ମୃତ୍ୟୁ ମୁଖରୁ ବର୍ତ୍ତି ଯାଇଥିଲେ । ଫକୀରମୋହନ କହିଲେ ରାଧାନାଥଙ୍କର ‘ମହାଯାତ୍ରା’ କାବ୍ୟ ଲେଖିବାର ଥିଲା, ତେଣୁ ତାଙ୍କର ମହାଯାତ୍ରା ହେଲାନାହିଁ । ସେହି ପୁଣ୍ୟବଳରୁ ସେ ମଧ୍ୟ ରକ୍ଷା ପାଇଗଲେ ।

ଧାମରାର ବାତାବରଣରେ ଅହରହ ଆଧିପତ୍ୟ ବିସ୍ତାର କରେ ସମୁଦ୍ରର ନିର୍ଘୋଷ ଆଉ ଉଦଣ୍ଡ ଲୁଣି ପବନ । ସମୁଦ୍ର ବେଶ୍ ଦୂରକୁ ଘୁଞ୍ଚିଗଲାଣି । ନଈକୂଳରେ ବିସ୍ତୃତ ଜଙ୍ଗଲ, ଧାନ କିଆରୀ, ଘାସବଣ, ଧାଡି ଧାଡି ଗଛ, ମାଳ ମାଳ କଣ୍ଟାବୁଦା, ସରୁ ପାଦଚଲା ରାସ୍ତା, ଗାଁ ଗଣ୍ଡା । ଧାମରାର ଉଦୟ–ବିଭବ ଅତୀବ ଚିତ୍ତାକର୍ଷକ । ନଦୀ ସମୁଦ୍ର ବକ୍ଷରୁ ସୂର୍ଯ୍ୟଚନ୍ଦ୍ର ଉଇଁ ଆସିଲାପରି ଜଣାଯାଏ । ବୈତରଣୀ ତୀରବନ ସୁନ୍ଦର । ସୁନ୍ଦର ମଧ୍ୟ ନଦୀରେ ଚନ୍ଦ୍ର–ରଜନୀ, ଧୀବରମାନଙ୍କ ନୌକାଯାତ୍ରା । ଅକାତକାତ ପାଣିରେ ନାଆ ବାହୁ ବାହୁ ନାଉରିଆ ଆତ୍ମହରା ହୋଇଯାଏ । ଏହି ବିମୁଗ୍ଧକର ପ୍ରାକୃତିକ ଶୋଭାରାଜି ଓ ଭୀମକାନ୍ତ ରୂପ କଦାପି ଭୁଲିବାର ନୁହେଁ ।

ଧାମରାଈଙ୍କ ଆବିର୍ଭାବ

ଓଡ଼ିଶାର ପ୍ରାଚୀନ ଦେବଦେବୀଙ୍କ ଆବିର୍ଭାବର ପଛପଟେ ଜଡିତ ରହିଛି ବହୁ ବିସ୍ମୟକର ଅଲୌକିକ କାହାଣୀ । ସେଗୁଡିକ ଯେପରି ରହସ୍ୟାବୃତ୍ତ ସେପରି କୌତୁହଳଦ୍ଦୀପକ । ଇତିହାସର ପ୍ରଚୁର ଉପାଦାନ ଲୋକମୁଖରେ ଲୁକ୍‌କାୟିତ ହୋଇ ରହିଅଛି । ବୈତରଣୀ–ତଟବାସିନୀ ଧାମରାଈଙ୍କ ଉତ୍ପତ୍ତି ଏବଂ ଆବିର୍ଭାବ ସମ୍ବନ୍ଧରେ ଜନଶ୍ରୁତି, କିମ୍ବଦନ୍ତୀ ପ୍ରଚଳିତ । ଏହାଙ୍କ ଆବିର୍ଭାବର

ସମୟକାଳ ଅଦ୍ୟାପି ନିର୍ଣ୍ଣିତ ହୋଇପାରିନାହିଁ । ଐତିହାସିକ କିମ୍ବଦନ୍ତୀ ଅନୁସାରେ ଧନେଶ୍ୱର ବଣିକ ପାଟଣମଙ୍ଗଳାଙ୍କୁ ସିଂହଳରୁ ଆଣି ଉତ୍କଳରେ ସ୍ଥାପନ କରିଥିଲେ । ସେ ସିଂହଳରୁ ଫେରିବା ବାଟରେ ବୈତରଣୀ ନଦୀ ଗର୍ଭରୁ ପ୍ରାପ୍ତ ପଥର ମୂର୍ତ୍ତିକୁ ଧାମରାରେ ପ୍ରତିଷ୍ଠା କରିଥିଲେ । କାଳକ୍ରମେ ସେ ପୀଠଦେବୀ ଧାମରାଈ ରୂପେ ପରିଚିତା ହେଲେ । ଦେବୀଙ୍କ ପୂଜାର୍ଚ୍ଚନା ନିମିତ୍ତ ବନ୍ଦୋବସ୍ତ କରିବାକୁ ଜଣେ କେଉଟୁଣୀକୁ କିଛି ସୁନା ସେ ଯେଉଁଠାରେ ପ୍ରଦାନ କରିଥିଲେ ତାହା 'ସୁନା ଦରିଆ' ନାମରେ ଖ୍ୟାତ । ତା'ପରେ ସାଧବ ମନ୍ତେଇ ନଦୀ ପଥରେ ନରେନ୍ଦ୍ରପୁର ଆସି ସେଠାରେ ପାଟଣମଙ୍ଗଳା ବା ଲଙ୍କେଶ୍ୱରୀଙ୍କୁ ସ୍ଥାପନ କଲେ ।

ଧନେଶ୍ୱରଙ୍କର ବୋଇତ ବନ୍ଦର ଧାମରା
ଧାମରାଈ ତାଙ୍କ ପ୍ରତିଷ୍ଠିତ ହେବେ ପରା ।

(କବିରତ୍ନ ଦାମୋଦର ମିଶ୍ର)

ଧାମରାଈଙ୍କ ଉତ୍ପତ୍ତି ଏବଂ ଆବିର୍ଭାବର ପଛପଟେ ନିହିତ କିମ୍ବଦନ୍ତୀର ଏକ ସ୍ୱତନ୍ତ୍ର ତାତ୍ପର୍ଯ୍ୟ ରହିଛି । ଧାମରା କଳିଙ୍ଗ ସାଗର ଉପକୂଳର ଏକ ବନ୍ଦର-ଗ୍ରାମ ଓ ଧାମରା ମୁହାଣ କଳିଙ୍ଗର ବହିଃଦ୍ୱାର ଏବଂ ପ୍ରବେଶପଥ । ବୈତରଣୀ ନଦୀ ମୁହାଣ ଧାମରା ମୁହାଣ ନାମରେ ଖ୍ୟାତ । ଏଥିରୁ ଜଣାପଡେ ଯେ ପୂର୍ବେ ଏହି ମୁହାଣ ଅଞ୍ଚଳରେ କେବଳ ଗୋଟିଏ ଗାଁ ଥିଲା ଧାମରା, ଯେଉଁଠି କଳିଙ୍ଗର ପ୍ରାଚୀନ ଅଧିବାସୀ ଧୀବରମାନେ ବାସ କରୁଥିଲେ । ନଦୀ, ସମୁଦ୍ର ଥିଲା ଏହି ଧୀବରମାନଙ୍କର ଜୀବନ ଓ ଜୀବିକାର କେନ୍ଦ୍ରବିନ୍ଦୁ । ଅଧୁନା ମୁହାଣ ଅଞ୍ଚଳର ଅବସ୍ଥା ଯାହା ଶହ ଶହ ବର୍ଷ ପୂର୍ବେ ଏହା ସେପରି ନଥିବ । ଭୟଙ୍କର ନଦୀ ସମୁଦ୍ର ଜଙ୍ଗଲରେ ଜୀବିକା ସନ୍ଧାନରତ ଏହି ମଣିଷମାନେ କେତେ ଯେ ମୃତ୍ୟୁମୁଖରେ ପଡିଥିବେ ତା'ର କଳନା ନଥିବ । ପାଣିରେ କୁମ୍ଭୀର ଶିଶୁମାର ପ୍ରଭୃତି ଜଳଚର ଜୀବ ଓ ଜଙ୍ଗଲରେ ଜନ୍ତୁଜନ୍ତାଙ୍କ ଉପଦ୍ରବ । ତା'ପରେ ଅଛି ପୁଣି ସାମୁଦ୍ରିକ ପ୍ରବାହ, ବାତ୍ୟା, ବନ୍ୟା ଓ ମହାବିପ୍ଳବ । ସକାଳୁ ଘରୁ ବାହାରିଥିବା ଧୀବରମାନେ ଯେ ସଞ୍ଜବେଳକୁ ଘରକୁ ଭଲରେ ଭଲରେ ଫେରି ଆସିବେ ଏକଥା କିଏ କହିବ ? ଧାମରା ମୁହାଣରେ କେତେ ଯେ ବୋଇତିଆଳ, ନାବିକମାନେ ମରଣକୁ ବରଣ କରିଥିବେ ତା'ର ହିସାବ ନଥିବ । ଦୂର ଅତୀତର ଧୀବରପଲ୍ଲୀ ଧାମରାରେ କ୍ରନ୍ଦନ ରୋଳ ଉଠି ପୁଣି ସମୁଦ୍ର ଗର୍ଜନରେ ମିଳେଇ ଯାଇଥିବ ।

ଦିନକର ଘଟଣା । ଧୀବରୀଟିଏ ତା ସ୍ୱାମୀର ଫେରିବା ପଥକୁ ଚାହିଁ ବୁକୁଫଟା କ୍ରନ୍ଦନ କରୁଛି । ଦୈବ ଯୋଗକୁ 'ଖୁଲଣା ସୁନ୍ଦରୀ' ଉପାଖ୍ୟାନ ବର୍ଣ୍ଣିତ ଧନେଶ୍ୱର ସାଧବ ଲଙ୍କାଦ୍ୱୀପରୁ ବେପାର ବଣିଜ ସାରି ଲଙ୍କେଶ୍ୱରୀ ବା ମଙ୍ଗଳାଙ୍କ ମୂର୍ତ୍ତି ସହ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କରୁଛନ୍ତି । ସେ ସାତଖଣ୍ଡ ବୋଇତର ମାଲିକ ଓ ଧାମରା ବନ୍ଦରରେ କାର୍ଯ୍ୟରତ । ତତ୍‌କ୍ଷଣାତ୍ ଧୀବର ସ୍ତ୍ରୀର ଅସହାୟତାକୁ ଉପଲବ୍ଧି କରି କରୁଣା ବିଗଳିତ ସେଇ ସାଧବ ଜଣକ ବୋଇତରେ ଥିବା ମାଝି ବା କେଉଟମାନଙ୍କ ସାହାଯ୍ୟରେ ନଦୀ ସମୁଦ୍ରରେ ବହୁ ଖୋଜାଖୋଜି କଲାପରେ ଜାଲରେ ପଥର ମୂର୍ତ୍ତିଟିଏ ପାଇଲେ । ଏଇଠି ହୋଇଛି କ୍ରମାଗତ ବିନାଶରୁ ପରିତ୍ରାଣ ନିମିତ୍ତ ଏକ ଐଶୀଶକ୍ତିର ଆବିର୍ଭାବ । ସମୁଦ୍ରରେ, ଜଙ୍ଗଲରେ ବିପଦଗ୍ରସ୍ତ ମଣିଷର ଏକମାତ୍ର ସାହାଭରସା । ଧାମରାରେ ରହିଲାରୁ ସେ ହେଲେ ଧାମରାଈ । ତେଣୁ ଧାମରାଈ ନିଶ୍ଚିତଭାବେ ସର୍ବଶକ୍ତିମୟୀ ସର୍ବମଙ୍ଗଳମୟୀ ଶୁଭାକାଂକ୍ଷିଣୀ ମଙ୍ଗଳାଙ୍କ ଅଂଶସ୍ୱରୂପା । ଜଳ ଦେବତା ବରୁଣଙ୍କ ପ୍ରକୋପରୁ ଲୋକମାନଙ୍କୁ ରକ୍ଷା କରିବା ପାଇଁ ସେ ଚିଲିକାରେ କାଳିଜାଈ ଓ ଧାମରାରେ ଧାମରାଈ ପୁଣି ଆଉ କେଉଁଠାରେ କିଭଳି ଭାବେ ରହିଥିବେ !

କାକଟପୁର ମଙ୍ଗଳାଙ୍କ ବିଗ୍ରହ ମଧ୍ୟ ନଦୀ ଗର୍ଭରୁ ପ୍ରାପ୍ତ । ରାଧାନାଥ ରାୟଙ୍କ 'ଉଷା' କାବ୍ୟରେ ଉଲ୍ଲେଖ ଅଛି ଯେ ନୁରୁରାଜା ବଳାଙ୍ଗୀ ନଦୀଗର୍ଭରୁ ପାଇଥିବା କାଳୀମୂର୍ତ୍ତିକୁ ସେହି ନଦୀ ତୀରରେ ମନ୍ଦିର ନିର୍ମାଣ କରି ପ୍ରତିଷ୍ଠା କରିଥିଲେ । ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳରେ ଆରାଧିତା ଦେବୀମାନେ ସାଗର ଦୁହିତା ନାମରେ ଖ୍ୟାତ ।

ଆଉ ଏକ କିମ୍ବଦନ୍ତୀରୁ ଜଣାଯାଏ ଯେ ଧାମରାଈ ବୈତରଣୀ ନଦୀରେ ଲୁଚି ରହିଥିଲେ । କେତେକାଳ ପରେ ଠାକୁରାଣୀ ଜଣେ ଧୀବରକୁ ସ୍ୱପ୍ନରେ ସମସ୍ତ ବିଷୟ କହିବାରୁ ସେ ଠାକୁରାଣୀଙ୍କୁ ପାଣିରୁ କାଢି ଧାମରା ଗ୍ରାମରେ ପୂଜା କଲେ । ସ୍ଥାନୀୟ ଲୋକମୁଖରୁ ଶୁଣାଯାଏ ଯେ ଧୀବରମାନେ ସମୁଦ୍ରରେ ଏକ ନିଖୋଜ ଧୀବରକୁ ଖୋଜୁ ଖୋଜୁ ପଥର ମୂର୍ତ୍ତିଟିଏ ପାଇଲେ । ସେ ଧାମରାର ଅଧିଷ୍ଠାତ୍ରୀ ଦେବୀ ବା ଗ୍ରାମଦେବତୀ ରୂପେ ଉପାସିତା ହେଲେ । ଦେବୀଙ୍କ ସ୍ୱପ୍ନାଦେଶ ଅନୁଯାୟୀ ମୃତ ଧୀବରର ବିଧବା ପତ୍ନୀ ତାଙ୍କ ପୂଜା କାର୍ଯ୍ୟରେ ନିଯୁକ୍ତ ହେଲେ । ସେବେଠୁ କୈବର୍ତ୍ତ କୂଳର ବିଧବା ନାରୀମାନେ ଧାମରାଈଙ୍କ ପୂଜାର୍ଚ୍ଚନା କରି ଆସୁଛନ୍ତି । କେବଳ ଧାମରାଈ ନୁହଁନ୍ତି, ରାଜନଗର ମାଟିଆ ମଙ୍ଗଳାଙ୍କୁ ରାଉଳ, ସାତଭାୟା ପଞ୍ଚବରାହୀଙ୍କୁ କୈବର୍ତ୍ତ, ବାସୁଦେବପୁର ଅଙ୍କୁଡାଶୁଣୀଙ୍କୁ ଭଣ୍ଡାରୀ ପ୍ରଭୃତି ଅନ୍ତ୍ୟଜମାନେ

ପୂଜା କରନ୍ତି । ଏହା ଲୋକ ସଂସ୍କୃତିର ଏକ ଅଭିନବ ପର୍ଯ୍ୟାୟକୁ ଉନ୍ମୋଚିତ କରେ । ଧାମରା ଏକ ଧୀବର ଅଧ୍ୟୁଷିତ ଅଞ୍ଚଳ । ପୂର୍ବେ ଓଡ଼ିଶାର ଗୋଟିଏ ଅଂଶ କାଳେ ମତ୍ସ୍ୟଦେଶରେ ଅନ୍ତର୍ଭୁକ୍ତ ଥିଲା ଏବଂ ଧୀବରମାନେ କଳିଙ୍ଗର ପ୍ରାଚୀନ ଅଧିବାସୀ । ତେଣୁ ଧାମରାଈଙ୍କ ପ୍ରାଚୀନ ଇତିବୃତ୍ତ ସହଜରେ ଅନୁମେୟ ।

ଧାମରାଈଙ୍କ ଉପାସନା ଓ ପ୍ରସିଦ୍ଧି

ଓଡ଼ିଶାର ଗ୍ରାମଦେବୀ ସଂସ୍କୃତିରେ ଧାମରାଈଙ୍କ ପ୍ରସିଦ୍ଧି ସର୍ବଜନବିଦିତ । ଶକ୍ତି ସାଧକର ଆଦ୍ୟପୀଠରେ ଶାକ୍ତଦେବୀମାନେ ରାଜନ୍ୟ ପୃଷ୍ଠପୋଷକତା ଓ ଗ୍ରାମବାସୀଙ୍କ ଧର୍ମବିଶ୍ୱାସ ଯୋଗୁଁ କେଉଁଠାରେ ରାଷ୍ଟ୍ରଦେବୀ ଓ କେଉଁଠାରେ ଗ୍ରାମଦେବୀ ରୂପେ ବିଭିନ୍ନ ନାମ ଗ୍ରହଣ କରି ପୂଜିତ ହେଉଛନ୍ତି । ଶକ୍ତି ଉପାସନାର ଅୟମାରମ୍ଭ କାଳ ୭ମ-୮ମ ଶତାବ୍ଦୀ ବେଳକୁ ଉତ୍କଳ ଖଣ୍ଡରେ ଅସଂଖ୍ୟ ଦେବୀପୀଠର ସୃଷ୍ଟି ହୋଇଥିଲା ।

ମାତୃ ଶକତି ବିରାଜନ୍ତି ଯହିଁ
ବିମଳାଈ ଧାମରାଈ
ଖିଚକ, ଭୁବନ, ସମଲଈଶ୍ୱରୀ
ଚର୍ଚ୍ଚିକା ବିରଜାଈ ।

ଧାମରାଈ ଶକ୍ତିସ୍ୱରୂପା । ସେ ଚତୁର୍ଭୁଜା । ରାଧାନାଥ ରାୟ ତାଙ୍କ କାବ୍ୟ ସାହିତ୍ୟରେ ଓଡ଼ିଶାର ଯେଉଁ ଦେବଦେବୀଙ୍କ ବର୍ଣ୍ଣନା ପ୍ରଦାନ କରିଛନ୍ତି, ତନ୍ମଧ୍ୟରୁ ଧାମରାଈ ଅନ୍ୟତମ । ସେ ସମୁଦ୍ରର କନ୍ୟା ଓ ନାବିକ ଅର୍ଚ୍ଚିତା ମଙ୍ଗଳାଙ୍କ ପରି ନୌକା ମଙ୍ଗରେ ତାଙ୍କୁ ପୂଜା କରାଯାଏ । ଧୀବର ବା ନାବିକମାନେ ସମୁଦ୍ରକୁ ଯାତ୍ରା କଲେ ଯାତ୍ରାର ସଫଳତା ଓ ନିରାପଦ ପ୍ରତ୍ୟାବର୍ତ୍ତନ ପାଇଁ ଠାକୁରାଣୀଙ୍କ ନିକଟରେ ମନାସୀ କରିଯାଆନ୍ତି ।

କୂଳେ ପ୍ରତିଷ୍ଠିତ ଦେବୀ ଚତୁର୍ଭୁଜା
ଧାମରାଈ କରେ ଧୀବରୀ ଯା ପୂଜା ।
ଅବାଧେ ତରଣୀ ଦେବୀଙ୍କ କୃପାରେ
ଯାଏ ଏହି ଭୟଙ୍କର ନଦୀ ପାରେ ।
ଧାମରାର ଧାମରାଈ ଅଧିଷ୍ଠାତ୍ରୀ
ପୂଜନ୍ତି ଅଧିକେ ଏଣୁ ପୋତଯାତ୍ରୀ ।
ପ୍ରଣାମ ନକରି ଧାମରାଈ ପଦେ
କର୍ଣ୍ଣଧାର ତରୀ ନ ଚଳାଏ ପାଦେ ।

(ଦାମୋଦର ମିଶ୍ର)

ମା' ଧାମରାଈଙ୍କ ମହିମା ପ୍ରତ୍ୟକ୍ଷ । ସମୁଦ୍ରରେ, ଜଙ୍ଗଲରେ ପଥହରା ମଣିଷକୁ ମା' ସାହା ହୁଅନ୍ତି । ତାଙ୍କ ନାମ ସ୍ମରଣ କରି କେହି କେହି ମହାବଳ ବାଘ ହାବୁଡ଼ରୁ ରକ୍ଷା ପାଇଯାଇଥିବାର ଶୁଣାଯାଏ । ନାବିକମାନେ ଦେବୀଙ୍କ ପୀଠସ୍ଥଳୀରେ ନିଶାର୍ଦ୍ଧରେ ଏକ ଉଜ୍ଜ୍ୱଳ ଆଲୋକପିଣ୍ଡ ବହୁବାର ଦେଖିଥିବାର କହନ୍ତି । ସାଧାରଣ ଲୋକେ ନିଜର ମନସ୍କାମନା ପୂର୍ଣ୍ଣ କରିବା ନିମିତ୍ତ ଧାମରାଈଙ୍କ ମଥାରେ ଫୁଲ ଚଢାନ୍ତି ଓ ଗୁଆ ବସାନ୍ତି । କାର୍ଯ୍ୟସିଦ୍ଧି ପରେ କଳାଶାଢୀ ଓ ସିନ୍ଦୂର ଅର୍ପଣ କରନ୍ତି । ଏ ଅଞ୍ଚଳର ଅନେକ ଲୋକ ଯେକୌଣସି ନୂଆକାର୍ଯ୍ୟ କରିବା ପୂର୍ବରୁ ଧାମରାଈଙ୍କଠାରେ କିଛି ଭୋଗ କରିବାକୁ ଛାଡନ୍ତି ନାହିଁ । ଭକ୍ତର ଭକ୍ତିପୂତ ଡାକରେ ମା' ପ୍ରସନ୍ନ ହୁଅନ୍ତି ।

୧୯୦୬ ମିହାରେ 'କନିକା' କାବ୍ୟରେ କବି ଦୟାନିଧି ମିଶ୍ର ଲେଖିଛନ୍ତି-

ସଦା ସିନ୍ଧୁଜଳ ଆକୁଳ ଧାମରା
ଭୀଷଣ ଗର୍ଜନେ ନିରତ ମୁଖରା ।
ଭୀମ ଜଳାବର୍ତ୍ତ ଭ୍ରମେ ଚକ୍ରାକାରେ
ବାହୁ ତରୀ କର୍ଣ୍ଣ-ଧାର ଆଶଙ୍କାରେ ।
ଭୟେ ଥରେ ହୃଦ ଖିନ୍ନ ହୁଏ ମନ
ଧାମରାଈ ପଦେ ପଶଇ ଶରଣ
ବୃଷ୍ଟିହୀନ କାଳେ ଗର୍ଜିଲେ ଧାମରା
ସୁଖୀ ହୁଏ ଚଷା କମ୍ପିଉଠେ ଧରା ।
ଉତ୍ତୁଙ୍ଗ ତରଙ୍ଗ କରେ ଭକ୍ତି ଭରେ
ନମଇ କନିକା ସୁନ୍ଦରୀ ଆଗରେ ।

ଉତ୍କଳ ଦେଶର ପ୍ରତ୍ୟେକ ପଲ୍ଲୀରେ ଗୋଟିଏ ଗୋଟିଏ ଗ୍ରାମଦେବୀ ବା ଠାକୁରାଣୀଙ୍କ ପୀଠ ଦେଖାଯାଏ । ସାଧାରଣ ଲୋକମାନଙ୍କର ବିଶ୍ୱାସ ଯେ ଏହି ଠାକୁରାଣୀମାନେ ଗ୍ରାମର ଭଲମନ୍ଦ ବିଷୟ ବୁଝନ୍ତି ଓ ଗ୍ରାମବାସୀମାନଙ୍କ ଦେହପା, ସେମାନଙ୍କର ସନ୍ତୁଷ୍ଟି ଉପରେ ନିର୍ଭର କରେ । ତେଣୁ ଠାକୁରାଣୀଙ୍କ ପୂଜାର୍ଚ୍ଚନା ଯଥାବିଧି ଅନୁଷ୍ଠିତ ହୁଏ । କେଉଁକାଳରୁ କନିକା ରାଜନ୍ୟବର୍ଗ ଧାମରାଈଙ୍କ ସେବାପୂଜା ନିମିତ୍ତ ପୃଷ୍ଠପୋଷକତା କରି ଆସୁଛନ୍ତି । ପୂର୍ବ ଚାନ୍ଦବାଲି ଏକଦା କନିକା ରାଜ୍ୟ ଅନ୍ତର୍ଭୁକ୍ତ ଥିଲା । ଏବେ ଗ୍ରାମବାସୀଙ୍କ ସହଯୋଗରେ ସୁନ୍ଦର ଦେଉଳଟିଏ ନିର୍ମାଣ ହୋଇଛି । କନିକା ରାଜାଙ୍କ ନିର୍ମିତ ଦେଉଳ ଓ ବେଢା ବିଲୁପ୍ତ ।

ମକରମେଳା ଧାମରାଈଙ୍କର ସବୁଠାରୁ ବଡ ପର୍ବ । ମକର ପର୍ବ ଏକ କୃଷିପର୍ବ । ସୁଖଶାନ୍ତି ସମୃଦ୍ଧିର ପର୍ବ । ଫସଲ ଅମଳ ଖୁସିରେ ଏହା ପାଳିତ ହୁଏ । କଳିଙ୍ଗ ଦେଶ ସୂର୍ଯ୍ୟଙ୍କର ପ୍ରିୟସ୍ଥଳୀ । ମକର ସଂକ୍ରାନ୍ତି ଦିନ ସୂର୍ଯ୍ୟ ଉପାସନା କରାଯାଏ । ପିତୃପୁରୁଷଙ୍କୁ ପିଣ୍ଡଦାନ ଦିଆଯାଏ । ପୁଣ୍ୟ ନଦୀମାନଙ୍କରେ ଶୁଦ୍ଧ ସ୍ନାନ କରାଯାଏ । ସୂର୍ଯ୍ୟଦେବଙ୍କ ଦୟାରୁ କୃଷି ସମ୍ଭବ ହେଉଥିବାରୁ ତାଙ୍କ ପ୍ରତି ଆନ୍ତରିକ ଧନ୍ୟବାଦ ସ୍ୱରୂପ ଚାଷୀ ପରିବାର ସଦ୍ୟ ଉତ୍ପନ୍ନ ଶସ୍ୟ (ଚାଉଳ, ଗୁଡ, ଆଖୁ, ନଡିଆ, ଉଖୁଡା, ଆରିସା ପିଠା ଇତ୍ୟାଦି)ରେ ପ୍ରସ୍ତୁତ ସୁସ୍ୱାଦୁ 'ମକର ଚାଉଳ'ର ପ୍ରଥମ ନୈବେଦ୍ୟ ତାଙ୍କୁ ଅର୍ପଣ କରନ୍ତି । ଧାମରାଈ ସମୁଦ୍ର କୂଳର କୃଷିପ୍ରଧାନ ଉର୍ବର ଶସ୍ୟଶ୍ୟାମଳା ଅଞ୍ଚଳରେ ଆରାଧିତା ଏବଂ ତାଙ୍କ ପ୍ରିୟ ଭୋଗ ଉଖୁଡା । ଚାନ୍ଦବାଲି ଚୁଡା, ଧାମରା ଉଖୁଡା ପ୍ରସିଦ୍ଧ । ସମ୍ଭବତଃ ମକର ସଂକ୍ରାନ୍ତିରେ ଧାମରାରେ ସୂର୍ଯ୍ୟ ଉପାସନାକୁ ଲକ୍ଷ୍ୟ କରି ରାଧାନାଥ ରାୟ ଏହାକୁ 'ତେଜୋଧାମ' ଆଖ୍ୟା ଦେଇଛନ୍ତି । ସେହି ସମୟରେ ସୂର୍ଯ୍ୟଙ୍କ ପ୍ରଖର ତେଜ ଥାଏ । ତେଣୁ ମକର ସଂକ୍ରାନ୍ତି ଧାମରାଈଙ୍କ ପୂଜା ଉପାସନାର ବଡଦିନ ବୋଲି ଗଣ୍ୟ ହୁଏ ।

ବହୁ କଥା ଆଜି ପୁରୁଣା ହୋଇଗଲାଣି । ଯୁଗ ପରିବର୍ତ୍ତନ ସଙ୍ଗେ ସଙ୍ଗେ ଆରମ୍ଭ ବହୁ ପରମ୍ପରାର ପରିବର୍ତ୍ତନ ଘଟିଯାଉଛି ଓ ଯିବ । ଆରାଧିତ ଦେବଦେବୀ ମଧ୍ୟ କ୍ରମେ ସେହି ପରିବର୍ତ୍ତନର ପରିସରକୁ ଆସିଯାଇଛନ୍ତି । ଦିନେ ଯେଉଁ ପୀଠ ଲୋକାଳୟଠାରୁ ଦୂରରେ ଥିଲା, ଆଜି ତାହାର ଚାରିପଟେ ଜନବସତିପୂର୍ଣ୍ଣ ଆଲୋକମାଳାରେ ଉଦ୍ଭାସିତ ଏକ ଛୋଟିଆ ସହର ଗଢି ଉଠିଛି । ଧାମରା ସେଥିରୁ ବାଦ୍ ପଡନ୍ତା କିପରି ! ପୂର୍ବ ଉପକୂଳର ସର୍ବୋତ୍କୃଷ୍ଟ ପୋତାଶ୍ରୟ ଏବଂ ସାରା ପୃଥିବୀର ସାମୁଦ୍ରିକ ମାନଚିତ୍ରରେ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ଧାମରାଈଙ୍କ ବିଜେସ୍ଥଳୀ ଧାମରା ଆଜି ପର୍ଯ୍ୟଟନ କେନ୍ଦ୍ର ଏବଂ ବୃହତ ବନ୍ଦର ସ୍ୱପ୍ନରେ ଆତ୍ମବିଭୋର । ଧାମରା ମୁହାଣ ଯେତିକି ଜୀବନ୍ତ, ସେତିକି ଭୟଙ୍କର । ଅଦୂରରୁ ସମୁଦ୍ର ସଙ୍ଗୀତ ଧାମରାକୁ ଭାସିଆସେ । ଦିଗାଙ୍ଗନାମାନଙ୍କ ଶୁଭ ଶଙ୍ଖ, ହୁଳହୁଳି ସତେଯେମିତି ପ୍ରତିଧ୍ୱନିତ ହୁଏ ଧାମରାରେ । ନୌକାରୋହୀମାନେ ସମୁଦ୍ରକୁ ଗଲେ ଅନୁଭବ କରନ୍ତି ଏକ ଦେବୀସତ୍ତାର ପ୍ରଭାବ । ସେ ଆଉ କେହି ନୁହଁନ୍ତି ମା' ଧାମରାଈ । କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ଭାଷାରେ–

ଶେଷେ ଲୋ ଜନନୀ ମିଳୁ ତହିଁ ଯାଇ
'ଧାମରା ମୁହାଣେ' ଦେବୀ 'ଧାମରାଈ' ।
ବ୍ରାହ୍ମଣୀ ସଙ୍ଗତେ ହେଉ କୋଳାକୋଳି
ମହୋଲ୍ଲାସେ ଫୁଲି ତୁଙ୍ଗ ଢେଉ ତୋଳି ।
ଧାମରାଈ ଦେବୀ ଅଭୟ ଚରଣେ
କଚାଡୁ ମସ୍ତକ ରଖି କ୍ଷଣେ କ୍ଷଣେ ।

ଧାମରା ମାଟି ସତରେ ବଡ ପୁଣ୍ୟବତୀ ଆଉ ବିଭବଶାଳୀ । ସେଦିନର ଇତିହାସ ଆଜି ନୂତନ ଦୀପ୍ତି ଓ ଦ୍ୟୁତିରେ ସମୁଦ୍ଭାସିତ ନାନା ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ଏବଂ ଆକର୍ଷଣୀୟ ମଧ୍ୟ । ରାଜ୍ୟ, ଦେଶ ତଥା ଆନ୍ତର୍ଜାତିକ କୃଷି, ନୌବାଣିଜ୍ୟ, ଶିଳ୍ପ, ପର୍ଯ୍ୟଟନ ପ୍ରତିରକ୍ଷା ପରିବେଶ ମାନଚିତ୍ରରେ ଏହି ସ୍ଥାନଟି କେତେ ଯେ ପ୍ରତିଶ୍ରୁତି ଓ ସମ୍ଭାବନାରେ ଭରପୂର ତା'ର ହିସାବ ନାହିଁ । ସାରା ପୃଥିବୀରେ ବୋଧହୁଏ ଏଭଳି କ୍ୱଚିତ ସ୍ଥାନ ଅଛି, ଯେଉଁଠି ଏତେଗୁଡିଏ କ୍ଷେତ୍ରର ଆଧାରଭୂମି ରହିଛି । ଯେଉଁଥିପାଇଁ ଏହା ଆଜି ବହୁ ଆକର୍ଷଣର କେନ୍ଦ୍ରବିନ୍ଦୁ । ଧାମରାର ଅତୀତ ଯେତିକି ପ୍ରେରଣାପ୍ରଦ, ବର୍ତ୍ତମାନ ସେତିକି ମହତ୍ୱପୂର୍ଣ୍ଣ ଏବଂ ଭବିଷ୍ୟତ ସେତିକି ସମ୍ଭାବନାମୟ । ଧାମରା ମୁହାଁଣ ହେଉଛି ସେଇସବୁ ମୁହାଁଣ ମଧ୍ୟରୁ ଅନ୍ୟତମ ଯେଉଁ ପଥଦେଇ ଏକଦା ଓଡ଼ିଆ ସାଧବମାନେ ସାଗର ସେପାରି ସୁଦୂର ଭୂଖଣ୍ଡକୁ ବୋଇତ ଯାତ୍ରା କରୁଥିଲେ । ଆଜି କଳିଙ୍ଗର ବୋଇତ କଳିଙ୍ଗ ସାଗରରେ ଉଭେଇଯାଇଛି ସିନା, ହେଲେ 'କଳିଙ୍ଗ ପ୍ରବେଶପଥ'ରେ ଦେଶବିଦେଶର ସୁବର୍ଣ୍ଣତରୀ ଭାସୁଛି । ମା' ଧାମରାଈଙ୍କ ଆଶୀର୍ବାଦରୁ ଏହି ଭୂମିର ଭାଗ୍ୟ ବଦଳିବାରେ ଲାଗିଛି ।

ଧାମରା ଆଜି ନୂଆଜୀବନ ପାଇ ଇତିହାସରେ ଆଲୋଡନ ସୃଷ୍ଟି କରିବାରେ ସମର୍ଥ ହୋଇପାରିଛି । ଅତୀତର ସ୍ୱପ୍ନ ଆଜି ବାସ୍ତବରେ ପରିଣତ ହୋଇଛି । ମା'ଙ୍କ କୃପାରୁ ଧାମରାର ବିଜନବେଳା ଆଜି ଅଜସ୍ର ବଣିକଙ୍କର ସମ୍ମିଳିତ କଳରବରେ ମୁଖରିତ ହୋଇଉଠୁଛି । ଦେଶରୁ ବିଦେଶ ଯାଏ ତା'ର ମହକ ପ୍ରାଣରେ ପୁଲକ ଭରିଦେଉଛି । ଚାନ୍ଦ ଉଇଁଛି ଧାମରାରେ ଆଉ ତା'ର ପ୍ରତିଛବି ପଡିଛି ଚାନ୍ଦବାଲିରେ । ନୂଆ ସକାଳର ତେଜୀୟାନ ସୂର୍ଯ୍ୟ ତା'ର ସ୍ୱର୍ଣ୍ଣାଭ କିରଣ ବିଞ୍ଚି ବିଞ୍ଚି ଯାଉଛି କଳିଙ୍ଗ-ଉତ୍କଳ-ଓଡ଼ିଶା ମାଟିରେ ।

ଚାନ୍ଦବାଲି ମହାବିଦ୍ୟାଳୟ
ଚାନ୍ଦବାଲି, ଜି– ଭଦ୍ରକ-୭୫୬୧୩୩

# ସ୍ନାନଯାତ୍ରା

**ଶଙ୍କର୍ଷଣ ମଙ୍ଗରାଜ**

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ବିଶ୍ୱପ୍ରସିଦ୍ଧ ଶ୍ରୀଗୁଣ୍ଡିଚା ଯାତ୍ରା କଥା ସମସ୍ତେ ଜାଣନ୍ତି । ତାହାପୂର୍ବରୁ ରତ୍ନ ସିଂହାସନରୁ ଓହ୍ଲାଇ ଭାଇଭଉଣୀ ଓ ସୁଦର୍ଶନ ଚକ୍ରଙ୍କ ସହିତ ମହାପ୍ରଭୁ ସ୍ନାନ ପାଇଁ ଯାତ୍ରା କରିଥାନ୍ତି । ଏହି ଯାତ୍ରାକୁ ସ୍ନାନ ଉତ୍ସବ ବୋଲି କେହି କେହି କହନ୍ତି । ବାସ୍ତବିକ ମହାପ୍ରଭୁ ସ୍ୱୟଂ ଏହିଦିନ ରତ୍ନ ସିଂହାସନରୁ ଓହ୍ଲାଇ ଆସି ପୁଣି ରତ୍ନ ସିଂହାସନରେ ବିଜେ ହେବାକୁ ଏକମାସ ସମୟ ଲାଗେ । ଜ୍ୟେଷ୍ଠମାସ ପୂର୍ଣ୍ଣିମା ତିଥି ହେଉଛି ସ୍ନାନଯାତ୍ରା ଏବଂ ଆଷାଢ଼ ମାସ ପୂର୍ଣ୍ଣିମା ତିଥିରେ ଦିଅଁମାନେ ନୀଳାଦ୍ରି ବିଜେ କରି ରତ୍ନ ସିଂହାସନ ଆରୋହଣ କରିଥାନ୍ତି । ଜ୍ୟେଷ୍ଠମାସ ପୂର୍ଣ୍ଣିମାକୁ ସାଧାରଣ ଲୋକେ ଦେବସ୍ନାନ ପୂର୍ଣ୍ଣିମା ନାମରେ ଜାଣନ୍ତି । ଏହିଦିନ ଦେବ ଦେବ ଶ୍ରୀଜଗନ୍ନାଥ ମହାପ୍ରଭୁ ଭକ୍ତଗଣଙ୍କ ସମକ୍ଷରେ ୧୦୮ଗରା ଶୀତଳ ଜଳରେ ସ୍ନାନ କରିଥାଆନ୍ତି । ତାହା ପୁଣି ଅନୁଷ୍ଠିତ ହୁଏ ମନ୍ଦିର ବାହାରେ ଥିବା ସ୍ନାନ ମଣ୍ଡପରେ । ମହାପ୍ରଭୁଙ୍କର ମୁଖ୍ୟତଃ ୧୨ମାସରେ ତେର ଯାତ୍ରା ପାଳିତ ହୁଏ । ବୈଶାଖ ମାସରେ ଅକ୍ଷୟ ତୃତୀୟା, ଜ୍ୟେଷ୍ଠ ମାସରେ ସ୍ନାନଯାତ୍ରା, ଆଷାଢ଼ ମାସରେ ଶ୍ରୀଗୁଣ୍ଡିଚା, ଶ୍ରାବଣ ମାସରେ କର୍କଟ ସଂକ୍ରାନ୍ତି ଏବଂ ଶୟନ ଯାତ୍ରା, ଭାଦ୍ରବ ମାସରେ ପାର୍ଶ୍ୱ ପରିବର୍ତ୍ତନ, କାର୍ତ୍ତିକ ମାସରେ ଦେବ ଉତ୍ଥାନ, ପୌଷ ମାସରେ ପ୍ରାବରଣ ଷଷ୍ଠୀ ଏବଂ ପୁଷ୍ୟାଭିଷେକ, ମାଘ ମାସରେ ମକର ସଂକ୍ରାନ୍ତି, ଫାଲଗୁନ ମାସରେ ଦୋଳଯାତ୍ରା, ଚୈତ୍ରମାସରେ ଦଅଣା ଚୋରି ବା ଦମନକ ଯାତ୍ରା ।

ଶ୍ରୀଗୁଣ୍ଡିଚା ଯାତ୍ରାର ଅଙ୍ଗଭାବେ ସ୍ନାନ ଉତ୍ସବ, ଅଣସର ଶ୍ରୀଗୁଣ୍ଡିଚା, ଆଡପ ପର୍ବ ବାହୁଡା ଏବଂ ନୀଳାଦ୍ରି ବିଜେକୁ ଗଣାଯାଏ ।

ସ୍ନାନଯାତ୍ରା ପୂର୍ବରୁ ମାଧବଙ୍କର ରକ୍ମିଣୀଙ୍କ ସହିତ ଶୁଭ ପରିଣୟ ଶେଷ ହୋଇଥାଏ । ସ୍ନାନଯାତ୍ରା ପୂର୍ବରୁ ଚଉଠି ହୋମ, ଜଳାଧିବାସ, ସୁବର୍ଣ୍ଣ କୂପ ସଂସ୍କାର ଆଦି ଅନୁଷ୍ଠିତ ହୁଏ । ସ୍ନାନ ବେଦୀକୁ ପହଣ୍ଡି ପୂର୍ବରୁ ଦିଅଁମାନେ ସେନାପଟା ଲାଗି ହୁଅନ୍ତି । ରକ୍ତବର୍ଣ୍ଣ ଶିରିକାପଡା ଲାଗିହୁଅନ୍ତି । ଶ୍ରୀମନ୍ଦିର ପ୍ରଚଳିତ ସମସ୍ତ ନୀତି ଓ ବିଧିବିଧାନ ସହ ମହାପ୍ରଭୁଙ୍କୁ ରତ୍ନ ସିଂହାସନରୁ ଓହ୍ଲାଇବାର ବ୍ୟବସ୍ଥା କରାଯାଏ । କୋଠ ସୁଆଁସିଆ ସେବକମାନେ ଚାରମାଳ ପକାଇବାର ବ୍ୟବସ୍ଥା କରନ୍ତି । ସେତେବେଳେ ଦିଅଁମାନଙ୍କ ଶ୍ରୀମୁଖକୁ ଖଣ୍ଡୁଆ ଦ୍ୱାରା ଆବୃତ୍ତ କରାଯାଇଥାଏ ।

ସ୍ନାନଯାତ୍ରା ପୂର୍ବରୁ ମହାପ୍ରଭୁଙ୍କର ଚନ୍ଦନ ଯାତ୍ରା ଦୀର୍ଘ ୪୨ଦିନ ଧରି ଚାଲିଥାଏ । ୨୧ଦିନ କାଳ ମହାପ୍ରଭୁଙ୍କର ଚଳନ୍ତି ପ୍ରତିମା ଶ୍ରୀମଦନମୋହନ ଭୂଦେବୀ, ଶ୍ରୀଦେବୀ, ରାମକୃଷ୍ଣ ଏବଂ ପଞ୍ଚ ମହାଦେବଙ୍କ ସହିତ ଚନ୍ଦନ ପୁଷ୍କରିଣୀରେ ଚାପରେ ବସି ଜଳକ୍ରୀଡା କରନ୍ତି । ତା ପର ୨୧ଦିନ ଭିତରେ ଚନ୍ଦନ ବେଳେ ଜଳକ୍ରୀଡା ମଣ୍ଡପରେ ଶ୍ରୀଦେବୀଙ୍କ ସହିତ ଚନ୍ଦନ କୁଣ୍ଡରେ ଜଳକ୍ରୀଡା କରନ୍ତି । ଏହାସତ୍ତ୍ୱେ ମଧ୍ୟ ପ୍ରବଳ ରୌଦ୍ରତାପରୁ ରକ୍ଷା ପାଇବା ପାଇଁ ଅଧିକ ଶୀତଳ ଜଳରେ ସ୍ନାନ କରିବା ପାଇଁ ପ୍ରଭୁଙ୍କର ଇଚ୍ଛାହୁଏ । ଯେହେତୁ ମହାପ୍ରଭୁ ଇଚ୍ଛାମୟ ପୁରୁଷୋତ୍ତମ ଏବଂ ତାଙ୍କ ଇଚ୍ଛାରେ ସଂସାରରେ ସବୁକିଛି ଘଟିଥାଏ । ତାଙ୍କରି ଇଚ୍ଛାଶକ୍ତି ବଳରେ ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ଦଶମୀଠାରୁ ସକଳ ତୀର୍ଥର ଜଳ ସମାଗତ ହୁଅନ୍ତି ଶ୍ରୀକ୍ଷେତ୍ରରେ । ବଡଦେଉଳର ଉତ୍ତର ଦ୍ୱାର ନିକଟସ୍ଥ ଶୀତଳା ଠାକୁରାଣୀଙ୍କ ସାମ୍ନା କୂଅକୁ କୁହାଯାଏ ସୁନାକୂଅ । ଏହି କୂଅ ବର୍ଷସାରା ବନ୍ଦ ହୋଇ ରହିଥାଏ। ଏଥିରେ ସୂର୍ଯ୍ୟକିରଣ ସୁଦ୍ଧା ପଡେନାହିଁ। ଗଙ୍ଗୋତ୍ରୀ, ଯମୁନୋତ୍ରୀ, ସରସ୍ୱତୀ ସ୍ୱର୍ଗଗଙ୍ଗା ଅଳକା ନନ୍ଦାର ହିମଶୀତଳ ଜଳକୁ ଏକତ୍ର କଲେ ଯାହାହେବ, ଠିକ୍ ସେହିପରି ଥଣ୍ଡାପାଣି । ଜ୍ୟେଷ୍ଠ ଶୁକ୍ଳ ଚତୁର୍ଦ୍ଦଶୀ ଦିନ ସୁନାଗୋସାଇଁ ଏବଂ ମୁଦିରଥ ୧୦୮ଟି ତମ୍ବାଗରାରେ

ସେହି କୂଅରୁ ଗରାବଡୁ ସେବକମାନଙ୍କ ଦ୍ୱାରା ଜଳ ଅଣାଇବାର ବ୍ୟବସ୍ଥା କରାନ୍ତି । ଏହି ଜଳରେ ଚନ୍ଦନ, କର୍ପୂର, ଜାଇଫଳ ମିଶାଇ ଭୋଗ ମଣ୍ଡପରେ ଅଧିବାସ ହୋଇ ରଖାଯାଏ । ଆନନ୍ଦ ବଜାରର ପୂର୍ବଦିଗରେ ଥିବା ସ୍ନାନମଣ୍ଡପକୁ ଚାନ୍ଦୁଆ ବାନ୍ଧି ସୁସଜ୍ଜିତ କରାଯାଏ । ପୂର୍ଣ୍ଣିମା ଦିନ ବଡିଭୋରୁ ମୁଦିରଥ, ପତି ମହାପାତ୍ର ଏବଂ ପୂଜାପଣ୍ଡା ବଡଠାକୁର, ମା ସୁଭଦ୍ରା ଏବଂ ଶ୍ରୀଜଗନ୍ନାଥଙ୍କ ତିନିବାଡରେ ମଙ୍ଗଳା ରୋପଣ କରନ୍ତି । ମଙ୍ଗଳାରୋପଣରେ ଯାତ୍ରାକାଳରେ ସମସ୍ତ ବାଧାବିଘ୍ନ ଦୂର କରିବା ପାଇଁ ନାରୀକେଳ ସ୍ପର୍ଶ କରାଯାଏ । ଦୁଷ୍ଟଗ୍ରହର କୁଦୃଷ୍ଟିରୁ ରକ୍ଷା କରିବା ପାଇଁ ଦୁର୍ବାଦଳ ଲାଗି କରାଯାଏ । ସନ୍ତୋଷ ପାଇଁ ପୁଷ୍ପ ଓ ଦର୍ପଣ ଲାଗି ହୁଏ । ଦହି ଏବଂ ଧଳାସୋରିଷ ସମସ୍ତ ଅରିଷ୍ଟ ନାଶନ ପାଇଁ ବ୍ୟବହୃତ ହୁଏ । ମହାପ୍ରଭୁଙ୍କର ମଙ୍ଗଳାରୋପଣ ବିଧି ଓଡ଼ିଶାର ଘରେ ଘରେ ପ୍ରତିଷ୍ଠିତ ଠାକୁରମାନଙ୍କ ପାଇଁ ପ୍ରାୟ ଅନୁସୃତ ହୋଇଥାଏ । ରାଜାମାନେ ସିଂହାସନ ଆରୋହଣ କାଳରେ ମଙ୍ଗଳାରୋପଣ ବିଧି ରହିଛି । ମଙ୍ଗଳାରୋପଣ ପରେ ପହଣ୍ଡି ବିଜେ । ଦଇତାପତିମାନେ ମହାପ୍ରଭୁଙ୍କ କଟିରେ ପାଟଡୋରି ବନ୍ଧନ କରନ୍ତି । ସମସ୍ତ ବନ୍ଧନରୁ ମୁକ୍ତ ମହାପ୍ରଭୁ ଯେପରି ମା ଯଶୋଦାଙ୍କ ହାତରେ ବନ୍ଧା ହୋଇଥିଲେ, ଠିକ୍ ସେହିପରି ବିଶ୍ୱାବସୁ ବଂଶଜ ଦଇତାମାନେ ଭକ୍ତି ବଳରେ ମହାପ୍ରଭୁଙ୍କୁ ବାନ୍ଧନ୍ତି । ତା'ପରେ ପହଣ୍ଡି ଆରମ୍ଭ ହୁଏ । ପ୍ରଥମେ ଚକ୍ରରାଜ ସୁଦର୍ଶନ, ପରେ ବଡ ଠାକୁର ଶ୍ରୀବଳଭଦ୍ର, ମା' ସୁଭଦ୍ରା ଏବଂ ମହାପ୍ରଭୁ ଶ୍ରୀଜଗନ୍ନାଥ ପହଣ୍ଡି ବିଜେ ହୁଅନ୍ତି । ଯାତ୍ରାକାଳରେ ଇନ୍ଦ୍ରାଦି ଦେବତାମାନେ ସେମାନଙ୍କର ସେବା କରନ୍ତି ବୋଲି ଭକ୍ତମାନଙ୍କର ବିଶ୍ୱାସ । ପ୍ରତ୍ୟକ୍ଷଭାବେ ପାଳିଆ ଖୁଣ୍ଟିଆ, ଛତାର, ମହାନାୟକ, ନିବାମ, ମହାଜନ ପୁଷ୍ପାଳକମାନେ ଇନ୍ଦ୍ରଦେବଙ୍କ ବାଦ୍ୟ ଉଚ୍ଚାରଣ ବା ବାଙ୍ମୟସେବା, ବରୁଣଦେବଙ୍କର ଛତ୍ରସେବା, ବାୟୁ ଦେବତାଙ୍କ ଚାମର ସେବା, କୁବେରଦେବଙ୍କ ଖଦିଚାମର ସେବା ଏବଂ ଚନ୍ଦ୍ରଦେବଙ୍କ ତୁଳିକୁ ପ୍ରଦାନ ସେବାରେ ନିୟୋଜିତ ରହନ୍ତି । ହସ୍ତରେ ବେତବାଡି ଧରି ଖୁଣ୍ଟିଆ ଡାକ ଛାଡନ୍ତି– ମଣିମା, ତ୍ରିଭୁବନେଶ୍ୱର, ଶ୍ରୀଅଙ୍ଗକୁ ସାବଧାନ, ବିଜେକୁ ଅବଧାନ ହେଉ ମଣିମା । ମହାପ୍ରଭୁଙ୍କ ଛାମୁରେ ଛାମୁଆମାନେ, ପୃଷ୍ଠଦେଶରେ ପିଠିଆମାନେ, ନାଗତଳେ ରହି ପହଣ୍ଡି କରାଇଥାନ୍ତି । ରତ୍ନସିଂହାସନରୁ ଚାରମାଳରେ ଓହ୍ଲାଇ ଜଗମୋହନ ପାରିହୋଇ ଦିଅଁମାନେ ପହଞ୍ଚନ୍ତି ସପ୍ତର୍ଷି ଦ୍ୱାର ବା ଉତ୍ତରାୟଣ ଦ୍ୱାରରେ । ସାତପାହାଚ ଭାବରେ ସନକାଦି ସପ୍ତଚାଷି ଓ ଯୋଗୀବୃନ୍ଦ ବନ୍ଦାପନା କରନ୍ତି । ତା'ପରେ ଦିଅଁମାନଙ୍କୁ ଚୂଳ ଓ ଟାହିଆ ଲାଗିହୁଏ । ଏହି ଚୂଳ ଓ ଟାହିଆ ରାଘବ ଦାସ ମଠ ପ୍ରସ୍ତୁତ କରିଥାନ୍ତି । ସାତପାହାଚ ତଳକୁ କୀର୍ତ୍ତନ ଚକଡାରେ ଦିଅଁମାନେ ଧାଡି ପହଣ୍ଡିରେ ଅଗ୍ରସର ହୁଅନ୍ତି । ଧାଡି ପହଣ୍ଡି ଅର୍ଥ ଗୋଟିଏ ଧାଡିରେ ଏକ ସମୟରେ ଆଗକୁ ଯିବା । ଅନ୍ୟ ଏକ ପହଣ୍ଡି ଅଛି ତାହା ହେଉଛି ଗୋଟି ପହଣ୍ଡି । ଗୋଟି ପହଣ୍ଡିରେ ଜଣେ ଦିଅଁ ଯାଇ ଆସ୍ଥାନରେ ବିଜେ ହେବାପରେ ଆଉ ଜଣେ ବାହାରିବେ । ମନ୍ଦିରକୁ ଫେରିବା ବେଳେ ସାଧାରଣତଃ ଗୋଟି ପହଣ୍ଡି ହୋଇଥାଏ । ପ୍ରଥମେ ସୁଦର୍ଶନ ଏବଂ ପରେ ପରେ ଶ୍ରୀବଳଭଦ୍ର, ମା' ସୁଭଦ୍ରା ଏବଂ ପ୍ରଭୁ ଜଗନ୍ନାଥ ସ୍ନାନମଣ୍ଡପରେ ବିଜେ ହୁଅନ୍ତି । ସେଠାରେ ତାଙ୍କୁ ସାଷ୍ଟମ କରାଇ ରୁନ୍ଧାହୁଏ । ତାପରେ ବ୍ରାହ୍ମଣ ସେବକ ମହାଜନମାନଙ୍କ ହସ୍ତରେ ବିଜେ ହୋଇ ଆସନ୍ତି ଚଳନ୍ତି ପ୍ରତିମା ଶ୍ରୀମଦନମୋହନ । ସ୍ନାନମଣ୍ଡପରେ ମଙ୍ଗଳ ଆଳତି ଇତ୍ୟାଦି ନୀତି ଅନୁଷ୍ଠିତ ହୋଇ ଅଧର ପୋଛା ବା ଧୋ ପଖାଳ ନୀତି ହୁଏ । ତିନିଗୋଟି ରୂପାପାତ୍ରରେ ଥିବା କର୍ପୂର ଜଳରେ ଦଣ୍ଡ ମହାପାତ୍ର ଦିଅଁମାନଙ୍କର ଘର୍ମାକ୍ତ ମୁଖକୁ ପୋଛିଦିଅନ୍ତି । ପ୍ରତିହାରୀ ଜଳ ଆଣିବାକୁ ଅଧିବାସ ସ୍ଥାନକୁ ଡାକିଯାଆନ୍ତି । ଗରାବଡୁ ସେବକମାନେ ଜଳଛେକ ବୋହିବା ସମୟରେ ମୁହଁରେ ବାଘମୁହଁ ବାନ୍ଧନ୍ତି, ଚତୁର୍ଦ୍ଧାମୂର୍ତ୍ତିଙ୍କ ପାଇଁ ଘଣ୍ଟକାହାଳୀ ବାଦ୍ୟ ପଟୁଆର ସହ ଆସି ପହଞ୍ଚେ ଜଳଛେକ । ତିନିଜଣ ପୂଜାପଣ୍ଡା ଷୋଡଶ ଉପଚାରରେ ପୂଜା ସାରିବା ପରେ ଗରାବଡୁମାନେ ରୂପାପିଙ୍ଗଣ ଧରିଥିବା ତିନିଜଣ ମେକାପକୁ ଜଳଦିଅନ୍ତି । ଏହି ପିଙ୍ଗଣରୁ ଜଳନେଇ ପୂଜାପଣ୍ଡାମାନେ ଠାକୁରମାନଙ୍କୁ ଲାଗି କରନ୍ତି । ମନ୍ତ୍ର ଉଚ୍ଚାରଣ ସହ ଘଣ୍ଟ କାହାଳୀର ମିଶ୍ରଣ ଅପୂର୍ବ ଆଧାତ୍ମିକ ପରିବେଶ ସୃଷ୍ଟିକରେ । ଏଠାରେ ଲକ୍ଷ୍ୟ କରିବାର କଥା ଯେ ୧୦୮ ଜଳପୂର୍ଣ୍ଣ କୁମ୍ଭ ସ୍ନାନବେଦୀକୁ ଚାରି ଥରରେ ଆସେ । ବଡଠାକୁର ଶ୍ରୀବଳଭଦ୍ରଙ୍କ ପାଇଁ ୩୩କୁମ୍ଭ, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପାଇଁ ୩୫ କୁମ୍ଭ, ମା' ସୁଭଦ୍ରାଙ୍କ ପାଇଁ ୩୨କୁମ୍ଭ ଏବଂ ଶ୍ରୀସୁଦର୍ଶନଙ୍କ ପାଇଁ ୮ଟି ଜଳପୂର୍ଣ୍ଣ କୁମ୍ଭ ବାଡଗ୍ରାହୀମାନେ ବୋହି ଆଣନ୍ତି ଏବଂ ନିର୍ଦ୍ଧାରିତ ମଣ୍ଡପରେ ସ୍ଥାପନ କରନ୍ତି । ଧୂପ ଦୀପ ଦିଆସରିଲେ କୁମ୍ଭ ଉପରୁ ନାରିକେଳ ବାହାର କରି ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଧ୍ୟାନକରି ପୁରୁଷସୂକ୍ତ ଉଚ୍ଚାରଣ ସହ ଏକକାଳୀନ ସମସ୍ତଙ୍କୁ ଜଳଶାୟୀ ନ୍ୟାୟରେ ସ୍ନାନ କରାଯାଏ । ଏହି ସ୍ନାନକୁ ମନ୍ତ୍ରଭୂତ ଜଳାଭିଷେକ କହିଲେ ଅତ୍ୟୁକ୍ତି ହେବନାହିଁ ।

ଜଳଲାଗି ସରିଲେ ଲେଙ୍କା ଓ ପାଇକମାନେ ବାଜା ବଜାଇ ଗୋପାଳତୀର୍ଥ ମଠରୁ ବଡଠାକୁରଙ୍କ ପାଇଁ ହାତୀବେଶ ଆଣନ୍ତି । ଅନ୍ୟ ଦୁଇ ଠାକୁରଙ୍କ ପାଇଁ ହାତୀବେଶ ଆସେ ରାଘବ ଦାସ ମଠରୁ । ଜଳଲାଗି ପରେ ଏବଂ ହାତୀ ବେଶରେ ସଜ୍ଜିତ

ହେବାପୂର୍ବରୁ ମହାପ୍ରଭୁଙ୍କ ନିକଟରେ ଛେରାପହଁରା କରନ୍ତି ଗଜପତି ମହାରାଜା । ରୂପା ନିର୍ମିତ ତାମ୍‌ଜାନରେ ବସି ଶ୍ରୀନଅରରୁ ଥାଟପଟୁଆରରେ ଆସି ପହଞ୍ଚନ୍ତି ସ୍ନାନ ମଣ୍ଡପରେ । ସେବାୟତ ଦଇତାମାନେ ଗଜପତିଙ୍କୁ ମଣ୍ଡପ ଉପରକୁ ପାଛୋଟି ନିଅନ୍ତି । ଗଜପତି ମହାରାଜା, ମହାପ୍ରଭୁଙ୍କ ସମ୍ମୁଖରେ ଦଣ୍ଡାୟମାନ ହୋଇ ନିଉଛାଳି ହୁଅନ୍ତି । ତା'ପରେ କର୍ପୂର ଆଳତି, ଆଲଟଚାମର ବ୍ୟଞ୍ଜନ ଏବଂ ମହାପ୍ରଭୁଙ୍କୁ ପୁଷ୍ପାଞ୍ଜଳି ଅର୍ପଣ କରନ୍ତି । ସେଠାରେ ଉପସ୍ଥିତ ଥିବା ମୁଦଲି ସେବକଙ୍କ ହସ୍ତରୁ ସ୍ୱର୍ଣ୍ଣ ସମାର୍ଜନୀ ଆଣି ରାଜଗୁରୁ ସଂସ୍କାର କରିବା ପରେ ମହାରାଜାଙ୍କୁ ପ୍ରଦାନ କରନ୍ତି । ଆଗେ ଆଗେ ଧଳାଫୁଲ ପକାଇ ଚାଲିଥାନ୍ତି ଖୁଣ୍ଟିଆ ସେବକ । ଗଜପତି ମହାରାଜା ସମାର୍ଜନୀରେ ଓଳାଇ ଓଳାଇ ଚାଲିଥାନ୍ତି । ତା'ପରେ ରୂପାପିଙ୍ଗଣରୁ ଚନ୍ଦନ ପାଣି ନେଇ ଚତୁର୍ଦ୍ଦିଗରେ ସିଞ୍ଚନ କରି କରି ମହାପ୍ରଭୁଙ୍କୁ ସ୍ନାନ ମଣ୍ଡପରେ ପରିକ୍ରମା କରନ୍ତି ଗଜପତି ମହାରାଜା । ଛେରାପହଁରା ସାରି ମହାପ୍ରଭୁଙ୍କ ନିକଟରୁ ମେଲାଣି ମାଗି ଶ୍ରୀନଅରକୁ ବାହୁଡାବିଜେ କରନ୍ତି ଗଜପତି ମହାରାଜା । ଛେରାପହଁରା ନୀତି ଶେଷ ହେବା ପରେ ହାତୀ ବେଶରେ ସଜ୍ଜିତ ହୋଇ ଦିଅଁମାନେ ଭକ୍ତମାନଙ୍କୁ ସ୍ନାନମଣ୍ଡପ ଉପରୁ ଦର୍ଶନ ଦେଇଥାନ୍ତି । ଏହି ସମୟରେ ସ୍ନାନମଣ୍ଡପରେ ଅବଢା ଭୋଗ ହେବାର ବିଧି ରହିଛି । ସାଧାରଣତଃ ସୁଆରସେବକମାନେ ଅବଢାକୁ ବାହୁଙ୍ଗୀ ଭାରରେ ବୋହିନେଇ ରତ୍ନ ସିଂହାସନ ତଳ ପୋଖରିଆରେ କିମ୍ବା ଭୋଗମଣ୍ଡପରେ ନିର୍ଦ୍ଧାରିତ ସ୍ଥାନରେ ରଖିଥାଆନ୍ତି । ମାତ୍ର ସ୍ନାନପୂର୍ଣ୍ଣିମା ଦିନ ଦେଉଳ ଭିତରୁ ବାହାରକୁ ଭୋଗଆସେ ଏବଂ ତାହା ବଢାଯାଏ ମହାପ୍ରଭୁଙ୍କର ଚତୁର୍ଦ୍ଦିଗରେ । ହସ୍ତୀବେଶରେ ଥିବା ମହାପ୍ରଭୁ ଶୁଣ୍ଢ ପ୍ରସାରଣ କରି ଭୋଗ ଗ୍ରହଣ କରନ୍ତି ବୋଲି ଭକ୍ତମାନଙ୍କର ଧାରଣା । ନୂଆକରି ସୁଆରସେବା ଗ୍ରହଣ କରୁଥିବା ସେବକମାନେ ଏହିଦିନ ଛେକ ବୋହିଥାଆନ୍ତି । ମହାପ୍ରଭୁଙ୍କର ହାତୀବେଶ ବା ଗଜାନନ ବେଶ ସମ୍ପର୍କରେ ଗୋଟିଏ କିମ୍ବଦନ୍ତୀ ପ୍ରଚଳିତ ଅଛି । ଥରେ ମହାରାଷ୍ଟ୍ରର ଜଣେ ଭକ୍ତ ଗଣପତି ଭଟ୍ଟ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବାକୁ ଆସିଥିଲେ । ସେ ଶ୍ରୀଗଣେଶ ମହାପ୍ରଭୁଙ୍କର ଉପାସକ ଥିଲେ । ସ୍ୱୟଂ ପରଂବ୍ରହ୍ମ ଏଠାରେ ଦାରୁବିଗ୍ରହ ରୂପରେ ବିଦ୍ୟମାନ । ତେଣୁ ସେ ତାଙ୍କର ଇଷ୍ଟଦେବତାଙ୍କୁ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କଠାରେ ଦର୍ଶନ କରିବାକୁ ଆଶା ବାନ୍ଧିଥିଲେ । ମାତ୍ର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦାରୁଭୂତ ମୁରାରୀ ରୂପ ଦେଖି ମନ ଦୁଃଖରେ ଫେରିଯାଉଥିଲେ । ସ୍ୱପ୍ନାଦେଶ ପାଇ ବଡପଣ୍ଡା ଭକ୍ତଙ୍କୁ ଫେରାଇ ଆଣିଲେ ଏବଂ ସ୍ନାନ ମଣ୍ଡପରେ ଭକ୍ତଜନ ସମକ୍ଷରେ ସ୍ନାନ ପରେ ମହାପ୍ରଭୁଙ୍କୁ ଏକ ଅଦ୍ଭୁତ ରୂପରେ ଦର୍ଶନ କଲେ । ସେତେବେଳେ ମହାପ୍ରଭୁ ଗଣପତି ଭଟ୍ଟଙ୍କୁ ତାଙ୍କ ଇଷ୍ଟଦେବତା ଗଜାନନ ରୂପରେ ଦର୍ଶନ ଦେଇଥିଲେ । ଭକ୍ତ ଓ ଭଗବାନଙ୍କ ସେଦିନର ସ୍ମୃତିକୁ ବହନ କରି ମହାପ୍ରଭୁ ଗଜାନନ ବେଶ ହୁଅନ୍ତି ଏବଂ ବଡଦାଣ୍ଡରେ ଠିଆ ହୋଇ ସତୃଷ୍ଣ ନୟନରେ ଚାହିଁଥିବା ଭକ୍ତମାନଙ୍କୁ ଦର୍ଶନ ଦିଅନ୍ତି । ଭୋଗ ସରିବା ପରେ ଭକ୍ତମାନେ ସାହାଣ ମେଲା ଦର୍ଶନ କରିବାର ପରମ୍ପରା ଚାଲିଆସୁଛି । ଓଡ଼ିଶାର ପ୍ରଖ୍ୟାତ ନାମାଚାର୍ଯ୍ୟ ସାଧକ ବାୟାବାବା ସ୍ନାନପୂର୍ଣ୍ଣିମା ତିଥିରେ ବଡଦାଣ୍ଡ ଉପରୁ ମହାପ୍ରଭୁଙ୍କ ତିଥିରେ ବଡଦାଣ୍ଡ ଉପରୁ ମହାପ୍ରଭୁଙ୍କ ଗଜାନନ ବେଶ ଦେଖି ବିମୋହିତହୋଇ ଯାଇଥିଲେ । ତାଙ୍କ ଅନୁଗାମୀମାନେ ସେହି ସ୍ମୃତିକୁ ଏବେ ସ୍ମରଣ କରି ଉତ୍ସବ ପାଳନ କରୁଛନ୍ତି ।

ପ୍ରତିଦିନ ମନ୍ଦିରରେ ସକାଳର ନୀତି ସଙ୍ଗେ ଅବନାଶ ନୀତି ଅନୁଷ୍ଠିତ ହୁଏ । ଦିଅଁମାନେ ଏତିକିବେଳେ ନିତ୍ୟନୈମିତିକ ସ୍ନାନ କରିଥାନ୍ତି । ଏହି ସ୍ନାନ ସାଧାରଣତଃ ପଞ୍ଚାମୃତ ଚନ୍ଦନ କର୍ପୂର ଜଳ ମିଶ୍ରଣରେ କରାଯାଏ ଏବଂ ଦିଅଁମାନଙ୍କ ସମ୍ମୁଖରେ ରଖାଯାଇଥିବା ଦର୍ପଣର ପ୍ରତିବିମ୍ବକୁ ସ୍ନାନ କରାଇ ମନ୍ତ୍ର ଉଚ୍ଚାରଣ କରାଯାଇଥାଏ । ମାତ୍ର ସର୍ବଜନ ସମକ୍ଷରେ ଦେଉଳ ବାହାରେ ଖୋଲାମଣ୍ଡପରେ ଶ୍ରୀଅଙ୍ଗରେ ଏକକାଳୀନ ୧୦୮ ସ୍ୱର୍ଣ୍ଣକୁମ୍ଭ ଜଳ ଢାଳି ହୋଇ ଅଭିଷେକ ହେବା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଏକ ଅନନ୍ୟ ସାଧାରଣ ପରମ୍ପରା ଏବଂ ଏହାହିଁ ସ୍ନାନଯାତ୍ରାର ବିଶେଷତ୍ୱ ।

ନୀଳଚକ୍ର ଉହାଡ
ମଙ୍ଗଳାଘାଟ ରୋଡ୍
ବାସେଳୀ ସାହି, ପୁରୀ-୭୫୨୦୦୧





# ମଶା ବାହିତ ଜ୍ୱର ଡେଙ୍ଗୁ

ଡାକ୍ତର ରାମଚନ୍ଦ୍ର ରାଉତ

ସମ୍ପ୍ରତି ଆମ ଦେଶରେ ଡେଙ୍ଗୁ ଜ୍ୱରର ପାଦୁର୍ଭାବ ଦେଖାଦେଇଛି । ମାତ୍ର ଏହା ଅତ୍ୟଧିକ ହୋଇଛି ବୋଲି ଭୟଭୀତ ହେବା ଉଚିତ୍ ନୁହେଁ । ମଶା ଅନେକ ରୋଗର ବାହାକ । ମଶା କାମୁଡା ଦ୍ୱାରା ହେଉଥିବା ଜନକ୍ଷୟ ଓ କାର୍ଯ୍ୟ ଦିବସ ହାନି କୌଣସି ବଡ ଯୁଦ୍ଧ ଦ୍ୱାରା ହେଉଥିବା କ୍ଷତିଠାରୁ ଯଥେଷ୍ଟ ଅଧିକ ।

**ମଶା ଦ୍ୱାରା ହେଉଥିବା ରୋଗ**

ମ୍ୟାଲେରିଆ– ମାଇ ଆନୋଫିଲିସ୍ ମଶା

ଫାଇଲେରିଆ– କ୍ୟୁଲେକ୍ସଫାଟିଗାନ୍ସ

ମସ୍ତିଷ୍କ ସଂକ୍ରମଣ– କ୍ୟୁଲେକ୍ସ, ଏଡିସ୍

ଡେଙ୍ଗୁ, DHF/DSS– ଏଡିସ୍ ଇଜିପ୍ଟି

ପୀତଜ୍ୱର– ଏଡିସ୍

ଏହି ଜ୍ୱର ଏକ ଭୂତାଣୁଜନିତ ଜ୍ୱର ଅଟେ ଓ ଏହା କେତେକ ସ୍ଥଳରେ ଆପେ ଆପେ ଭଲ ହୋଇଯାଏ । ଏହା ଏଡିସ୍ ଇଜିପ୍ଟି ନାମକ ମଶା ଦ୍ୱାରା ବ୍ୟାପିଥାଏ, ଅନ୍ୟ ଏକ ମଶା ଏଡିସ୍ ଆଲ୍‌ବୋ ପିକ୍ଟସ୍ ଦ୍ୱାରା ମଧ୍ୟ ବେଳେବେଳେ ସଂକ୍ରମିତ ହୋଇଥାଏ । ମଶାଦ୍ୱାରା ବ୍ୟାପୁଥିବା ରୋଗ ମଧ୍ୟରେ ମ୍ୟାଲେରିଆ ପରେ ଡେଙ୍ଗୁ ହେଉଛି ଅତ୍ୟଧିକ ଦେଖାଯାଉଥିବା ରୋଗ ।

ଏହି ଜ୍ୱରରେ ୨୦୦୩ ମସିହାରେ ୧୨,୭୫୦ ଜଣ ଆକ୍ରାନ୍ତ ହୋଇ ୨୧୭ ଜଣ ମୃତ୍ୟୁ ମୁଖରେ ପଡିଥିଲେ । ବର୍ତ୍ତମାନ ଦିଲ୍ଲୀ, ଉତ୍ତର ପ୍ରଦେଶ, ହରିଆନା ଓ ପଞ୍ଜାବର କେତେକ ସ୍ଥାନରେ ପ୍ରାୟ ଦେଖାଦେଇଛି । ପାଖାପାଖି ୬୦୦ ଜଣ ଆକ୍ରାନ୍ତ ହୋଇଥିବା ବେଳେ ୧୩ଜଣଙ୍କର ପ୍ରାଣହାନି ଘଟିଛି । ଏମାନଙ୍କ ମଧ୍ୟରେ ଦେଶର ପ୍ରମୁଖ ଚିକିତ୍ସା ମହାବିଦ୍ୟାଳୟର ଜଣେ ଡାକ୍ତର ମଧ୍ୟ ଅନ୍ତର୍ଭୁକ୍ତ । ଗତ କେତେ ବର୍ଷ ହେଲା ଏହା ଓଡ଼ିଶାରେ ଦେଖା ଦେଇଥିଲେ ହେଁ ସେପରି ଭୟାବହ ପରିସ୍ଥିତିରେ ଏହା ପହଞ୍ଚି ନାହିଁ ଓ କେହି ମୃତାହତ ହୋଇନାହାଁନ୍ତି । ଗତବର୍ଷ ୨୦୧୧ରେ ସମୁଦାୟ ୩୮୯ଟି ରକ୍ତ ନମୁନା ଯାଞ୍ଚ କରାଯାଇଥିଲା ଓ ସେଥିରୁ ୧୬୧ଜଣଙ୍କ ରକ୍ତରେ ଡେଙ୍ଗୁ ଭୂତାଣୁ ଧରାପଡିଥିଲା । ଗତବର୍ଷ ଏକ ସାମୟିକ ସର୍ବେକ୍ଷଣରୁ ଜଣାପଡିଛି ଯେ ଏସିବି ମେଡିକାଲ୍ କଲେଜରେ ୯୩ ନମୁନାରୁ ୧୯ଟି, ଏମ୍‌କେସିଜି ମେଡିକାଲ୍ କଲେଜର ୨୨ଟି ରକ୍ତ ନମୁନାରୁ ୭ଟି ଓ ଭିଏସ୍‌ଏସ୍ ମେଡିକାଲ୍ କଲେଜରେ ୯ଟି ନମୁନାରୁ ୨ଟି ଏହିପରି ସମୁଦାୟ ୧୨୪ଟି ରକ୍ତ ନମୁନାରୁ ୨୯ଟିରେ ଉକ୍ତ ଭୂତାଣୁ ଠାବ କରାଯାଇଥିଲା । ଆମ ଦେଶ, ବର୍ମା, ବାଂଲାଦେଶ, ଶ୍ରୀଲଙ୍କା, ଥାଇଲାଣ୍ଡ, ଇଣ୍ଡୋନେସିଆ, ଫିଲିଫାଇନ୍‌ସ ଓ ପଶ୍ଚିମ ଆଫ୍ରିକାରେ ଏହି ରୋଗର ପାଦୁର୍ଭାବ ରହିଛି ।

| ୨୦୦୩ | ଆକ୍ରାନ୍ତ | ମୃତ |
|---|---|---|
| କେରଳ | ୩୫୪୬ | ୬୮ |
| କର୍ଣ୍ଣାଟକ | ୧୨୨୬ | ୭ |
| ମହାରାଷ୍ଟ୍ର | ୭୭୨ | ୪୫ |
| ଦିଲ୍ଲୀ | ୨୮୮୨ | ୩୫ |
| ଗୁଜୁରାଟ | ୨୪୯ | ୯ |
| ତାମିଲନାଡୁ | ୧୬୦୦ | ୮ |
| ଉତ୍ତରପ୍ରଦେଶ | ୭୩୮ | ୮ |
| ରାଜସ୍ଥାନ | ୬୮୫ | ୧୧ |

| ୨୦୦୩ | ଆକ୍ରାନ୍ତ | ମୃତ |
|---|---|---|
| ପଞ୍ଜାବ | ୮୪୮ | ୧୩ |
| ଆନ୍ଧ୍ରପ୍ରଦେଶ | ୯୫ | ୫ |
| ହରିଆନା | ୯୫ | ୬ |
| ଗୋଆ | ୧୪ | ୪ |
| ବିହାର, ଓଡ଼ିଶା | ୦ | ୦ |

ମାଈ ଆନୋଫିଲିସ୍ ମଶାଦ୍ୱାରା ମ୍ୟାଲେରିଆ ଜୀବାଣୁ ମଣିଷ ଶରୀରକୁ ଆସୁଥିବା ବେଳେ ଡେଙ୍ଗୁ ଜ୍ୱରର ଭୂତାଣୁ ଏଡିସ୍ ଇଜିପ୍ଟି ନାମକ ମଶା ଦ୍ୱାରା ସଂକ୍ରମିତ ହୋଇଥାଏ । ଏହି ମଶା ଡେଙ୍ଗୁ ଜ୍ୱର ରୋଗୀର ରକ୍ତ ପାନ କଲାବେଳେ ଭୂତାଣୁଯୁକ୍ତ ରକ୍ତ ତା' ଶରୀର ମଧ୍ୟକୁ ଯାଇଥାଏ । ଜ୍ୱର ହେବାର ଗୋଟିଏ ଦିନ ପୂର୍ବଠାରୁ ୫ଦିନ ଯାଏ ରୋଗୀର ରକ୍ତରେ ଭୂତାଣୁ ଥାନ୍ତି ଓ ଏହି ସମୟରେ ମଶାଦ୍ୱାରା ରକ୍ତ ପାନ ସମୟରେ ବାହିତ ହୁଅନ୍ତି । ଉକ୍ତ ମଶା ଥରେ ସଂକ୍ରମିତ ହେଲେ ପରବର୍ତ୍ତୀ ସବୁ ସମୟ ପାଇଁ ଏହି ରୋଗର ସଞ୍ଚାରକ ହୋଇଥାଏ ।

ସାଧାରଣତଃ ଏହି ଜ୍ୱରରେ ଦେହ ମୁଣ୍ଡ ଅଧିକ ପୀଡା ହୁଏ ଓ ହାଡଭଙ୍ଗା ଜ୍ୱର ହୁଏ । ଏଣୁ ଏହାକୁ ଠେଙ୍ଗା ଜ୍ୱର ମଧ୍ୟ କୁହାଯାଏ । ଡେଙ୍ଗୁ ଜ୍ୱର ସାଧାରଣତଃ ଡେଙ୍ଗୁ ଜ୍ୱର ଓ ରକ୍ତକ୍ଷରଣ ଜ୍ୱର ବୋଲି ଦୁଇ ପ୍ରକାରର ଅଟେ ।

ରୋଗୀ-ମଶା-ସୁସ୍ଥ ମଣିଷ(ରୋଗୀ) ଏହିପରି ଚକ୍ରାକାରରେ ରୋଗ ବ୍ୟାପିଥାଏ । ଏହା ସଂକ୍ରମଣ ହେବାର ୩ରୁ ୧୦ ଦିନ (୫-୬) ଦିନ ପରେ ସାଧାରଣତଃ କମ୍ପ ଥଣ୍ଡା ସହିତ ଅତ୍ୟଧିକ ଜ୍ୱର ହୋଇଥାଏ । ମାଂସପେଶୀରେ ପ୍ରବଳ ଯନ୍ତ୍ରଣା, ଅସହ୍ୟ ମୁଣ୍ଡବ୍ୟଥା ଓ ଆଣ୍ଠୁଗଣ୍ଠି ଅତ୍ୟଧିକ ଦରଜ ହୋଇ ବ୍ୟକ୍ତିକୁ ସମ୍ପୂର୍ଣ୍ଣ ଶଯ୍ୟାଶାୟୀ କରାଇଥାଏ । ୫-୬ଦିନ ପରେ ଜ୍ୱର ମନକୁ ମନ କମିଯାଏ ଓ ରୋଗୀ ଆରୋଗ୍ୟ ଲାଭ କରିଥାଏ । ଏଥିରେ ସାଧାରଣତଃ ମୃତ୍ୟୁ ହୋଇନଥାଏ ଓ ଥରେ ଡେଙ୍ଗୁ ହେଲେ ଶରୀରର ରୋଗ ପ୍ରତିରୋଧକ ଶକ୍ତି ସୃଷ୍ଟି ହୋଇଥାଏ । ମାତ୍ର ଡେଙ୍ଗୁ ରକ୍ତକ୍ଷରଣ ଜ୍ୱର (ଡିଏଚ୍ଏଫ୍) ଏକ ମାରାତ୍ମକ ଜ୍ୱର ଅଟେ । ଏଥିରେ ଉପରବର୍ଣ୍ଣିତ ସମସ୍ତ ଲକ୍ଷଣ ସହିତ ଆଉ ଗୋଟିଏ ଲକ୍ଷଣ ଉତ୍ତମ ରୂପେ ପ୍ରତିଭାତ ହୋଇଥାଏ । ଶରୀରର ବିଭିନ୍ନ ସ୍ଥାନରେ ବିଶେଷତଃ ଚର୍ମ ତଳେ ରକ୍ତକ୍ଷରଣ ହୋଇଥାଏ । ରକ୍ତ ପରୀକ୍ଷା କଲେ ମ୍ୟାଲେରିଆ ବା ଟାଇଫଏଡ୍ ଜଣାପଡେନାହିଁ । ଶ୍ୱେତ ରକ୍ତ କଣିକା କମ୍ ହୋଇଥାଏ ଓ ପ୍ଲାଟିଲେଟ୍ ସଂଖ୍ୟା ମାତ୍ରାଧିକ ଭାବେ କମ୍ ହୋଇଥାଏ । ଚର୍ମ ଉପରେ ରକ୍ତ କ୍ଷରଣର ଦାଗ ଦେଖାଯାଏ ଓ ରକ୍ତଚାପ ଯନ୍ତ୍ରର ଫିତାଦ୍ୱାରା ଚାପ ପ୍ରୟୋଗ କଲେ ଏକ ବର୍ଗ ଇଞ୍ଚ ଜାଗାରେ ୨୦ରୁ ଅଧିକ ଦାଗ ସୃଷ୍ଟି ହୋଇଥାଏ । କେତେକ ଗୁରୁତର କ୍ଷେତ୍ରରେ ରୋଗୀ ଅଚେତ ହୋଇଥାଏ । ରକ୍ତଚାପ ଅତ୍ୟନ୍ତ କମ୍ ହୋଇଥାଏ ଓ ମସ୍ତିସ୍କ ତଥା ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ଅଙ୍ଗପ୍ରତ୍ୟଙ୍ଗରେ ରକ୍ତକ୍ଷରଣ ଯୋଗୁଁ ମୃତ୍ୟୁ ମଧ୍ୟ ଘଟିଥାଏ ।



**ଲକ୍ଷଣରୁ ରୋଗ ନିର୍ଣ୍ଣୟ**

ଡି.ଏଚ୍.ଏଫ୍ – ଜ୍ୱର: ଅତ୍ୟଧିକ ହଠାତ୍ ହୁଏ, ୨ରୁ ୭ଦିନ ଯାଏଁ

– ରକ୍ତ କ୍ଷରଣ: ଚର୍ମ ତଳେ, ରକ୍ତଚାପ ପଟି ବନ୍ଧା ପରୀକ୍ଷାରେ ୨୦ରୁ ଅଧିକ ପ୍ରତି ବର୍ଗ ଇଞ୍ଚ ପ୍ରତି

– ଯକୃତ ବୃଦ୍ଧି

ଡି.ଏସ୍.ଏସ୍ – ବିଭିନ୍ନ ସ୍ଥାନରୁ ରକ୍ତ କ୍ଷରଣ

– ରୋଗୀ ଅଚେତ ହେବା

– ମୃତ୍ୟୁ ମୁଖରେ ପଡିବା

ରକ୍ତ ପରୀକ୍ଷା – ୧ ମି.ଲି ରକ୍ତରେ ୧ଲକ୍ଷରୁ କମ୍ ପ୍ଲାଟିଲେଟ୍

– ରକ୍ତ ସାନ୍ଦ୍ରତା ୨୦%ରୁ ଅଧିକ ବେସ୍ ଲାଇନ୍‌ଠାରୁ ।

ଯେହେତୁ ଏହି ରୋଗପାଇଁ କୌଣସି ଯଥାଯଥ ଚିକିତ୍ସା ନାହିଁ, ତେଣୁ ଏହି ରୋଗରୁ ଦୂରେଇ ରହିବା ପାଇଁ ବ୍ୟକ୍ତିଗତ ସତର୍କତା ଦରକାର । ଘର ପାଖରେ ମଇଳା ପାଣି ଯଥା– ନାଳ, ନର୍ଦ୍ଦମା, ଶୀତାତାପ ଯନ୍ତ୍ରର ପାଣି ଜମିବା ଜାଗା, ଫୁଲ କୁଣ୍ଡ ଇତ୍ୟାଦିର ପାଣିରେ ଯେପରି ମଶା ବଢି ନପାରନ୍ତି ସେଥିପ୍ରତି ଦୃଷ୍ଟି ଦେଇ ଓ ନିଜେ ମଶାରୀ ବ୍ୟବହାର କରି ତଥା ମଶାଧୂପ, ମ୍ୟାଟ୍, କ୍ରିମ୍ ଇତ୍ୟାଦି ମଧ୍ୟ ବ୍ୟବହାର କରିବା ଦରକାର । ଏହାର ଫଳପ୍ରଦ ଟୀକା ବାହାରି ନାହିଁ । ଗୁରୁତର ରୋଗୀକୁ ଡାକ୍ତରଖାନାରେ ରଖି ଚିକିତ୍ସା କରାଯାଏ । ସାଲାଇନ୍, ଷ୍ଟିରଏଡ୍, ଜ୍ୱର କମିବା ଔଷଧ ଦିଆଯାଏ । ସାଧାରଣ କ୍ଷେତ୍ରରେ ଜ୍ୱର କମିବା ଔଷଧ ଓ.ଆର୍.ଏସ୍ ଦ୍ରବଣ ଓ ସାଧାରଣ ଆଣ୍ଟିବାୟୋଟିକ୍ ମଧ୍ୟ ଫଳପ୍ରଦ ହୋଇଥାଏ । ଆସ୍ପିରିନ୍ କିମ୍ବା ଡାଇପାରିଡାମୋଲ୍ ଇତ୍ୟାଦି ରକ୍ତ ଜମାଟ ହ୍ରାସକାରୀ ଔଷଧ ଦିଆଯାଏନାହିଁ । ମଶା ନିୟନ୍ତ୍ରଣ ଓ ବ୍ୟକ୍ତିଗତ ସଚେତନତା ଏଥିପାଇଁ ଅତ୍ୟନ୍ତ ଜରୁରୀ ।

ନିୟନ୍ତ୍ରଣ ପଦକ୍ଷେପ– ମଶା ନିୟନ୍ତ୍ରଣ

– ଟୀକା: ଏଯାବତ୍ ବାହାରିନାହିଁ

– ଅନ୍ୟାନ୍ୟ: ପ୍ରଥମ କେତେଦିନ ରୋଗୀ ମଶାରିରେ ରହିବା ଉଚିତ୍ ।

ଗୋପାଳପୁର, ହରିହରଭେଟ, ବାଙ୍କୀ
କଟକ, ପିନ୍–୭୫୪୦୦୮

# ବୋଇତ ବନ୍ଦାଣ

**ଅନନ୍ତ ଗୋପାଳ ପଣ୍ଡା**

ଭାରତ ଅଟଇ ଏକ ସରୋବର
ତାମଧ୍ୟେ ଫୁଟିଛି ସ୍ୱର୍ଣ୍ଣ କମଳ,
ସେ କମଳ ଅଟେ କଳା ସଂସ୍କୃତିର
ରାଜ୍ୟଟିଏ ନାମ ତାର ଉତ୍କଳ ।
ତାହାର ଅତୀତ ଗଉରବ ଗାଥା
ସୁମରଣ କଲେ ଫୁଲଇ ଛାତି,
ଇତିହାସ ପୃଷ୍ଠା କରିଛି ମଣ୍ଡନ
ଓଡ଼ିଆମାନଙ୍କ କୃତି ଓ କୀର୍ତ୍ତି ।
ଧର୍ମ ମାସ ଭାବେ ପ୍ରସିଦ୍ଧି ଲଭିଛି
ବାର ମାସ ମଧ୍ୟେ କାର୍ତ୍ତିକ ମାସ,
ମାସକ ମଧ୍ୟରେ କାର୍ତ୍ତିକ ପୁନେଇଁ
ସବୁଠାରୁ ବଳି ପୁଣ୍ୟ ଦିବସ ।
ସେଦିନ ପ୍ରଭାତେ ସରସୀ ସରିତେ
ସାଗରରେ ଲୋକେ କରନ୍ତି ସ୍ନାନ
ଆକାମା ବଇ ପାନଗୁଆ ଥୋଇ
ଭସାଇ ଦିଅନ୍ତି ବୋଇତ ମାନ ।
ଓଡ଼ିଆ ସାଧବ ପୁଅ ସେ ଦିନରେ
ବୋଇତେ ଭରିଣ ଦେଶ ଦରବ
ନେଇ ଯାଉଥିଲେ ଜାଭା ସୁମାତ୍ରାକୁ
ଆଣିବାକୁ ବିଦେଶରୁ ବିଭବ ।
ଧନରତ୍ନ ଧରି ଫେରି ଆସୁଥିଲେ
ମହା ଆନନ୍ଦରେ ନିଜ ଦେଶକୁ
ବିଦେଶୀକୁ ଚମକୃତ କରୁଥିଲେ
ବିକି ଉତ୍କଳର କଳା ନୈପୁଣ୍ୟକୁ ।
ଯାଇଛି ସେଦିନ ରହିଅଛି କଥା
ବୋଇତ ବନ୍ଦାଣ ହୋଇଅଛି ପ୍ରଥା
ଆସ ସର୍ବେ ଆଜି ବନ୍ଦାଇ ବୋଇତ
ଗାଇବା ଉତ୍କଳ ଗୌରବ ଗାଥା ।

ସିଣ୍ଡିକେଟ୍ ବ୍ୟାଙ୍କ
ଖୋର୍ଦ୍ଧା ଶାଖା
ଖୋର୍ଦ୍ଧା

# ପ୍ରାକୃତିକ ପଦକ୍ଷେପ

**ସତ୍ୟନାରାୟଣ ସେଠ**

ପ୍ରକୃତିର ବିରୋଧାଚରଣ ଯୋଗୁଁ ବାୟୁମଣ୍ଡଳର ପରିବର୍ତ୍ତନ ସହ ମେରୁ ଅଞ୍ଚଳରେ ବରଫ ତରଳ, ଅସମୟରେ ବର୍ଷା, ଗ୍ୟାସ୍ ଉଦ୍‌ଗୀରଣ, ସମୁଦ୍ର ଅଶାନ୍ତ, ଭୂମିକମ୍ପ, ଅତ୍ୟଧିକ ଗରମ, ମରୁଡି, ପ୍ରବଳ ବର୍ଷା, ବନ୍ୟା ଆଦି ଅନେକ ପ୍ରାକୃତିକ ଦୁର୍ବିପାକମାନ ଦେଖିବାକୁ ମିଳିଲାଣି । ଏହାର ମୂଳ କାରଣ ଯାହା ହେଉନା କାହିଁକି – ଜୀବଜଗତ, ଉଦ୍ଭିଦ ଜଗତ, ପ୍ରକୃତି ଉପରେ ଏହାର କୁପ୍ରଭାବ ବହୁଗୁଣରେ ପଡିଲାଣି । ନାନା ପ୍ରକାର ରୋଗ ସହିତ ବିକଳାଙ୍ଗ ଆଦି ଦେଖା ଗଲାଣି । ଅନେକ ସମୟରେ ମାନସିକ ଅସ୍ଥିରତା ମଧ୍ୟ ବହୁଳ ଭାବରେ ଦେଖାଦେଲାଣି । ମନେ ରଖିବାକୁ ହେବ ଯେ, ସମସ୍ତ ପ୍ରାଣୀଜଗତ, ଉଦ୍ଭିଦ ଜଗତ ସମସ୍ତେ ସମସ୍ତଙ୍କ ସହିତ ପରିପୂରକ । ଆମ ଜାଣତରେ ହେଉ ବା ଅଜାଣତରେ ହେଉ– ଅନେକ ଜୀବଜନ୍ତୁ, ଉଦ୍ଭିଦ ବଂଶ ଲୋପ ପାଇସାରିଲାଣି । ଆଗକୁ କ'ଣ ହେବ ବା ହେବାକୁ ଯାଉଛି କିଛି କହି ହେଉନାହିଁ ।

ପ୍ରକୃତି, ନିୟମରେ ବନ୍ଧା– ବିଚ୍ୟୁତ ହେଲେ ଅନେକ ଅସୁବିଧାର ସମ୍ମୁଖୀନ ପରିଲକ୍ଷିତ ହେବାର ସୂଚନା ମିଳିଲାଣି । ନିୟମ ଖୋଜି ବାହାର କରି ତାକୁ ବିଧିବଦ୍ଧ ଭାବରେ କାର୍ଯ୍ୟକାରୀ କରିବାକୁ ହେବ ।

ଅନେକ ଦୂରଦୃଷ୍ଟି ସମ୍ପନ୍ନ ବ୍ୟକ୍ତି, ଭବିଷ୍ୟତ ବକ୍ତା ଭବିଷ୍ୟବାଣୀ କରିଥିଲେ, କରୁଥିଲେ ଏବଂ କରୁଛନ୍ତି ମଧ୍ୟ, କିନ୍ତୁ ସେସବୁକୁ ଭ୍ରୂକ୍ଷେପ ନକରି ଆଗକୁ ମାଡିଚାଲି ପ୍ରକୃତିର ବିରୋଧରେ ଯଥା– ପ୍ରଧାନତଃ ବୃକ୍ଷରାଜୀ ଜଙ୍ଗଲ ଧ୍ୱଂସ, ବିଭିନ୍ନ ପରମାଣୁ ପରୀକ୍ଷଣ, ଶିଳ୍ପ ନାମରେ ଖଣି (ପାହାଡ ପର୍ବତ) ଆଦି ଖନନ, ମାଟିତଳୁ କୋଇଲା, ତେଲ, ଗ୍ୟାସ ବାହାର କରିବା, ବିରାଟ ବିରାଟ ନଭଶ୍ଚୁମ୍ବୀ ଅଟ୍ଟାଳିକା ନିର୍ମାଣ ଆଦି ଯୋଗୁଁ ସନ୍ତୁଳନର ଅଭାବ ପରିଲକ୍ଷିତ ହେଉଛି । ପ୍ରକୃତି ନିୟମରେ ବନ୍ଧା । ସୃଷ୍ଟି ଆରମ୍ଭରୁ ଅନେକ ଯୁଗ, ଅନେକ ସଭ୍ୟତା ଅତିକ୍ରମ କରି ଆଗେଇ ଚାଲିଛି । ବର୍ତ୍ତମାନ ଏଇ ଊନବିଂଶ /ବିଂଶ ଶତାବ୍ଦୀରେ ସଭ୍ୟତା ବହୁ ଉତ୍କର୍ଷତା ପ୍ରତିପାଦିତ କରିପାରିଛି ବୋଲି ଭାବୁଛି – କିନ୍ତୁ ପ୍ରକୃତରେ ଆମେ ସେପର୍ଯ୍ୟନ୍ତ ପହଁଞ୍ଚି ପାରିନାହୁଁ । ପୂର୍ବରୁ ଯେଉଁ ସଭ୍ୟତା ଗଢ଼ି ଉଠିଥିଲା, ସେମାନଙ୍କ ଆମ (ବର୍ତ୍ତମାନ) ସଭ୍ୟତାଠାରୁ ଥିଲା ବହୁ ଉଚ୍ଚରେ – ଆମେ ସେମାନଙ୍କୁ କେବଳ ଅନୁସରଣ କରୁଛେ ମାତ୍ର । କାରଣ ସେମାନେ ଗ୍ରହରୁ ଗ୍ରହ, ନକ୍ଷତ୍ର ଆଦିକୁ ଯାତାୟାତ କରିପାରୁଥିଲେ । ସମୟ ସମୟରେ ଏଲିଏନ୍‌ମାନେ ଆମ ପୃଥିବୀକୁ ଆସୁଥିବାର ଅନେକ ଖବର ଆସେ । ରାବଣ ତା'ର ପୁଷ୍ପକ ବିମାନରେ ସବୁ ସ୍ଥାନକୁ ଅନାୟାସରେ ଯାତ୍ରା କରି ପାରୁଥିଲା । କୌଣସି ଯନ୍ତ୍ର, ଇନ୍ଧନ, ଚାଳକ ଦରକାର ପଡୁଥିଲା ନା ଉଠିବାରେ ବା ଓହ୍ଲାଇବାରେ ଆବଶ୍ୟକ ହେଉଥିଲା ବିମାନ ଘାଟି ବା ହେଲିପ୍ୟାଡ । ବର୍ତ୍ତମାନ ସେପର୍ଯ୍ୟନ୍ତ ଆମେ ପହଞ୍ଚି ପାରିନାହୁଁ । ଯନ୍ତ୍ର ମାଧ୍ୟମରେ ଫୋନ୍ /ମୋବାଇଲ ଦ୍ୱାରା ଦୂର ସ୍ଥାନକୁ ଏପରିକି କନ୍‌ଫରେନ୍ସ କରି କଥାବାର୍ତ୍ତା ତଥା ଟିଭି ମାଧ୍ୟମରେ ମିଟିଂ, ସଭାସମିତି, ଉତ୍ସବ ଆଦିର ଲାଇଭ୍ ଟେଲିକାଷ୍ଟ ଆଦି ହୋଇପାରୁଥିଲେ ମଧ୍ୟ ସ୍ମରଣ (ଟେଲିପାଥି) କରି ବା ସ୍ମରଣ ଶକ୍ତି ଦ୍ୱାରା ଆମେ ଜଣକ ସହିତ ଦେଖା ସାକ୍ଷାତ ତ ଦୂରର କଥା, କଥାବର୍ତ୍ତା ମଧ୍ୟ ହୋଇ ପାରୁନାହୁଁ । ଦୂର ସ୍ଥାନମାନଙ୍କରେ ଘଟୁଥିବା ଘଟଣାବଳୀଗୁଡିକ ସେମାନେ ତାଙ୍କର ଦିବ୍ୟଶକ୍ତି ବଳରେ ଦେଖି ପାରୁଥିଲେ, ଜାଣି ପାରୁଥିଲେ । ସେପର୍ଯ୍ୟନ୍ତ ଆମେ ପହଞ୍ଚି ପାରିନାହୁଁ । ଦରକାର ପଡିଲେ ଆମେ ଯୁଦ୍ଧ କରୁଛେ ଶତ୍ରୁକୁ ଦମନ କରିବା ପାଇଁ – କିନ୍ତୁ ଯୁଦ୍ଧରେ ଶତ୍ରୁ ସହିତ ଅନେକ ବନ୍ଧୁଙ୍କୁ ହରାଇବାକୁ ପଡୁଛି । କେବଳ ଶତ୍ରୁକୁ ହିଁ ମାରିବା ବା ଦମନ କରିବା ଶକ୍ତି ବର୍ତ୍ତମାନ ସୁଦ୍ଧା ଆମର କରଗତ ହୋଇ ପାରିନାହିଁ । ସେହିଭଳି ଶକ୍ତି ହାସଲ କରି ତାକୁ ଜନକଲ୍ୟାଣ ସକାଶେ ବିନିଯୋଗ ଆମର ଲକ୍ଷ୍ୟ,

ପ୍ରୟାସ ତଥା ଉଦ୍ୟମ ହେବା ଅତି ଆବଶ୍ୟକ ଏବଂ ଜରୁରୀ । ସେଥିପାଇଁ ପ୍ରୟାସ ହେବା ଉଚିତ୍ ।

କୃଷି ଉତ୍ପାଦ ବଢ଼ାଇବା ପାଇଁ ପ୍ରାକୃତିକ ତଥା ପାରମ୍ପରିକ ପଦ୍ଧତିକୁ ଉତ୍ସାହିତ ନକରି ଆଧୁନିକ ତଥା ବୈଜ୍ଞାନିକ ପ୍ରଣାଳୀ ଅବଲମ୍ବନ ତଥା ରାସାୟନିକ ସାର ଆଦି ପ୍ରୟୋଗ କରି ଅନେକ ସୁଫଳ ପାଉଥିଲେ ମଧ୍ୟ ତା ସହିତ ଆମର ଅଜାଣତରେ ଅନେକ ରୋଗକୁ ଆମନ୍ତ୍ରଣ କରୁଛେ । କେହି ତା'ର ଖବର ରଖିଲେଣି ? ଖାଦ୍ୟ ସହିତ ଆମ ଶରୀର ଗଢ଼ା । ଉପଯୁକ୍ତ ଖାଦ୍ୟର ଅଭାବରୁ ଆମ ଶରୀର ଅନେକ ରୋଗର କାରଣ ହୋଇଥାଏ ।

ପ୍ରକୃତିର କୁପ୍ରଭାବ ତଥା ବିଭିନ୍ନ ରାସାୟନିକ ପ୍ରକ୍ରିୟା ଜନିତ ଉତ୍ପାଦିତ ଖାଦ୍ୟ ଯୋଗୁଁ ବର୍ତ୍ତମାନ କେବଳ ମାନବ ସମାଜ ନୁହେଁ, ସମସ୍ତ ଜୀବଜଗତ ଉପରେ ଏହାର ପ୍ରଭାବ ପରିଲକ୍ଷିତ ହୋଇ ନାନା ପ୍ରକାର ଅଜଣା ରୋଗ ଦେଖା ଦେଲାଣି । ଆଗେ ସାଧାରଣତଃ ଆଖି, ପାଟି, ଜିଭ, ନାଡ଼ି, ଚିକିତ୍ସକଙ୍କ ସ୍ପର୍ଶ ତଥା ପରେ ପରେ ଷ୍ଟେଥୋ ସାହାଯ୍ୟରେ ପ୍ରାୟ ସବୁ ରୋଗର ଚିକିତ୍ସା ସହଜରେ ସାଧାରଣ ଖର୍ଚ୍ଚରେ କରାଯାଇ ପାରୁଥିଲା ଅଥଚ ଅନେକ ଆଧୁନିକ ବୈଜ୍ଞାନିକ ପରୀକ୍ଷଣ, ନିରୀକ୍ଷଣ, ବହୁ ଖର୍ଚ୍ଚ କରି ମଧ୍ୟ ପ୍ରକୃତ କାରଣ ଆମେ ପାଇ ପାରିନାହୁଁ । ନିଦାନ ଖୋଜି ବାହାର କରିବା ପୂର୍ବରୁ ପ୍ରଥମେ ଉତ୍ପାଦିତ ଖାଦ୍ୟଶସ୍ୟ ତଥା ସେଥିରୁ ପ୍ରସ୍ତୁତ ହେଉଥିବା ଖାଦ୍ୟ ସାମଗ୍ରୀ ବ୍ୟବସାୟ ଭିତ୍ତିକ ନହୋଇ ଖାଦ୍ୟୋପଯୋଗୀ ହେବା ଏବଂ ଚିକିତ୍ସା କ୍ଷେତ୍ରରେ ମଧ୍ୟ ସେହିଭଳି ବ୍ୟବସାୟୀଭିତ୍ତିକ ନହୋଇ ସେବା ମନୋଭାବ ସହିତ ସହଜ, ସରଳ ତଥା ସାଧାରଣ ହେବା ଉଚିତ୍ । ସେଥିପାଇଁ ବିହିତ ପଦକ୍ଷେପ ଗ୍ରହଣ କରାଯାଉ ।

ସୃଷ୍ଟିର ଆରମ୍ଭରୁ ଭୌଗୋଳିକ ଉପସ୍ଥିତି, ଗଠନ ଅନୁସାରେ ଆମ ଜୀବଜଗତ, ଉଦ୍ଭିଦ ଜଗତରେ ରଙ୍ଗ, ଗଠନ, ଭାଷା, ଖାଦ୍ୟପେୟ, ବେଶ ପୋଷାକ, ଚାଲିଚଳଣ, ଭାବଧାରା, ରୁଚି, ସାମାଜିକତା ଆଦି କ୍ଷେତ୍ରରେ କ୍ରମାନ୍ୱୟରେ ବିକାଶ ହୋଇ ଚାଲିଥିଲେ ମଧ୍ୟ ଆଞ୍ଚଳିକ ଭିତ୍ତି ଅନୁସାରେ ଅନେକ ବିଭିନ୍ନତା ପରିଲକ୍ଷିତ ହୋଇଥାଏ । ଏପରିକି ଆମ ଭାରତବର୍ଷ କାହିଁକି ଆମ ଓଡ଼ିଶା ରାଜ୍ୟ ଭିତରେ ମଧ୍ୟ ଦେଖିବାକୁ ମିଳିଥାଏ । ଏହା ହେଉଛି ପ୍ରକୃତିର ବୈଚିତ୍ର୍ୟତା ତଥା ଦାନ । ଆମ୍ଭେମାନେ ସମସ୍ତେ ହୃଦୟଙ୍ଗମ କରି ପ୍ରକୃତିଦତ୍ତକୁ ଗୁରୁତ୍ୱ ଦେଇ ବିଶେଷ କରି ଖାଦ୍ୟ ପ୍ରଣାଳୀ ଏବଂ ବେଶ ପୋଷାକକୁ ଆଞ୍ଚଳିକ ସାମାଜିକ ଭାବାପନ୍ନ କରିବା ଉଚିତ । ଏହାଦ୍ୱାରା ଆମର ବୌଦ୍ଧିକ ଚିନ୍ତାଧାରା, ସାମାଜିକ ସ୍ତର ଆଦି ନିଶ୍ଚିତ ଭାବରେ ଉଚ୍ଚମାନ ତଥା ଉନ୍ନତି ଘଟିବ । ଦ୍ୱିତୀୟରେ ସମାଜରେ ବିଶେଷକରି ଯୁବଗୋଷ୍ଠୀ ମଧ୍ୟରେ ଆଜିକାଲି ହେଉଥିବା ଉଚ୍ଛୃଙ୍ଖଳତା, ବିଶୃଙ୍ଖଳାର ମୂଳ କାରଣ ଆମ ଭାରତୀୟ ସଭ୍ୟତା (ଶୃଙ୍ଖଳା, ଚାଲିଚଳଣ) ବିରୋଧରେ ବ୍ୟବହାର କରୁଥିବା ବେଶପୋଷାକ । ଏହାକୁ ଶୃଙ୍ଖଳିତ କରିବାକୁ ହେବ ।

ବେଶ ପୋଷାକ ତଥା ଚାଲିଚଳଣ ପାଇଁ ଅନେକ ଅଭିଭାବକ, ଶୁଭେଚ୍ଛୁ ଏପରିକି ପିଲା ମଧ୍ୟ କିଛି ମାନୁ ନାହାଁନ୍ତି, କିଛି ଶୁଣୁନାହାଁନ୍ତି, ଏମିତି ପିନ୍ଧୁଛନ୍ତି, ସେମିତି କରୁଛନ୍ତି, କ'ଣ ଦେଖାଯାଉଛନ୍ତି – କେ ଜାଣେ, କ'ଣ ସେମାନଙ୍କୁ ଭଲ ଲାଗୁଛି ? ଆଜିକାଲିର ଫେସନ କହି ସେମାନଙ୍କୁ ଏହି ସବୁକୁ ନିରୁତ୍ସାହିତ ନକରି ଚୁପ୍ ରହିବା ଦ୍ୱାରା ପରୋକ୍ଷରେ ଉତ୍ସାହିତ କରିବା ଏବଂ ନିଜର କର୍ତ୍ତବ୍ୟକୁ ଗୁରୁତ୍ୱ ନଦେଇ କେବଳ ଦାୟିତ୍ୱ ସିଫ୍‌ଟିଂ କରି ଚାଲିବା ଫଳରେ ସମାଜରେ ଏହାର କୁପ୍ରଭାବ ବଢ଼ିବାରେ ଲାଗିଛି । ଫଳରେ ଭବିଷ୍ୟତ ପାଇଁ ନିଜର, ପରିବାରର, ସମାଜର ଏପରିକି ଦେଶର ମଧ୍ୟ ଆଗକୁ ଅନେକ କ୍ଷେତ୍ରରେ ପ୍ରଭୁତ କ୍ଷତି ହେବାର ସମ୍ଭାବନା ରହିଛି । କେଉଁ ଯୁଗରୁ ଚାଲିଆସିଥିବା ପ୍ରକୃତି ଦତ୍ତ, ଆଞ୍ଚଳିକ ଭିତ୍ତିକ ପରମ୍ପରା, ଶିଷ୍ଟାଚାର ପ୍ରଥା ସବୁ ଲୋପ ପାଇବାକୁ ବସିଲାଣି– ଭବିଷ୍ୟତ ପାଇଁ ସେସବୁର ପୁନଃ ରୁଦ୍ଧାର ନିହାତି ଆବଶ୍ୟକ ।

ସମସ୍ୟା ଆସିବ । ପ୍ରତ୍ୟେକ ସମସ୍ୟାର ସମାଧାନ ପାଇଁ ନିୟମ, ପନ୍ଥା ରହିଛି ଏବଂ ଆବଶ୍ୟକ ସ୍ଥଳେ ତିଆରି ମଧ୍ୟ କରାଯାଇଥାଏ । ନିୟମ ସବୁ ଖୋଜି ବାହାର କରିବା ବା ନୂତନ ନିୟମ ତିଆରି କରିଦେଲେ ହେବନାହିଁ । ତାକୁ ଠିକ୍ ଭାବରେ କାର୍ଯ୍ୟକାରୀ ତଥା ବିନିଯୋଗ କରିପାରିଲେ ଦେଶରେ ଦେଖାଦେଇଥିବା ଏସବୁ ସମସ୍ୟା ସହିତ ଅନ୍ୟାନ୍ୟ ବିଭିନ୍ନ ସମସ୍ୟାଗୁଡ଼ିକ ଯଥା– ମୂଲ୍ୟବୃଦ୍ଧି, ନକ୍ସଲ ଉପଦ୍ରବ, ମାଓବାଦୀ ଉପଦ୍ରବ, ଉଲ୍‌ଫା ଉପଦ୍ରବ, ନକଲି ନୋଟ୍, କଳାଧନ, କଳାବଜାର, ଲୁଟ୍‌ତରାଜ, ଦୁର୍ନୀତି, ରାଜନୀତି ଅସ୍ଥିରତା ଆଦି ସବୁ କେବଳ କମିଯିବ ନାହିଁ, ବରଂ ସେ ସବୁର ନିଶ୍ଚୟ ପରିସମାପ୍ତି ଘଟିବ ।

ଦେଶର ବିଦ୍ୱାନ, ଚିନ୍ତାଶୀଳ ବ୍ୟକ୍ତି, ବୈଜ୍ଞାନିକ, ରାଜନେତା, ସମାଜବିତ୍, ସମାଜ ସୁଧାରକ, ଦାର୍ଶନିକ, ଅନୁଭବୀ, ରାଜନୀତିଜ୍ଞ, ରାଜନେତା ସମସ୍ତେ ଆଗେଇ ଆସି ଏଥିପ୍ରତି ବିଶେଷ ଧ୍ୟାନ ଦେବା ସହ ଲୋପ ପାଉଥିବା ଆମର ସେହି ପ୍ରକୃତିର ଦାନ– ନିୟମ ସବୁକୁ ଖୋଜି ତାକୁ ସାମାଜିକ ତଥା ସରକାରୀ ସ୍ତରରେ କଡାକଡି ଭାବରେ ପାଳନ ତଥା କାର୍ଯ୍ୟକାରୀ କରିବା ପାଇଁ ବିହିତ ପଦକ୍ଷେପମାନ ଗ୍ରହଣ କରିବା ପାଇଁ ଅନୁରୋଧ । ଏଥିରେ ଦେଶର ସମସ୍ତଙ୍କର ମଙ୍ଗଳ ସାଧିତ ହେବ ।

ଏମ୍.ଆଇ.ଜି.–୧, ୧୧/୧୯, ବିଡିଏ କଲୋନୀ,
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର

# ପ୍ରାତଃ ସ୍ମରଣୀୟା ପଞ୍ଚକନ୍ୟାଗଣ

ମୂଳଲେଖା– ପ୍ରଭାତ ରଞ୍ଜନ ସରକାର
ଓଡ଼ିଆ ଅନୁବାଦ– ରାଜଶ୍ରୀ ବିଶ୍ୱାଳ

ଅତି ପ୍ରାଚୀନ କାଳରୁ ଭାରତର ଲୋକେ କହି ଆସୁଛନ୍ତି–

'ଅହଲ୍ୟା–ଦ୍ରୌପଦୀ–କୁନ୍ତୀ–ତାରା–ମନ୍ଦୋଦରୀ ତଥା

ପଞ୍ଚକନ୍ୟା ସ୍ମରେନିତ୍ୟଂ ମହାପାତକନାଶନମ୍ ॥'

ଅର୍ଥାତ୍ ଅହଲ୍ୟା, ଦ୍ରୌପଦୀ, କୁନ୍ତୀ, ତାରା ଓ ମନ୍ଦୋଦରୀ ଏହି ପଞ୍ଚକନ୍ୟାଗଣଙ୍କର ନାମ ସ୍ମରଣ କରିବା ଦ୍ୱାରା ମନୁଷ୍ୟର ପାପ କ୍ଷୟ ହୁଏ– ''ମହାପାତକ ନାଶନମ୍'' ।

ପ୍ରାତଃ ସ୍ମରଣୀୟା ପଞ୍ଚକନ୍ୟାମାନଙ୍କର ସୂଚୀରେ ପ୍ରଥମ ନାମ ହେଉଛି ଅହଲ୍ୟାଙ୍କର । କୁହାଯାଏ ଅହଲ୍ୟା ଅନେକ ପାପ କରିଥିଲେ । ଫଳରେ ସେ ପଥର ହୋଇଯାଇଥିଲେ । କିନ୍ତୁ ଏଠାରେ ପଥର ମାନେ ଇଂରାଜୀ ଷ୍ଟୋନ୍ ନୁହେଁ, ମାନସିକ ଦୃଷ୍ଟିରୁ ସେ ସମ୍ପୂର୍ଣ୍ଣ ଜଡରେ ପରିଣତ ହୋଇଯାଇଥିଲେ । ଆମେମାନେ ନିଷ୍ଠୁର ଲୋକମାନଙ୍କୁ ପଥର, ପାଷାଣ ଏମିତି ସବୁ କହିଥାଉ। ଅହଲ୍ୟା ଠିକ୍ ସେମିତି ହୋଇଯାଇଥିଲେ । ଏଠାରେ ବାସ୍ତବରେ ପଥର ନୁହେଁ, କିନ୍ତୁ ଲକ୍ଷଣରେ ପଥର ଯେବେ ଏହି ପାଷାଣୀ ଅହଲ୍ୟା ପରମପୁରୁଷ ଅର୍ଥାତ୍ ଶ୍ରୀରାମଚନ୍ଦ୍ରଙ୍କ ସଂସ୍ପର୍ଶରେ ଆସିଲେ ସେତେବେଳେ ଯାଇ ତାଙ୍କର ମୁକ୍ତି ହେଲା । ଏହାହିଁ ଅବଶ୍ୟ ସତ, ଯେ ଯଦି କୌଣସି ପଥର, ଇଟା, କାଠ, ଯାହା କିଛି ବି ହେଉ ପରମପୁରୁଷଙ୍କ ସ୍ପର୍ଶ ପାଇବା ମାତ୍ରେ ମୁକ୍ତିଲାଭ କରିଥାନ୍ତି । ସେଥିପାଇଁ ମନୁଷ୍ୟ ରାମଙ୍କ ସାଧନା କରିବା ଉଚିତ୍ । 'ରାମ'ମାନେ ପରମପୁରୁଷ । ରାମଙ୍କ କୃପାରୁ ଯଦି ଅହଲ୍ୟା ମୁକ୍ତି ପାଇଗଲେ, ସେତ ନିହାତି ପ୍ରାତଃ ସ୍ମରଣୀୟା ହେଲେ।

ଏବେ ଦ୍ରୌପଦୀଙ୍କ ବିଷୟରେ ଚର୍ଚ୍ଚା କରାଯାଉ । ଦ୍ରୌପଦୀ ଦ୍ରୁପଦ ରାଜାଙ୍କ କନ୍ୟା ଥିଲେ । ସେଥିପାଇଁ ତାଙ୍କୁ ଦ୍ରୌପଦୀ କୁହାଯାଏ । ସେ ଅଳ୍ପ ଶ୍ୟାମଳୀ ଥିବାରୁ ତାଙ୍କର ଅନ୍ୟ ନାମ ହେଲା 'କୃଷ୍ଣା' । ସାମାଜିକତା ଦୃଷ୍ଟିକୋଣରୁ ବିଚାର କଲେ, ପାଞ୍ଚପତି ରଖିବାର ପ୍ରଥା ନା ଆଜି ଅଛି, ନା ପୂର୍ବରୁ କେବେ ଥିଲା । ତଥାପି କୁହାଯାଇଛି, ପଞ୍ଚକନ୍ୟାଂ ସ୍ମରେନ୍ନିତ୍ୟ । ମହାପାତକ ନାଶନମ୍, କାହିଁକି ? ଏହାର କାରଣ କ'ଣ ? ଏହାଦ୍ୱାରା ମନୁଷ୍ୟ ମନରେ ସମାଜ ଧର୍ମ ଓ କୃତ୍ରିମ ଧର୍ମ (କୁସଂସ୍କାର ଜଡତା) ମଝିରେ ଏକ ସଂଘର୍ଷମୟ ସ୍ଥିତି ଉତ୍ପନ୍ନ ହେଉଛି । କୃତ୍ରିମ ଧର୍ମ ଦିଗରୁ ବିଚାର କଲେ ଦ୍ରୌପଦୀଙ୍କର ଏପରି କର୍ମ ଜମାରୁ ପ୍ରଶଂସନୀୟ ନୁହେଁ। କିନ୍ତୁ ସମାଜଧର୍ମ ଦୃଷ୍ଟିରୁ ଦେଖିଲେ ଏହାକୁ ଅପ୍ରଶଂସନୀୟ କୁହାଯାଇପାରିବ ନାହିଁ ।

ସମାଜ ବିଜ୍ଞାନ ଦୃଷ୍ଟିରୁ ଜଣେ ପୁରୁଷ ଏକପତ୍ନୀବ୍ରତ ହେବା ଉଚିତ୍ । ଏହାହିଁ ସ୍ୱାଭାବିକ । ସମସ୍ତ ଦେଶରେ ସ୍ତ୍ରୀ ଓ ପୁରୁଷମାନଙ୍କର ସଂଖ୍ୟା ପ୍ରାୟ ସମାନ ସମାନ । ମନେକର ଯଦି କୌଣସି ଦେଶରେ ଯୁଦ୍ଧ ବା ଆଉ କୌଣସି କାରଣରୁ ଅଧିକାଂଶ ପୁରୁଷ ମରିଯାନ୍ତି, ତା'ହେଲେ ପୁରୁଷମାନଙ୍କର ସଂଖ୍ୟା ମହିଳାମାନଙ୍କଠାରୁ କମ୍ ହୋଇଯିବ । ସେତେବେଳେ ନାରୀ ସମାଜର ପବିତ୍ରତା ଓ ସୁରକ୍ଷା ପାଇଁ ଆବଶ୍ୟକ ହେବ ଗୋଟିଏ ପୁରୁଷ ବହୁ ସ୍ତ୍ରୀଙ୍କୁ ବିବାହ କରିବେ । ନହେଲେ ଅନେକ ସ୍ତ୍ରୀ ପତିର ଅଭାବରେ ଅସାମାଜିକ ଜୀବନ କାଟିବାକୁ ବାଧ୍ୟ ହେବେ। ଫଳରେ ସମାଜ ଉପରେ ବଡ ଅଶୁଭ ପ୍ରଭାବ ପଡିବ । ଉଦାହରଣ ସ୍ୱରୂପ, ଦ୍ୱିତୀୟ ବିଶ୍ୱଯୁଦ୍ଧରେ ଜର୍ମାନୀର କଥା ନିଆଯାଉ । ଯୁଦ୍ଧରେ ଜର୍ମାନୀର ବହୁଭାଗ ପୁରୁଷ ମୃତ୍ୟୁବରଣ କଲେ । ସ୍ତ୍ରୀମାନେ ରହିଗଲେ । ଶେଷରେ ସେମାନଙ୍କର ବିବାହ ଏକ ବିରାଟ ସମସ୍ୟା ହୋଇ ଠିଆ ହେଲା । ଫଳରେ ସମାଜରେ ପାପାଚରଣ ବୃଦ୍ଧି ପାଇଲା ଓ ଲକ୍ଷ ଲକ୍ଷ ଜାରଜ ସନ୍ତାନ ଜନ୍ମ ନେଲେ । ଏହା ମଧ୍ୟ ଆହୁରି ଏକ ବଡ ସମସ୍ୟା । ଏଥିପାଇଁ ଯଦି କେଉଁଠି କିଛି ଏପରି

ଘଟେ ସ୍ତ୍ରୀ ଓ ପୁରୁଷଙ୍କ ସଂଖ୍ୟାରେ ବହୁତ ବଡ ବୈଷମ୍ୟ ଦେଖାଯାଏ । ସେଠାରେ ସାମାଜିକ ଆଚାର ଶୁଦ୍ଧତା ଓ ପବିତ୍ରତାକୁ ବଜାୟ ରଖିବା ପାଇଁ ପୁରୁଷମାନଙ୍କୁ ଏକରୁ ଅଧିକ ବିବାହ କରିବାର ଅନୁମତି ପାଇବା ଉଚିତ୍ । ଏପରି ବି ଘଟିପାରେ କେବେ ପୁରୁଷମାନଙ୍କର ସଂଖ୍ୟା ଅଧିକ ହୋଇଯିବ, ଆଉ ନାରୀମାନଙ୍କର ସଂଖ୍ୟା କମ୍ ପଡିବ, ସେଠାରେ ପୁରୁଷମାନଙ୍କର ପବିତ୍ରତା ବଜାୟ ରଖିବା ପାଇଁ ସ୍ତ୍ରୀମାନଙ୍କୁ ଏକରୁ ଅଧିକ ପତି ବିବାହ କରିବା ପାଇଁ ଅନୁମତି ଦିଆଯିବ । ତିବ୍ବତରେ ଏପରି ପ୍ରଥା ପ୍ରଚଳିତ । ଯଦି ଏପରି ବ୍ୟବସ୍ଥା ନଥାଏ, ତା'ହେଲେ ଜାଣିବେ ଯେ ସେ ସମାଜ ବ୍ୟବସ୍ଥାରେ ନିହାତି କିଛି ଗୋଟାଏ ଅସ୍ୱାଭାବିକତା ରହିଛି । ଯେକୌଣସି ସାମାଜିକ ବିଚାରକଙ୍କୁ ପଚରା ଯାଉ ସେ ନିଶ୍ଚୟ କହିବେ ଯେ ଏପରି ବିଷମ ପରିସ୍ଥିତିରେ ସମାଜରେ ଏତାଦୃଶ୍ୟ ବ୍ୟବସ୍ଥା ଲାଗୁ ହେବା ଉଚିତ୍ । ଏହାକୁ ଆଧାର କରି ଦ୍ରୌପଦୀଙ୍କର ପାଞ୍ଚଟି ପତିଥିଲେ କିଛି ନିନ୍ଦା କଥା ନୁହେଁ, କିନ୍ତୁ ସାଧାରଣ ଭାବରେ ଦେଖିଲେ ଅସ୍ୱାଭାବିକ ଅବଶ୍ୟ ଅଟେ । ଯେଉଁମାନେ ଅଳ୍ପ ଶିକ୍ଷିତ ବା ଅଶିକ୍ଷିତ ଲୋକ ସେମାନେ ଅସ୍ୱାଭାବିକ କଥାଗୁଡିକୁ ନିନ୍ଦନୀୟ ବୋଲି ଧରିନେଇଥାନ୍ତି ।

ବୈଦିକ ଯୁଗରେ ବହୁପତି ପ୍ରଥା ପ୍ରଚଳିତ ଥିଲା । କିନ୍ତୁ ମହାଭାରତ ଯୁଗରେ ଏହି ପ୍ରଥା କାଁ ଭାଁ ପ୍ରଚଳିତ ଥିଲା । ତେଣୁ ଲୋକେ ଏକଥାଗୁଡିକୁ ଅସ୍ୱାଭାବିକ ବିବେଚନା କରିଥାନ୍ତି । ଦ୍ରୌପଦୀଙ୍କୁ କେହି କଳଙ୍କିନୀ କହି ପାରିବେ ନାହିଁ । କାରଣ ଦ୍ରୌପଦୀ କୃଷ୍ଣଙ୍କୁ ତାଙ୍କର ବନ୍ଧୁ ବା ସଖା ବୋଲି ଧରିନେଇଥିଲେ । ସୁଭଦ୍ରାଙ୍କର ଭାଇ ଦୃଷ୍ଟିରୁ ଦ୍ରୌପଦୀଙ୍କର କୃଷ୍ଣ ବି ଭାଇ ଥିଲେ, କିନ୍ତୁ ତା'ଠାରୁ ଅଧିକ ସେ କୃଷ୍ଣଙ୍କୁ ଆଧାତ୍ମିକ ଦୃଷ୍ଟିରୁ ନିଜର ପ୍ରାଣପ୍ରିୟ ସଖାଭାବେ ଗ୍ରହଣ କରିଥିଲେ । ସେ ସର୍ବଦା ତାଙ୍କ ଧ୍ୟାନରେ ରତ ରହୁଥିଲେ । କୌରବ ସଭାରେ ଯେତେବେଳେ ଦ୍ରୌପଦୀଙ୍କର ବସ୍ତ୍ରହରଣ କରାଯାଉଥିଲା, ସେ ମନେ ମନେ କେବଳ ଶ୍ରୀକୃଷ୍ଣଙ୍କୁ ଧ୍ୟାନ କରୁଥିଲେ, ତାଙ୍କର ଶରଣାପନ୍ନ ହୋଇଥିଲେ । ଫଳରେ ଦ୍ରୌପଦୀଙ୍କର ଇଜ୍ଜତ ବଞ୍ଚିଯାଇଥିଲା । ଏପରି ଗମ୍ଭୀର ଭକ୍ତିମତୀ ମହିୟସୀ ମହିଳାଙ୍କର ସ୍ମରଣ ମାତ୍ରକେ କେବଳ ଯେ ପାପନାଶକ ହେବ, ତାହାନୁହେଁ, ଏହା ପୁଣ୍ୟକୃତ୍ୟ ମଧ୍ୟ ।

କୁନ୍ତୀଙ୍କ ସମ୍ବନ୍ଧରେ ଏହି ସମାନ କଥା । ଆଜିର ଦୃଷ୍ଟିକୋଣରୁ ଦେଖିଲେ ଏହା ଅତି ନିନ୍ଦନୀୟ ଲାଗିବ କିନ୍ତୁ ସେସମୟ ଦୃଷ୍ଟିକୋଣରୁ ଦେଖିଲେ ଏକଥା ଆଦୌ ନିନ୍ଦନୀୟ ନୁହେଁ, କୁନ୍ତୀଙ୍କର ଜ୍ୟେଷ୍ଠ ପୁତ୍ର ଥିଲେ କର୍ଣ୍ଣ । ତାଙ୍କର ଜନ୍ମ କୁନ୍ତୀଙ୍କ ବିବାହ ପୂର୍ବରୁ ହୋଇଥିଲା । କିନ୍ତୁ ତତ୍କାଳୀନ ସାମାଜିକ ରୀତି ଅନୁସାରେ ଏ ଘଟଣା ସ୍ୱାଭାବିକ ଥିଲା । କିନ୍ତୁ ଆଜି ଏହା ସ୍ୱାଭାବିକ କ'ଣ ଅତି ଗର୍ହିତ ଭାବେ ଗଣନା କରାଯିବ । କିନ୍ତୁ କୁନ୍ତୀଙ୍କର ଅତି ଉଜ୍ଜ୍ୱଳ ତ୍ୟାଗ, ଭଗବତ ଭକ୍ତି ଏବଂ ଗମ୍ଭୀର କର୍ତ୍ତବ୍ୟବୋଧ ତାଙ୍କୁ ପ୍ରାତଃ ସ୍ମରଣୀୟା ଭାବେ ଗଢି ତୋଳିଛି ।

ତାରା ଓ ମନ୍ଦୋଦରୀଙ୍କ ବିଷୟରେ ମଧ୍ୟ ଏହି କାରଣ ଦିଆଯାଇପାରେ । ତାରା ତାଙ୍କର ପ୍ରଥମ ପତି ବାଳୀଙ୍କର ମୃତ୍ୟୁପରେ ଦିଅର ସୁଗ୍ରୀବଙ୍କୁ ପତି ରୂପେ ଗ୍ରହଣ କରିଥିଲେ । ତାଙ୍କ ପ୍ରଦେଶରେ ଏହା କୌଣସି ଅସ୍ୱାଭାବିକ କଥା ନଥିଲା । କିନ୍ତୁ ଆଜି ଏହା ଅସ୍ୱାଭାବିକ ଓ ନିନ୍ଦନୀୟ ଅଟେ । ହେଲେ ତାରା ଜଣେ ରାମଭକ୍ତି ସମ୍ପନ୍ନ ମହିୟସୀ ମହିଳା ଥିଲେ ।

ମନ୍ଦୋଦରୀ ରାବଣର ରାଣୀ ଥିଲେ । କିନ୍ତୁ ସେ ରାବଣଙ୍କ ପରି ଆସୁରିକ ଶକ୍ତି ସଂପନ୍ନ ନ ଥିଲେ । ସେ ଜଣେ ବିବେକୀ, ରାମଭକ୍ତିପ୍ରାଣା ମହିଳା ଥିଲେ । କାରଣ ରାବଣ କିଛି ପାପ କାମ କରିବାକୁ ଉଦ୍ୟତ ହେଲାବେଳେ ସେ ସର୍ବଦା ତାଙ୍କୁ ସେଥିରୁ ନିବୃତ୍ତ ରହିବାକୁ ବୁଝାଉ ଥିଲେ । ସୀତାଙ୍କୁ ଫେରାଇ ଦେଇ ରାମଙ୍କ ଶରଣାପନ୍ନ ହେବା ପାଇଁ ସେ ରାବଣକୁ ଅନୁରୋଧ କରିଥିଲେ ।

ତେଣୁ ଏହି ପଞ୍ଚକନ୍ୟାଗଣ ପରମପୁରୁଷଙ୍କର କେବଳ ଯେ ସଂସ୍ପର୍ଶରେ ଆସିଥିଲେ ତାହା ନୁହେଁ, ନିଜର ଭକ୍ତି, ନିଷ୍ଠା ଓ ସାଧନା ବଳରେ ସେମାନେ ଆପଣାର ଚରିତ୍ର ଓ ବ୍ୟକ୍ତିତ୍ୱକୁ ଏକ ଉଚ୍ଚ ସ୍ଥାନରେ ପ୍ରତିଷ୍ଠା କରିପାରିଥିଲେ । ତେଣୁ ଏପରି ପୁଣ୍ୟାତ୍ମା, ମହିୟସୀ ମହିଳାମାନଙ୍କୁ ପ୍ରାତଃ ସ୍ମରଣୀୟା ଭାବେ ସମାଜ ଯୁଗେ ଯୁଗେ ମନେ ରଖିଥିବ ନିଶ୍ଚୟ ।

ଫ୍ଲାଟ୍ ନଂ-୩୭୪, ଶାସ୍ତ୍ରୀନଗର
ୟୁନିଟ୍-୪, ଭୁବନେଶ୍ୱର

